

# ଯେଗାରେ କି
# କଥା
# କହଲି

"ରାଦୁଗା" ପ୍ରକାଶନ
ମସ୍କୋ

## ସୂଚୀପତ୍ର

ଲେଖକଙ୍କ ନିବେଦନ
୭
ଭୂମିକା
୧୧
୧୧ କାହା ବିଷୟରେ ଏ ବହିଟି
୧୩ ସୁସୁରି ଆଉ ଢୋଲର ଭାଷା
୧୬ କଥା ଓ ଅନୁଭୂତି
ପ୍ରଥମ ଭାଗ
ନାକ କ'ଣ ଏତେ କାମ କରେ?
୧୦
୧୦ ବଡ଼ ବୈଜ୍ଞାନିକ କ'ଣ ଜାଣି ନଥିଲେ
୧୪ ଭଅଁର ଓ ଭାଲୁଙ୍କ ବିଜ୍ଞାପନ
୧୭ "ମୋ ପଛରେ ଆସ ! ବ୍ୟସ୍ତ ହୁଅ ନାହିଁ !"
୩୧ "ଏଠି ଜାଗା ନାହିଁ ! ଅନ୍ୟଠି ଦେଖ !"
୩୬ "ଯିଏ ପାରିବ , ବଞ୍ଚାଅ !"
ଦ୍ୱିତୀୟ ଭାଗ
ଶବ୍ଦ ଆଉ ସଂଗୀତର ଦୁନିଆ
୪୦
୪୦ ଟେଲିଫୋନ୍ ପାଖରେ କାନକଟାଙ୍କ ଭିଡ଼
୪୩ ମହୁଫେଣାରେ ଗୁପ୍ତଚର
୪୮ ନାବିକଙ୍କ ଦୋଷ ଓ କେଉଟଙ୍କ ଗୁପ୍ତ ରହସ୍ୟ

୫୦ ଗାୟିକା ଜଳପରୀ, ଗପୁଡ଼ି ଓ ଜଳଦସ୍ୟୁ
୫୬ "ପ୍ରକୃତ କଥାର" ଅପ୍ରକୃତ ଅର୍ଥ
୬୨ "ଅପ୍ରକୃତ କଥାର" ପ୍ରକୃତ ଅର୍ଥ
୭୪ ମାଙ୍କଡ଼ କିପରି କଥା ହୁଅନ୍ତି

ତୃତୀୟ ଭାଗ

ବ୍ୟାଲେ ନାଚ – କେବଳ ଏକ ନାଚ ନୁହେଁ ...

୮୦
୮୦ "ମୋତେ ଖାଦ୍ୟ ମିଳି ଯାଇଛି – ମୁଁ ନାଚୁଛି !"
୮୩ "ମୁଁ ତମକୁ ଭଲପାଏଁ – ମୁଁ ନାଚୁଛି !"
୮୭ "ମୁଁ ତମକୁ ଭଲପାଏଁ ! ତମକୁ ଉପହାର ଦିଏଁ ..."
୯୦ "ଭଲଦଶା ଅଛି ଯଦି, ପଳାଇ ଯାଅ !"

ଚତୁର୍ଥ ଭାଗ

ପଶୁ ପକ୍ଷୀମାନେ ଆଉ କେମିତି କଥା ହୁଅନ୍ତି

୯୬
୯୬ ରଙ୍ଗ, ଆଲୋକ ଓ ଲଙ୍ଗୁଡ଼ର ଭାଷା
୧୦୦ ଆଉ କେଉଁ ଭାଷା ?

ଶେଷ କଥା ପରିଚ୍ଛେଦରେ

୧୦୩

# ଲେଖକଙ୍କ ନିବେଦନ



ହଜାର ହଜାର ବର୍ଷ ଧରି ମଣିଷ ଜୀବଜନ୍ତୁଙ୍କର କଣ୍ଠସ୍ୱର ଶୁଣି ଆସିଛି, ସେମାନଙ୍କ ଆଚରଣକୁ ଲକ୍ଷ୍ୟ କରିଛି । କିନ୍ତୁ ଲୋକେ ସେମାନଙ୍କ ଆଖିରେ ଦେଖିବା ଏବଂ କାନରେ ଶୁଣିବାକୁ ବିଭିନ୍ନଭାବେ ବ୍ୟାଖ୍ୟା କରିଥାନ୍ତି । କେହି କେହି ଜୀବଜନ୍ତୁଙ୍କର କଣ୍ଠସ୍ୱର ଏବଂ ସେସବୁର ଆଚରଣ ପ୍ରତି ଆଦୌ କୌଣସି ମନୋଯୋଗ ଦେଇ ନାହାନ୍ତି, ସେସବୁ ଉପରେ କୌଣସି ଗୁରୁତ୍ୱ ଆରୋପ କରି ନାହାନ୍ତି । ଆଉ କେହି କେହି ଠିକ୍ ତା'ର ଓଲଟା କରିଛନ୍ତି – ଜୀବଜନ୍ତୁଙ୍କ ଆଚରଣ ଉପରେ ଖୁବ୍ ବେଶି ଗୁରୁତ୍ୱ ଆରୋପ କରିଛନ୍ତି । ସେମାନଙ୍କ ମତରେ, ମଣିଷ ପରି ଜୀବଜନ୍ତୁମାନେ କଥାବାର୍ତ୍ତା କରନ୍ତି, ପରସ୍ପରକୁ ଖବର ଜଣାନ୍ତି, ନିଜ ନିଜ ମଧ୍ୟରେ ଚିନ୍ତାଭାବନା ଅଥବା ଅଭିଜ୍ଞତା ବିନିମୟ କରନ୍ତି । ଆଉ କେତେକଙ୍କ ମତରେ, ଏପ୍ରକାରର ଲୋକଙ୍କ ସଂଖ୍ୟା ଅବଶ୍ୟ କମ୍ ନୁହେଁ – ଜୀବଜନ୍ତୁମାନେ କେବଳ ଯେ କଥାବାର୍ତ୍ତା କରନ୍ତି କିମ୍ବା ନିଜନିଜ ମଧ୍ୟରେ ଭାବର ବିନିମୟ କରନ୍ତି, ତା ନୁହେଁ, ସେମାନେ ସେମାନଙ୍କ ଆଚରଣ ମାଧ୍ୟମରେ ଭବିଷ୍ୟତ୍‌ର ପୂର୍ବାଭାଷ ଦିଅନ୍ତି, ମଣିଷକୁ କିଛି ଜଣେଇ ଦିଅନ୍ତି ।

ଏହି ଭାବେ ଅନେକ, ଅନେକ ବର୍ଷ କଟିଯାଇଛି । କାହା କଥା ଯେ ସତ, ତାହା ଜାଣିବା କଷ୍ଟକର ହୋଇ ପଡ଼ିଛି । ମାତ୍ର ସାଂପ୍ରତିକ କାଳରେ ବିଜ୍ଞାନୀମାନେ ଜୀବଜନ୍ତୁଙ୍କ ଆଚରଣ ସଂପର୍କରେ ଗୁରୁତ୍ୱ ସହକାରେ ଅନୁଶୀଳନ କଲେ ପରେ ବୁଝିପାରିଛନ୍ତି ଯେ, ଯେଉଁମାନେ ଜୀବଜନ୍ତୁଙ୍କ ପ୍ରତି କୌଣସି ମନୋଯୋଗ ଦେଇ ନାହାନ୍ତି ସେମାନଙ୍କ ଧାରଣା ଯେମିତି ଠିକ୍ ନୁହେଁ, ସେହିପରି ଯେଉଁମାନେ ମନେ କରନ୍ତି ଯେ, ଜୀବଜନ୍ତୁମାନେ ମଣିଷ ପରି, ଏପରିକି "ଅତିମାନବୀୟ" ଚିନ୍ତାଭାବନାର କ୍ଷମତା ଧାରଣ କରନ୍ତି, ସେମାନଙ୍କ ଧାରଣା ମଧ୍ୟ ଠିକ୍ ନୁହେଁ ।

ଆଉ ଏକ ବିଶେଷ ବିଜ୍ଞାନର ଉଦ୍‌ଭବ ଘଟିଲା, ଜୀବଜନ୍ତୁଙ୍କର ଆଚରଣ, ବିଶେଷତଃ ଜୀବଜନ୍ତୁଙ୍କ "ଭାଷା" ଅନୁଶୀଳନ କରିବା ହେଲା ତା'ର ଉଦ୍ଦେଶ୍ୟ । ଇଥଲଜି ନାମରେ ପରିଚିତ ଏହି ବିଜ୍ଞାନ ଅନ୍ୟାନ୍ୟ ବିଜ୍ଞାନ ତୁଳନାରେ ସେତେବେଳେ ଅନେକ ନୂଆ । ଇତିପୂର୍ବରୁ ଏହି ନାମରେ କୌଣସି ବିଜ୍ଞାନ ନଥିଲା, ତା'ର ଉଦ୍‌ଭବ ମଧ୍ୟ ସମ୍ଭବ ନଥିଲା । ଇଥଲଜି, ଅର୍ଥାତ୍ ଜୀବଜନ୍ତୁର ଆଚରଣ ସଂକ୍ରାନ୍ତ ବିଜ୍ଞାନର ଯେପରି ଉଦ୍‌ଭବ ଘଟିଲା – ସେଇ ପରି ଅନ୍ୟାନ୍ୟ

ବିଜ୍ଞାନର ମଧ୍ୟ—ପଦାର୍ଥ ବିଜ୍ଞାନ ଓ ରସାୟନବିଜ୍ଞାନ, ଶରୀରବିଜ୍ଞାନ ଓ ମନୋବିଜ୍ଞାନ, ଇତିହାସ ଆଦି ଜ୍ଞାନ ବିଜ୍ଞାନର ବିଭିନ୍ନ ଶାଖାର ବିକାଶ । ଏହି ସବୁ ବିଜ୍ଞାନର ବିକାଶ ଛଡ଼ା, ଜୀବଜନ୍ତୁଙ୍କ ଆଚରଣ ବିଜ୍ଞାନର ଉଦ୍‌ଭବ ଅସମ୍ଭବ ଥିଲା । ତା'ଛଡ଼ା ଜୀବଜନ୍ତୁମାନଙ୍କ ଆଚରଣ ଓ ଭାଷା ଅନୁଶୀଳନ ପାଇଁ ନାନା ଧରଣର ଜଟିଳ ଯନ୍ତ୍ରପାତି, ସାଜସରଞ୍ଜାମ, କମ୍ପ୍ୟୁଟର ଆଦିର ପ୍ରୟୋଜନ । ଏବେ ମଣିଷ ଏସବୁକୁ ତିଆରି କରି ଶିଖିଛି ।

ଇଲେକ୍ଟ୍ରୋନିକ୍ସ ଜନ୍ମ ହେଲା । ଏହି ବିଜ୍ଞାନର ଉଦ୍‌ଭବ ସଙ୍ଗେ ସଙ୍ଗେ ମଣିଷ ଆଗରେ, ତା'ର ଜ୍ଞାନର ପରିଧି ଏତେ ଦୂର ବିସ୍ତୃତ ହୋଇଗଲା ଯେ ବିଜ୍ଞାନୀମାନଙ୍କ ପକ୍ଷରେ ବହୁରହସ୍ୟ ଆବିଷ୍କାର କରିବା ସମ୍ଭବ ହେବାକୁ ଲାଗିଲା ।

ଅଦୂର ଭବିଷ୍ୟତ୍‌ରେ ମଣିଷ କେଉଁ ଧରଣର ଆବିଷ୍କାର କରିବ ଏବଂ ସେଇସବୁ ଆବିଷ୍କାର ପଦାର୍ଥ ବିଜ୍ଞାନୀ, ଚିକିତ୍ସକ, ପ୍ରଯୁକ୍ତିବିଦ ଓ ଡିଜାଇନରମାନଙ୍କୁ କିପରି ସାହାଯ୍ୟ କରିବ ତାହା ଆମମାନଙ୍କ ପକ୍ଷରେ ଧାରଣା କରିବା କଠିନ । ମଣିଷର କାର୍ଯ୍ୟକଳାପର ବହୁବିଧ କ୍ଷେତ୍ର ପାଇଁ ଏହିସବୁ ଆବିଷ୍କାର ଖୁବ୍ ପ୍ରୟୋଜନୀୟ ।

ଜୀବଜନ୍ତୁଙ୍କ ଆଚରଣ ଅନୁଶୀଳନ କରିବା ଫଳରେ, ମଣିଷ ପକ୍ଷରେ ଜୀବଜନ୍ତୁଙ୍କୁ ରକ୍ଷା କରିବା ମଧ୍ୟ ସମ୍ଭବ ହେବ ।

ଏହା ମଧ୍ୟ ଏକ ଗୁରୁତ୍ୱପୂର୍ଣ୍ଣ ପ୍ରଶ୍ନ ଏବଂ ଏବେ ଆଉରି ଗୁରୁତ୍ୱପୂର୍ଣ୍ଣ ହୋଇ ଦେଖାଦେଇଛି ।

ମଣିଷ ପୃଥିବୀରେ ତା'ର ଅସ୍ତିତ୍ୱର ପ୍ରାରମ୍ଭରୁ ନିରନ୍ତର ସୁଦୃଢ଼ ବନ୍ଧନ ଦ୍ୱାରା ଜୀବଜନ୍ତୁଙ୍କ ସହିତ ଯୁକ୍ତ । ଆଦିମ ମଣିଷ ଜୀବଜନ୍ତୁ ଶିକାର କରି ଜୀବନଧାରଣ କରୁଥିଲା—ମାଂସ ଭୋଜନ କରୁଥିଲା, ପଶୁଚର୍ମରେ ପୋଷାକ ତିଆରି କରୁଥିଲା, ତା'ର ଅସ୍ଥି ଦ୍ୱାରା ନିଜର ନାନା ରକମର ପ୍ରୟୋଜନୀୟ ଜିନିଷପତ୍ର ତିଆରି କରୁଥିଲା ।

ତା'ପରେ ମଣିଷ ଜୀବଜନ୍ତୁଙ୍କୁ ପୋଷ ମନେଇବାକୁ ଆରମ୍ଭ କଲା । ତଦ୍ୱାରା ଅବଶ୍ୟ ପଶୁ ଶିକାର କରିବା ବନ୍ଦ ହେଲା ନାହିଁ । ଗୃହପାଳିତ ଜୀବଜନ୍ତୁଙ୍କ ସଂଖ୍ୟା ବୃଦ୍ଧି ପାଇବାକୁ ଲାଗିଲା, ବନ୍ୟ ପଶୁପକ୍ଷୀଙ୍କ ସଂଖ୍ୟା କମି ଆସିବାକୁ ଲାଗିଲା । ମଣିଷ ଯେଉଁସବୁ ପଶୁପକ୍ଷୀ ଶିକାର କରୁଥିଲା, ସେଇମାନଙ୍କ ସଂଖ୍ୟା ଯେ କମି ଆସିଲା, ତା ନୁହେଁ, ମୋଟ ଉପରେ ମଣିଷର କ୍ରିୟାକଳାପ ଆଗରେ ପଶୁଜଗତ ପଛକୁ ହଟିବାକୁ ଲାଗିଲା । ତା'ର କାରଣ ହେଲା, ମଣିଷ ସହର ନିର୍ମାଣ କରିବାକୁ ଲାଗି ପଡ଼ିଲା, ଜଳାଭୂମିକୁ ଶୁଖାଇ ଦେଲା, ଫସଲ ଫଳେଇବା ପାଇଁ ଜମି ଚାଷ କଲା, ବଣ ଜଙ୍ଗଲ କାଟି ପକାଇଲା । କହିବା ବାହୁଲ୍ୟ ଯେ, ଜୀବଜନ୍ତୁଙ୍କ ଜୀବନ ଉପରେ ମଣିଷର ସମସ୍ତ କ୍ରିୟାକଳାପର ପ୍ରଭାବ ପଡ଼ିବାକୁ ଲାଗିଲା, ଏବଂ ତାଫଳରେ ସେମାନଙ୍କ ସଂଖ୍ୟା ମଧ୍ୟ କମି କମି ଆସିଲା । କିନ୍ତୁ ବିଶେଷ କରି ଯେଉଁ ସବୁ ଜୀବଜନ୍ତୁଙ୍କୁ ମଣିଷ ଶିକାର କରୁଥିଲା ସେମାନଙ୍କ ଅବସ୍ଥା ଖରାପ ହେବାକୁ ଲାଗିଲା । ଏବେ ମଣିଷ କେବଳ ନିତ୍ୟ ପ୍ରୟୋଜନୀୟତା ଦୃଷ୍ଟିରୁ ଶିକାର କରେ ନାହିଁ, ପଶୁଚର୍ମ ପ୍ରସେସିଂ କରିବାକୁ ମଣିଷ ଶିଖିଛି, ପ୍ରଚୁର ଅର୍ଥର ବିନିମୟରେ ପଶୁଚର୍ମ ସେ ବିକ୍ରି କରି ପାରୁଛି, ପଶମ, ପଶୁ ଦାନ୍ତ ଏବଂ ଅସ୍ଥି କେଉଁ କେଉଁ କାମରେ ଲାଗେ ସେକଥା ସେ ଜାଣେ, ମଣିଷ ମାଂସ ସଂରକ୍ଷଣ କରିବାକୁ ମଧ୍ୟ ଶିଖିଛି । ଫଳରେ ପଶୁପକ୍ଷୀ ନିଧନ ମଧ୍ୟ ବ୍ୟାପକ ହାରରେ ଚାଲିଛି । ଅନ୍ୟ ଦିଗରେ ଦେଖିବାକୁ ମିଳେ, ପଶୁଶିକାରୀମାନେ କେବଳ ପଶୁଶିକାର କରି ଆନନ୍ଦ ଲାଭ କରନ୍ତି । ସେ କାର୍ଯ୍ୟଟି କରିବା ମଧ୍ୟ କଷ୍ଟକର ନୁହେଁ । ପଶୁଶିକାରୀମାନେ ଏଣିକି ଆଉ ଆଗ ଭଳି ଧନୁଶର କିମ୍ବା ବର୍ଚ୍ଛା ବ୍ୟବହାର କରନ୍ତି ନାହିଁ । ସେମାନଙ୍କ ପାଖରେ ଅଛି ଦୂରବୀକ୍ଷଣ କାଚଲଗା ବନ୍ଧୁକ, ଦ୍ରୁତଗାମୀ ମୋଟରଗାଡ଼ି, ଏପରିକି ହେଲିକପ୍‌ଟର ।

ପୃଥିବୀର ପଶୁଜଗତ ଏବେ ଏତେ ବଦଳି ଯାଇଛି ଯେ, ତାକୁ ଆଉ ଚିହ୍ନି ହୁଏ ନାହିଁ । ଏହା ଦ୍ୱାରା ଆଶ୍ଚର୍ଯ୍ୟ ହେବାର କୌଣସି କାରଣ ନାହିଁ । ଦୃଷ୍ଟାନ୍ତ ସ୍ୱରୂପ, ଆଫ୍ରିକାକୁ ୟୁରୋପୀୟମାନେ ଆସିବା ପୂର୍ବରୁ ଯେତେ ଜୀବଜନ୍ତୁ ସେ ମହାଦେଶରେ ଥିଲେ ତା'ର ମାତ୍ର ଶତକଡ଼ା ଦଶଭାଗରୁ କମ୍ ଏବେ ଅଛନ୍ତି ।

ବିଗତ ଦୁଇ ଶତାବ୍ଦୀ ମଧ୍ୟରେ ପ୍ରାୟ ୩୦୦ ଜାତିର ବିଭିନ୍ନ ପଶୁପକ୍ଷୀ ସଂପୂର୍ଣ୍ଣ ରୂପେ ଲୋପ ପାଇ ଯାଇଛନ୍ତି, ପୃଥିବୀ ପୃଷ୍ଠରୁ ନିଶ୍ଚିହ୍ନ ହୋଇ ଯାଇଛନ୍ତି । ଜରୁରୀ ବ୍ୟବସ୍ଥା ଅବଲମ୍ବନ ନକରାଗଲେ ପ୍ରାୟ ୫୦୦ ଜାତିର ପଶୁପକ୍ଷୀ ଏହି ଦଶାର ସମ୍ମୁଖୀନ ହେବେ ବୋଲି ଆଶଂକା କରାଯାଏ । ଦୁର୍ଭାଗ୍ୟ ବଶତଃ ବହୁ ଜୀବଜନ୍ତୁଙ୍କୁ ଏବେ ଆଉ ରକ୍ଷା କରିବା ସମ୍ଭବ ନୁହେଁ (ହୁଏତ କିଛି କାଳ ପାଇଁ କେତେକ ଚିଡ଼ିଆଖାନାରେ ଅଥବା ସଂରକ୍ଷିତ ବନାଗାରରେ ସେମାନେ ବଞ୍ଚିଛନ୍ତି) । କିନ୍ତୁ ଅବଶିଷ୍ଟ ଯେଉଁମାନେ ରହିଛନ୍ତି ସେମାନଙ୍କୁ ରକ୍ଷା କରିବା ହେଉଛି ମଣିଷର କର୍ତ୍ତବ୍ୟ ।

ପୃଥିବୀର ଜୀବଜନ୍ତୁଙ୍କୁ ସଂରକ୍ଷଣ କରିବା ଯେ କେତେ ଗୁରୁତ୍ୱପୂର୍ଣ୍ଣ ସେ ସଂପର୍କରେ ତୁମେମାନେ ଏହି ବହିଟିରୁ ଯେପରି କିଛି ଜାଣିବାକୁ ପାଇବ, ସେଇପରି ଲେଖକ ଓ ବିଜ୍ଞାନୀମାନଙ୍କ ଲେଖା ଅନ୍ୟାନ୍ୟ ବହିରୁ ଜାଣିପାରିବ । ଇଚ୍ଛା ହେଲେ ସେସବୁ ବହି ତୁମେମାନେ ପଢ଼ିପାର । ତୁମେମାନେ ବୁଝିପାରିବ ପଶୁପକ୍ଷୀମାନେ କେବଳ ଆମମାନଙ୍କର ମାଂସ ଆଉ ପଶମର ଯୋଗାଣଦାର ନୁହନ୍ତି । ଇଂଜିନିୟର, ଡିଜାଇନର ଏବଂ ଜୀବବିଜ୍ଞାନୀମାନେ ଜୀବଜନ୍ତୁମାନଙ୍କ ସଂପର୍କରେ ଚର୍ଚ୍ଚା କରିବାକୁ ଯାଇ ବିସ୍ମୟକର ବିଭିନ୍ନ ଯନ୍ତ୍ରପାତି ଓ ସାଜସରଞ୍ଜାମ ତିଆରି କରିଥାନ୍ତି । ମଣିଷ ଜୀବଜନ୍ତୁମାନଙ୍କଠାରୁ ଶିକ୍ଷାଗ୍ରହଣ କରେ, ସେମାନଙ୍କ ଗୋପନ ରହସ୍ୟ ଆବିଷ୍କାର କରେ ଏବଂ ବର୍ତ୍ତମାନ ଏହା ସ୍ପଷ୍ଟ ହୋଇ ଉଠିଛି ଯେ, ଜୀବଜନ୍ତୁମାନଙ୍କ ସାହାଯ୍ୟ ବ୍ୟତୀତ ବିଜ୍ଞାନ ଏବଂ ପ୍ରଯୁକ୍ତି ବିଦ୍ୟାର ବିକାଶ ସମ୍ଭବ ନୁହେଁ ।

କିନ୍ତୁ ଏତିକିରେ ସବୁ କିଛି ହୋଇ ଯିବ ନାହିଁ । ବର୍ତ୍ତମାନ ସମସ୍ତଙ୍କ ନିକଟରେ ଗୋଟିଏ କଥା ସ୍ପଷ୍ଟ ହୋଇ ଉଠିଛି । ତାହା ହେଲା, କଳକାରଖାନା, ମୋଟରଗାଡ଼ି ଓ ବ୍ଲାଷ୍ଟଫର୍ଣ୍ଣେସ୍ ଏବଂ ଶିଳ୍ପସଂକ୍ରାନ୍ତ ବହୁ ନିର୍ମାଣ କର୍ମ, ତତ୍ ସହିତ ଯାନବାହନ ମଧ୍ୟ ଜଳବାୟୁକୁ ଦୂଷିତ କରିବାରେ ଲାଗିଛି । ସମୟ ଆସିବ ପୃଥିବୀର ଜଳବାୟୁ ଏତେ ଦୂଷିତ ହୋଇ ପଡ଼ିବ ଯେ, ପୃଥିବୀରେ ଜୀବନ ଧାରଣ ଅସମ୍ଭବ ହୋଇ ଉଠିବ । ଜଳବାୟୁକୁ ବିଶୁଦ୍ଧ କରେ ଉଦ୍‌ଭିଦ । କିନ୍ତୁ ପୋକ ଯୋକ ବିନା ଗଛବୃକ୍ଷ ବଞ୍ଚି ପାରନ୍ତି ନାହିଁ । ପୋକ ଯୋକ ମଧ୍ୟ ବିଭିନ୍ନ ରକମର ଅଛନ୍ତି – ଯଥା, ଉପକାରୀ ଆଉ ଅପକାରୀ । ଅପକାରୀ ପୋକ ଯୋକ ଯଦି ଖୁବ୍ ଅଧିକ ପରିମାଣରେ ବୃଦ୍ଧି ପାଆନ୍ତି ତେବେ ସେମାନେ ପୃଥିବୀର ସମସ୍ତ ଉଦ୍‌ଭିଦ ଜଗତକୁ ନଷ୍ଟ କରିଦେବେ, କିନ୍ତୁ ଏପରି ଘଟଣା ଘଟେ ନାହିଁ । କାରଣ ପୃଥିବୀରେ ଏପରି ସବୁ ପଶୁପକ୍ଷୀ ଅଛନ୍ତି, ଯେଉଁମାନେ କ୍ଷତିକାରକ ପୋକ ଯୋକଙ୍କୁ ଧ୍ୱଂସ କରି ଦିଅନ୍ତି । ଏହି ସବୁ ପଶୁପକ୍ଷୀ ପୃଥିବୀରେ ଯେପରି ବଞ୍ଚି ରହନ୍ତି ସେଥି ପାଇଁ ଅନ୍ୟାନ୍ୟ ଜୀବଜନ୍ତୁମାନେ – ଯଥା ହିଂସ୍ର ପ୍ରାଣୀମାନେ ବଞ୍ଚି ରହିବା ଦରକାର । ତା ଅର୍ଥ ହେଲା, ପୃଥିବୀରେ ଯେପରି ଜୀବନର ଧାରା ଅବ୍ୟାହତ ରହେ ସେଥି ପାଇଁ ଦରକାର ବିଶୁଦ୍ଧ ଜଳବାୟୁ, ବିଶୁଦ୍ଧ ଜଳବାୟୁ ପାଇଁ ଦରକାର ଗଛବୃକ୍ଷ ଏବଂ ପୃଥିବୀରେ ଗଛବୃକ୍ଷ ବଞ୍ଚି ରହିବା ପାଇଁ ଜୀବଜନ୍ତୁ ଅବଶ୍ୟ ପ୍ରୟୋଜନୀୟ । ସୁତରାଂ, ଆମ ଏହି ଗ୍ରହରେ ପ୍ରାଣ ଧାରଣର ସଂଗ୍ରାମରେ ଜୀବଜନ୍ତୁମାନେ ଖୁବ୍ ଗୁରୁତ୍ୱପୂର୍ଣ୍ଣ ଭୂମିକା ପାଳନ କରିଥାନ୍ତି, ସେମାନେ ହେଉଛନ୍ତି ଅନ୍ୟତମ ଚୂଡ଼ାନ୍ତ ଭୂମିକା ପାଳନକାରୀ ।

କିନ୍ତୁ ଏତିକିରେ ସବୁ ହୋଇ ଯିବ ନାହିଁ । ଜବାହାରଲାଲ୍ ନେହରୁ କହିଥିଲେ, "ଆମର ଏହି ସବୁ ଅପୂର୍ବ ପଶୁପକ୍ଷୀମାନଙ୍କର ଅସ୍ତିତ୍ୱ ଯଦି ନଥାନ୍ତା ତେବେ ଜୀବନ ସଙ୍ଗେ ସଙ୍ଗେ ବିରକ୍ତିକର ଆଉ ବୈଚିତ୍ର୍ୟହୀନ ହୋଇପଡ଼ିଥାନ୍ତା ।" ପଶୁପକ୍ଷୀମାନଙ୍କ ଛଡ଼ା ପୃଥିବୀରେ ଜୀବନଧାରଣ ଅସମ୍ଭବ ।

ଏହିସବୁ କଥା ମନେ ରଖିଲେ ମଣିଷ ପକ୍ଷରେ ପୃଥିବୀର ପ୍ରାଣୀଜଗତ ସଂପର୍କରେ ଗଭୀର ଉଦ୍‌ବେଗ ପ୍ରକାଶ ନକରି ରହିହେବ ନାହିଁ, ପ୍ରାଣୀ ଜଗତକୁ ରକ୍ଷା କରିବା ପାଇଁ ସକ୍ରିୟ ସଂଗ୍ରାମରେ ତାକୁ ଅବତୀର୍ଣ୍ଣ ହେବାକୁ ପଡ଼ିବ । ସେଥିପାଇଁ ସର୍ବପ୍ରଥମେ ଜୀବଜନ୍ତୁମାନଙ୍କ ସଂପର୍କରେ ଜାଣିବାକୁ ହେବ, ଜାଣିବାକୁ

ହେବ ସେମାନଙ୍କ ଜୀବନର ରୀତିନୀତି, ଆଗ୍ରହ ଆଚରଣ "ଚରିତ୍ର" ଆଉ "ଭାଷା" ସଂପର୍କରେ । ତେଣୁ ଇଥଲଜି ନାମକ ବିଜ୍ଞାନଟିର ଉଦ୍ଭବ ବିଜ୍ଞାନୀମାନଙ୍କର କେବଳ ନିରୋଳା କୌତୂହଳ କିମ୍ବା ଖିଆଲରୁ ଘଟି ନାହିଁ । ତାହା ପ୍ରକୃତ ପ୍ରୟୋଜନ ମଧ୍ୟରୁ ସୃଷ୍ଟି ହୋଇଛି ।

ଜୀବଜନ୍ତୁମାନଙ୍କର ଆଚରଣ, ସେମାନଙ୍କ କଥାବାର୍ତ୍ତା, ଭାଷା ସଂପର୍କରେ ମଣିଷ ଯାହା କିଛି ଜାଣିବାକୁ ପାଇଛି ତା'ର ସାମାନ୍ୟ ଏକ ଅଂଶ କେବଳ ଏହି ବହିଟିରେ ବର୍ଣ୍ଣନା କରାଯାଇଛି । ମଣିଷ ଯାହା କିଛି ଜାଣି ପାରିଛି ସେସବୁକୁ ଗୋଟିଏ ବହିରେ ଲେଖିବା ସମ୍ଭବ ନୁହେଁ, ଏପରିକି ଏହାଠାରୁ ଆଉରି ବଡ଼ ବହିରେ ତା କରିବା ସମ୍ଭବ ନୁହେଁ । ତାଛଡ଼ା ତମମାନଙ୍କ ନିକଟରେ ସବୁ କିଛି କହିବାକୁ ମଧ୍ୟ ଯାଉନି । ମୋର ଇଚ୍ଛା, ଯେଉଁମାନେ ଏହି ବହିଟି ପଢ଼ିବେ ସେମାନେ ଯେମିତି ବୁଝିପାରନ୍ତି, ଆମ ଚତୁର୍ପାର୍ଶ୍ୱସ୍ଥ ଜଗତ କେତେ ବିସ୍ମୟକର ଏବଂ କେତେ ରହସ୍ୟ ଏବେ ଭେଦ କରିବାକୁ ରହିଛି । କେବଳ ନିବିଡ଼ ଅରଣ୍ୟ ଭିତରେ ଯେ ଏ ଜଗତ ମଣିଷକୁ ଘେରି ରହିଛି ତା ନୁହେଁ, ଏ ଜଗତ ସର୍ବତ୍ର ବିରାଜମାନ କରୁଛି ।

ଯେଉଁସବୁ ବୈଜ୍ଞାନିକ ମରୁଭୂମି ଏବଂ ପାହାଡ଼ ପର୍ବତରେ ଭ୍ରମଣ କରିଛନ୍ତି, ବଣ ଜଙ୍ଗଲରେ ଜୀବଜନ୍ତୁମାନଙ୍କର ଜୀବନଯାତ୍ରାକୁ ପର୍ଯ୍ୟବେକ୍ଷଣ କରିଛନ୍ତି, ଏପରିକି ସେଇ ଉଦ୍ଦେଶ୍ୟରେ ସାଗରର ତଳଦେଶକୁ ଯାଇଛନ୍ତି, ସେମାନଙ୍କ ଦ୍ୱାରା ଲିଖିତ ପୁସ୍ତକ ମୁଁ ପଢ଼ିଛି । ତାହା ଖୁବ୍ ଆକର୍ଷଣୀୟ । କିନ୍ତୁ ମୁଁ ନିଜେ ଛୋଟ ବଣର ପ୍ରାନ୍ତଦେଶରେ, ବଗିଚାରେ, ଏପରିକି ଘର ଭିତରେ ଜୀବଜନ୍ତୁମାନଙ୍କର ଜୀବନଯାତ୍ରା ଲକ୍ଷ୍ୟ କରିଛି, ତାହା ମଧ୍ୟ ଖୁବ୍ ଆକର୍ଷଣୀୟ, ଆଗ୍ରହପ୍ରଦ । କାରଣ, ଏପରି କୌଣସି ଜୀବଜନ୍ତୁ ନାହାନ୍ତି, ଯେଉଁମାନଙ୍କୁ ଦେଖିବାକୁ ବିରକ୍ତିକର ଲାଗେ, ଯେଉଁମାନେ ଆକର୍ଷଣୀୟ ନୁହନ୍ତି । ସାଧାରଣ ମାଛିଟିଏ, ଗୃହପାଳିତ ପକ୍ଷୀ କିମ୍ବା ତମ ଘର ନିକଟରେ ବସା ବାନ୍ଧିଥିବା କୌଣସି ପକ୍ଷୀ ତମ ନିକଟରେ ସାଧାରଣ ବ୍ୟାପାର ବୋଲି ମନେହୁଏ, ତୁମେ ସେମାନଙ୍କ କଥା ମନେରଖନା । ଅଥଚ ସେମାନଙ୍କ ମଧ୍ୟରେ ବିସ୍ମୟକର ଗୋପନ ରହସ୍ୟ ରହିଛି ଏବଂ ଆଜି ହେଉ ବା କାଲି ହେଉ ସେ ରହସ୍ୟକୁ ସେମାନେ ମଣିଷ ଆଗରେ ଉଦ୍‌ଘାଟନ କରିବେ । ହୁଏତ ଏମିତି ହୋଇ ପାରେ ଯେ ତୁମେମାନେ ହିଁ ସେମାନଙ୍କ ଜୀବନଯାତ୍ରାକୁ ଲକ୍ଷ୍ୟ କରି ଏହିସବୁ ରହସ୍ୟ ଉଦ୍‌ଘାଟନ ଦିଗରେ ପଦକ୍ଷେପ ନେବ ।

ସବୁଠାରୁ ବଡ଼ କଥାଟି ହେଲା, ମୁଁ କହିବାକୁ ଚାହେଁ, ଏହି ବହିଟିର ପାଠକମାନେ ଯେପରି ବୁଝିପାରନ୍ତି ଏବଂ ସବୁଦିନ ପାଇଁ ମନେ ରଖନ୍ତି ଯେ, ଜୀବଜନ୍ତୁମାନଙ୍କୁ ଭଲ ପାଇବା ଓ ସେମାନଙ୍କୁ ରକ୍ଷା କରିବାର ଗୁରୁତ୍ୱ କେତେ ବେଶି । ଜୀବଜନ୍ତୁମାନଙ୍କୁ ରକ୍ଷା କରିବା ଅର୍ଥ ହେଲା ପୃଥିବୀର ସୌନ୍ଦର୍ଯ୍ୟକୁ ରକ୍ଷା କରିବା, ପୃଥିବୀରେ ଜୀବନ ରକ୍ଷା କରିବାକୁ ଯତ୍ନ ନେବା ।

ମଣିଷ ହେଉଛି ସବୁଠାରୁ ଶକ୍ତିଶାଳୀ, ସବୁଠାରୁ ଅଧିକ ଜ୍ଞାନୀ । ଜୀବଜନ୍ତୁମାନଙ୍କ ସହିତ ତା'ର ସଂପର୍କ କ୍ଷେତ୍ରରେ ତାକୁ ମହତ, ଉଦାର ଏବଂ ବିଚକ୍ଷଣ ହେବାକୁ ପଡ଼ିବ ।

ୟୁରି ଦ୍‌ମିତ୍ରିଏଭ୍




## କାହା ବିଷୟରେ ଏ ବହିଟି

ଜଙ୍ଗଲ ଭିତରେ ମଣିଷଟିଏ ଯାଉ ଯାଉ ଦେଖିଲା : ଖଇରିଆ ରଙ୍ଗର ସୁନ୍ଦର ଗୁଣ୍ଡୁଚିମୂଷାଟିଏ ଏ ଡାଳରୁ ସେ ଡାଳକୁ ଡେଇଁ ଡେଇଁ ବୁଲୁଛି ।

ମଣିଷଟି କହିଲା, "ନମସ୍କାର ଗୁଣ୍ଡୁଚି ।"

ଗୁଣ୍ଡୁଚିଟି ହଠାତ୍ ରହିଯାଇ ନିଜର ଗୋଲ ଗୋଲ ଚଞ୍ଚଳ ଆଖି ଦୁଇଟିକୁ ବୁଲାଇ ମଣିଷ ଆଡ଼କୁ ଚାହିଁ ଉତ୍ତର ଦେଲା :

"ମଣିଷ ଭାଇ, ନମସ୍କାର !"



ତା'ପରେ ଲଞ୍ଜ ହଲାଇ ସେ ପୂର୍ବପରି ଏ ଡାଳରୁ ସେ ଡାଳକୁ ଡେଇଁବାରେ ଲାଗିଲା ।

ଠିକ୍ ସେହି ସମୟରେ, ଅନ୍ୟ ଜଣେ ଲୋକ ବଡ଼ ନଈରେ ଡଙ୍ଗାଟିଏ ବାହି ବାହି ଯାଉ ଯାଉ ଦେଖିଲା, କୂଳରେ କାଠଗଡ଼ଟାଏ ପଡ଼ିଛି । କିନ୍ତୁ, କୂଳରେ ଡଙ୍ଗା ଲଗେଇ ଦେଖିଲା; ସେଟା କାଠଗଡ଼ ନୁହେଁ, ଗୋଟାଏ କୁମ୍ଭୀର ଶୋଇଛି । ଲୋକଟି ଭୟରେ ସେଠାରୁ ପଳାଇ ନଯାଇ ତା'ର ଆହୁରି ପାଖକୁ ଲାଗି ଆସି ବଡ଼ ପାଟିରେ କହିଲା :

"କୁମ୍ଭୀର ଭାଇ, କେମିତି ଅଛ ?"

କୁମ୍ଭୀର ଉପରକୁ ମୁଣ୍ଡ ଟେକି ଚାହିଁଲା ଏବଂ ତା ବିରାଟ ଭୟଙ୍କର ପାଟିଟାକୁ ମେଲା କରି ଉତ୍ତର ଦେଲା :

"ଧନ୍ୟବାଦ, ମୁଁ ଭଲ ଅଛି !"

ତୃତୀୟ ବ୍ୟକ୍ତିଟି ନିଜ ବଗିଚାରେ କାମ କରୁ କରୁ ଦେଖିଲା ଯେଉଁ ଗଛ ମୂଳରେ ସେ କାମ କରୁଛି ସେଇ ଗଛରେ ଚଢ଼େଇଟିଏ ବସା ବାନ୍ଧିଛି ।

"କ'ଣ କରୁଛୁ, ଚଢ଼େଇ ?"

"ମୁଁ ବ୍ୟସ୍ତ ଅଛି !"

ଏହିପରି ମଣିଷ ଏବଂ ଚଢ଼େଇ ମଧ୍ୟରେ କଥାବାର୍ତ୍ତା ଆରମ୍ଭ ହେଲା ।

ପିଲାମାନେ ! ତୁମେ ହସିଦେଇ କହିପାର ଯେ, ଏସବୁ କେବଳ ମନଗଢ଼ା ଗପ, ବାସ୍ତବରେ ଏମିତି ହୁଏ ନାହିଁ ।

ଠିକ୍ ଅଛି, ମୁଁ ବି ତୁମ ସହିତ ଏ ବିଷୟରେ ଯୁକ୍ତି କରିବାକୁ ଯାଉ ନାହିଁ । ମୁଁ ଏବେ ତୁମମାନଙ୍କୁ ଆଉ ଗୋଟିଏ କଥା କହିବି ।

ଥରେ କେତେକ ପୋଷା ମାଙ୍କଡ଼ଙ୍କୁ ସଙ୍ଗରେ ଧରି ପୂର୍ବ ଜର୍ମାନୀରୁ ଜଣେ ନର୍ତ୍ତକୀ ଲେନିନ୍‌ଗ୍ରାଡ୍ ସହରକୁ ଆସିଥିଲେ । ସହର ସାରା କଥା ପ୍ରଚାର ହୋଇ ଗଲା ମାଙ୍କଡ଼ ନାଚ ହେବ । ଖୁବ୍ ଶୀଘ୍ର ସବୁ ଟିକେଟ୍ ବିକ୍ରୀ ହୋଇଗଲା ।

କିନ୍ତୁ ଯେଉଁଦିନ ମାଙ୍କଡ଼ ନାଚ ହେବା କଥା, ସେଦିନ ସର୍କସ୍‌ର ଦ୍ୱାରରେ ବିଜ୍ଞାପନ ଲଗାଇ ଦିଆଗଲା ଯେ, ମାଙ୍କଡ଼ମାନେ ଅସୁସ୍ଥ ହୋଇ ପଡ଼ିଥିବାରୁ ନାଚର ସମୟ ବଦଳିଯାଇଛି ।

ଘଟଣା କ'ଣ ଜାଣି ନପାରି ଦର୍ଶକମାନେ ଖୁବ୍ ଦୁଃଖିତ ହେଲେ । ସର୍କସ୍‌କୁ ଆସି ଏବଂ ଟେଲିଫୋନ୍ କରି ମାଙ୍କଡ଼ମାନେ କେବେ ଆରୋଗ୍ୟ ହେବେ ବୋଲି ସେମାନେ ପଚାରି ଥିଲେ ।

ତେଣେ ଚିକିତ୍ସା କରାଯିବା ତ ଦୂର କଥା, କେହି ଲୋକ ମାଙ୍କଡ଼ମାନଙ୍କ ପାଖକୁ ଯାଇପାରୁ ନଥିଲେ । ଏପରିକି ମାଙ୍କଡ଼ମାନଙ୍କର ପ୍ରିୟ ତତ୍ତ୍ୱାବଧାନକାରୀମାନଙ୍କ ମଧ୍ୟରୁ ବି କେହି ମାଙ୍କଡ଼ ଥିବା ତାର ଜାଲି ନିକଟକୁ ଯାଇ ପାରୁ ନଥାନ୍ତି । ସେମାନେ ଯେଉଁକ୍ଷଣି ତାଙ୍କୁ ଦେଖି ମାଙ୍କଡ଼ମାନେ ଚିତ୍କାର କରୁଥାନ୍ତି, ମାରିବାକୁ ହାତ ଉଞ୍ଚାଉଥାନ୍ତି ଏବଂ ଦାନ୍ତ ଦେଖାଇ ଖିଙ୍କାରି ହେଉଥାନ୍ତି ।

ହଠାତ୍ ସେହି ଜାଲି ଆଡ଼କୁ ଜଣେ ଅଜଣା ଲୋକ ଆଗେଇ ଗଲେ । ତାଙ୍କୁ ଦେଖି ମାଙ୍କଡ଼ମାନେ ଗର୍ଜି ଉଠିଲେ । ମାତ୍ର ଲୋକ ଜଣକ ଭୟଭୀତ ନହୋଇ ଦମ୍ଭରେ ତାର ଜାଲି ଆଡ଼କୁ ଆଗେଇଗଲେ । ପ୍ରଥମେ ଲୋକ ଜଣଙ୍କର ସାହସ ଦେଖି ମାଙ୍କଡ଼ମାନେ ଡରିଗଲେ । ଟିକିଏ ପରେ ପୁଣି ଅପରିଚିତ ଅତିଥିଙ୍କୁ ଦେଖି ତାଙ୍କ ଆଡ଼କୁ ପୁଣି କୁଦିବାକୁ ଲାଗିଲେ । ପର ମୁହୂର୍ତ୍ତରେ କିନ୍ତୁ ସବୁକଥା ବଦଳିଗଲା : ମାଙ୍କଡ଼ମାନେ ଶାନ୍ତ ହୋଇଗଲେ, କିଛି କ୍ଷଣ ପରେ ଅଜଣା ଲୋକଙ୍କ ଆଡ଼କୁ ଆଗେଇ ଯାଇ ନୀରବରେ ବସିଲେ ।

ଏହି ଘଟଣା ପରେ ଡାକ୍ତର ସେମାନଙ୍କୁ ଦେଖିବା ପାଇଁ ଆସିଲେ । ସେମାନେ ସ୍ଥିର ହୋଇ ବସି ରହିଲେ : ଇଂଜେକ୍‌ସନ୍ ନେବାକୁ ଦେହ ଦେଖାଇ ଦେଲେ ଏବଂ ବିନା ଦ୍ୱିଧାରେ ଔଷଧ ଖାଇଲେ ।

ତୁମେ ଲକ୍ଷ୍ୟ କର, ପିଲାମାନେ ! ମାଙ୍କଡ଼ମାନେ ଏହି ଲୋକଙ୍କୁ ଆଗରୁ କେବେ ଦେଖି ନଥିଲେ, କିନ୍ତୁ ଲୋକ ଜଣକ ସେମାନଙ୍କର ଆଚରଣ ଓ ଚରିତ୍ର ସଂପର୍କରେ ଭଲ ରୂପେ ଜାଣିଥିଲେ । ଜାଲିରେ ପଶିଲା ବେଳେ ସେ ଧୀର କଣ୍ଠରେ ମାଙ୍କଡ଼ମାନଙ୍କୁ ଗୋଟିଏ ମାତ୍ର ଶବ୍ଦ କହିଥିଲେ । ଏହା ପରେ ମାଙ୍କଡ଼ ଦଳର ଭାବଭଙ୍ଗୀ ବଦଳି ଯାଇଥିଲା ଏବଂ ସେମାନଙ୍କଠାରୁ ଭଲ ବ୍ୟବହାର ମିଳିଥିଲା ।

ତାହେଲେ, ସେ ଭଳି କୌଣସି ଶବ୍ଦ ଅଛି କି ?

ହଁ, ଅଛି ।





ମାଙ୍କଡ଼ମାନଙ୍କର ସ୍ୱତନ୍ତ୍ର ଭାଷା ମଧ୍ୟ ଥାଇ ପାରେ କି ?

ନିଶ୍ଚୟ ଥିବ । କେବଳ ମାଙ୍କଡ଼ କାହିଁକି ଚଢ଼େଇ, ଠେକୁଆ, ବେଙ୍ଗ, କୁମ୍ଭୀର, ଗୁଣ୍ଡୁଚିମୂଷା ଓ ମଶା ମାଛିଙ୍କର ମଧ୍ୟ ଭାଷା ଅଛି ।

ସେମାନଙ୍କର ଭାଷା ବିଷୟରେ ଏହି ବହିରୁ ତୁମେ ଜାଣି ପାରିବ । ଜୀବଜନ୍ତୁ ମଧ୍ୟ ବିଭିନ୍ନ ଭାଷାରେ କଥାବାର୍ତ୍ତା କରି ପାରନ୍ତି । କେବଳ ସୁସୁରି ଶବ୍ଦ ଓ ଚିତ୍କାର ଜୀବଜନ୍ତୁଙ୍କ ଭାଷା ନୁହେଁ, ନୃତ୍ୟ ଓ ଆଲୋକ ମାଧ୍ୟମରେ ମଧ୍ୟ ସେମାନେ କଥାବାର୍ତ୍ତା ହୁଅନ୍ତି ।

## ସୁସୁରି ଆଉ ଢୋଲର ଭାଷା

ଜୀବଜନ୍ତୁଙ୍କ ଭାଷା ମଣିଷର ଭାଷା ପରି ନୁହେଁ । ମଣିଷ ଶବ୍ଦ ବ୍ୟବହାର କରି କଥାବାର୍ତ୍ତା କରେ, ମାତ୍ର ଜୀବଜନ୍ତୁ ବିଭିନ୍ନ ଧ୍ୱନି ସାହାଯ୍ୟରେ ଭାବ ବିନିମୟ କରିଥାନ୍ତି । ସେମାନେ ସୁସୁରି ମାରିଲା ଭଳି ଶବ୍ଦ କରନ୍ତି, ଚିତ୍କାର କରନ୍ତି ଓ ଭୁକନ୍ତି ।

ମଣିଷର କଥାବାର୍ତ୍ତା ଓ ଜୀବଜନ୍ତୁଙ୍କର ଧ୍ୱନି ସାହାଯ୍ୟରେ ଭାବ ବିନିମୟ ମଧ୍ୟରେ ତଫାତ୍ ଅଛି ନିଶ୍ଚୟ ।

ଆଫ୍ରିକା ମହାଦେଶର ଉତ୍ତର-ପଶ୍ଚିମ ଉପକୂଳରେ ଅବସ୍ଥିତ ହୋମର ନାମକ ଗୋଟିଏ କ୍ଷୁଦ୍ର ଦ୍ୱୀପରେ ବସବାସ କରୁଥିବା ଲୋକମାନେ ସୁସୁରି ମାରି କଥାବାର୍ତ୍ତା ହୁଅନ୍ତି । ସାଧାରଣ ମଣିଷ ଭଳି ସେମାନେ ଅବଶ୍ୟ କଥାବାର୍ତ୍ତା ହୋଇ ପାରନ୍ତି । ମାତ୍ର ବେଳେବେଳେ ସୁସୁରି ଶବ୍ଦର ଭାଷା ସେମାନଙ୍କ ପାଇଁ ଖୁବ୍ ଦରକାରୀ ହୋଇଥାଏ ।

ହୋମର ଦ୍ୱୀପର ଚତୁର୍ଦ୍ଦିଗରେ ଉଚ୍ଚ ପର୍ବତମାଳା ରହିଛି । ପର୍ବତ ମଝିରେ ସଂକୀର୍ଣ୍ଣ ସମତଳ ଭୂଇଁ । ଏହି ଦ୍ୱୀପରେ ଗୋଟିଏ ଗାଁରୁ ଅନ୍ୟ ଗୋଟିଏ ଜନବସତିକୁ ଯିବା ପାଇଁ ସିଧା ରାସ୍ତା ନାହିଁ । ଅଳ୍ପଦୂରର ଗୋଟିଏ ଗାଁକୁ ଯିବାକୁ ହେଲେ ଅତି ଦୁର୍ଗମ ପାହାଡ଼ ଚଢ଼ିବାକୁ ପଡ଼େ ଓ ଅପର ପଟେ ଖୁବ୍ ଗଡ଼ାଣିଆ, ପଥୁରିଆ ଚଲାବାଟ ଦେଇ ତଳକୁ ଗଡ଼ିବାକୁ ହୁଏ । ପାହାଡ଼ ମଝିରେ ଥିବା ସମତଳ ଜାଗା ଓ ଖରସ୍ରୋତା ନଦୀ ପାର ହୋଇ ଯିବାକୁ ପଡ଼ିଥାଏ । ବେଳେ ବେଳେ ଅଳ୍ପ କେତୋଟି କିଲୋମିଟର ରାସ୍ତା ଅତିକ୍ରମ କରିବାକୁ ପୂରା ଦିନଟିଏ ଲାଗିଯାଏ । ଦୂର ଗାଁରେ ରହୁଥିବା ଲୋକଙ୍କୁ କୌଣସି ଖବର ଦେବାକୁ କିମ୍ବା ଅନ୍ୟ ଗାଁରୁ ଅତିଥିଙ୍କୁ ଡାକିବାକୁ ହେଲେ କ'ଣ ବା କରିବାକୁ ପଡ଼ୁ ନଥିବ ? ତେଣୁ ଦ୍ୱୀପଟିର ଅଧିବାସୀମାନେ ଗୋଟିଏ ଉପାୟ ବାହାର କରିଥିଲେ । ତାହା ହେଲା, 'ସିଲ୍‌ବୋ' ନାମକ ଏକ ସୁସୁରି ଶବ୍ଦ କରିବା ।

ଏହା ସାଧାରଣ ସୁସୁରି ଶବ୍ଦ ନୁହେଁ । 'ସିଲ୍‌ବୋ' ବେଳେବେଳେ କ୍ଷୀଣ, ନିମ୍ନତର ତ ପୁଣି କେତେବେଳେ ଉଚ୍ଚତର ଓ କର୍କଶ ହୋଇଥାଏ । ପୁଣି ମଝିରେ ମଝିରେ ଅମିଯାଇ ଶ୍ରୁତିମଧୁର ଓ ତୂଷ୍ଣ ହୋଇଯାଏ । ଏହି ପରି ଭିନ୍ନତାଙ୍କର

ସୁସୁରି ଶବ୍ଦ ଶୁଣୁଥିବା ଲୋକ ଭଲଭାବେ ବୁଝିପାରେ ସିଟି ମାରୁଥିବା ଲୋକ କ'ଣ କହିବାକୁ ଚାହୁଁଛି ।

ପିଲମାନେ ! ତୁମେ ପଗ୍ଭରି ପାର ସିଟି ମାରିବା କ'ଣ ଦରକାର ? ବଡ଼ ପାଟିରେ ଡାକ ପକାଇଲେ କ'ଣ ହୁଅନ୍ତା ନାହିଁ ?

ଉଚ୍ଚ ପାହାଡ଼ରେ କୁହାଟ ମାରି ଡାକିଲେ ସେ ଡାକ କୁଆଡ଼େ ହଜିଯାଏ । କିନ୍ତୁ ପାହାଡ଼ିଆ ପବନର ସ୍ୱତନ୍ତ୍ର ଲହରି ସୁସୁରି ଶବ୍ଦକୁ ଅନେକ ଦୂରକୁ ନେଇଯାଏ । ଏପରିକି ଚଉଦ କିଲୋମିଟର ଦୂରରେ ମଧ୍ୟ ସୁସୁରି ଶବ୍ଦ ଶୁଣାହୁଏ ।

ହୋମର ଦ୍ୱୀପର ବାସିନ୍ଦାମାନେ ଯେ କେବଳ ସୁସୁରି ଶବ୍ଦର ଭାଷା ଜାଣନ୍ତି ତା ନୁହେଁ । ଫ୍ରାନସ୍ ଓ ସ୍ପେନ୍‌ର ପାଇରିନିୟା ପର୍ବତ ସୀମାରେ ଥିବା କ୍ଷୁଦ୍ର ଗ୍ରାମ 'ଆସ୍'ର ବାସିନ୍ଦାମାନେ ମଧ୍ୟ ସୁସୁରି ଶବ୍ଦ ବ୍ୟବହାର କରନ୍ତି । ସେମାନେ ସୁସୁରି ଶବ୍ଦରେ କଥାବାର୍ତ୍ତା ହୁଅନ୍ତି । ଯୁଦ୍ଧ ସମୟରେ ଏହି ଶବ୍ଦର ଭାଷା ଗରିଲାଯୋଦ୍ଧାମାନଙ୍କୁ ଖୁବ୍ ସାହାଯ୍ୟ କରିଥିଲା । ସୁସୁରି ମାରି ସେମାନେ ପରସ୍ପରକୁ ବିଭିନ୍ନ ଖବର ଦେଉଥିଲେ, ବିପଦ ଆଗରୁ ସତର୍କ କରାଇ ଦେଉଥିଲେ । ଫାସିଷ୍ଟମାନେ ଏସବୁ ସଙ୍କେତକୁ ବୁଝି ପାରୁ ନଥିଲେ ।

ଅଳ୍ପଦିନ ପୂର୍ବେ ବୈଜ୍ଞାନିକମାନେ ତୁରସ୍କର ଉଚ୍ଚ ପାହାଡ଼ ଅଞ୍ଚଳରେ ଏକ କ୍ଷୁଦ୍ର ଗ୍ରାମର ସନ୍ଧାନ ପାଇ, ତା'ର ନାମ ଦେଇଛନ୍ତି "ବିହଙ୍ଗ" । କାରଣ ଏହି ଗ୍ରାମର ବାସିନ୍ଦାମାନେ ସୁସୁରି ମାରି କେବଳ ଯେ କଥାବାର୍ତ୍ତା ହୁଅନ୍ତି ତା ନୁହେଁ, ସେମାନେ ସୁସୁରି ମାରି ନିଜନିଜ ମଧ୍ୟରେ କଳି ମଧ୍ୟ କରନ୍ତି । ସେହି ସୁସୁରି ଶବ୍ଦ ସାହାଯ୍ୟରେ ସେମାନେ ପୁଣି କଳିର ସମାଧାନ କରିଥାଆନ୍ତି ।

ଆମେରିକାରେ ବାସ କରୁଥିବା ଲୋହିତ ଭାରତୀୟମାନେ ମଧ୍ୟ ସୁସୁରି ମାରି ଭାବ ବିନିମୟ କରି ଥାଆନ୍ତି । କେବଳ ସେମାନେ ନୁହନ୍ତି, ଅନ୍ୟମାନେ ମଧ୍ୟ ଏହି ଭାଷା ଅନୁସରଣ କରୁଥିବେ ।

ସବୁଆଡ଼େ ଜଣାଶୁଣା ଶବ୍ଦହୀନ ଅନ୍ୟ ଏକ ଭାଷା ହେଲା – ଢୋଲ ବାଦ୍ୟ । ଢୋଲକୁ ନିଜର ଭାଷା ରୂପେ ଏବେ ବି ଆଫ୍ରିକା ଓ ଦକ୍ଷିଣ ଆମେରିକାର ଅଧିବାସୀମାନେ ବ୍ୟବହାର କରୁଛନ୍ତି । "ସିଲ୍‌ବୋ" ଭଳି ଢୋଲ ବାଦ୍ୟ ସାହାଯ୍ୟରେ ବେଶି କଥା କହି ହୁଏ ନାହିଁ । ମାତ୍ର ବିଭିନ୍ନ ଭାଷାଭାଷୀ ଲୋକମାନେ ଢୋଲ ଶବ୍ଦର ମର୍ମକୁ ଉତ୍ତମ ରୂପେ ବୁଝିପାରନ୍ତି । ତେଣୁ ଭିନ୍ନ ଭାଷାଭାଷୀ ହୋଇଥିଲେ ବି ଲୋକମାନେ ଢୋଲ ଶବ୍ଦର ଭାବକୁ ବିଦ୍ୟୁତ୍ ଗତିରେ ଅନ୍ୟ ପାଖରେ ପହଞ୍ଚାଇ ଦିଅନ୍ତି । ଉଦାହରଣ ସ୍ୱରୂପ, ଆଫ୍ରିକାର ଗୋଟିଏ କୋଣରୁ ଖବର ଢୋଲଭାଷା ସାହାଯ୍ୟରେ ଦିନକ ମଧ୍ୟରେ ବିଦ୍ୟୁତ୍ ବେଗରେ ଅନ୍ୟ କୋଣରେ ପହଞ୍ଚି ପାରେ ଏବଂ ଟେଲିଗ୍ରାଫ୍ ଭଳି ତାହା ଦେଶରେ ସବୁଠିରେ ଖବର ପହଞ୍ଚାଇ ଦିଏ ।

ଢୋଲ ବା ବାଇଦ ବଜାଇ ଯୁଦ୍ଧରେ ବିଜୟ କିମ୍ବା ପରାଜୟ ବିଷୟରେ ଜଣାଇ ଦିଆଯାଇଥାଏ । ଡେଙ୍ଗୁରା ପିଟି ରାଜା କିମ୍ବା ମନ୍ତ୍ରୀଙ୍କର ଆଜ୍ଞାକୁ ଦେଶବାସୀଙ୍କୁ ଜଣାଇ ଦିଆଯାଏ । ଏବେ ଗୋଟିଏ ଉଦାହରଣ ଦେବା । ଇଟାଲି ଓ ଆବିସିନିୟା (ବର୍ତ୍ତମାନ ସେ ଦେଶଟିର ନାମ ଇଥିଓପିଆ) ମଧ୍ୟରେ ଯୁଦ୍ଧ ସମୟରେ ବାଇଦ ବଜାଇ ଆବିସିନିୟାର ଲୋକମାନଙ୍କୁ ଏକତ୍ରିତ କରା ଯାଇଥିଲା । ବାଇଦ ବାଜିବାର

ମାତ୍ର ଅଳ୍ପ କେତେ ଘଣ୍ଟା ପରେ ଦେଶ ସାରା ଖବର ପହଞ୍ଚି ଯାଉଥିଲା ।

ଏହା କୌଣସି ବିସ୍ମୟକର ବିଷୟ ନୁହେଁ ଯେ, ବର୍ତ୍ତମାନ ଆଫ୍ରିକା ମହାଦେଶରେ କେତେକ ଆଦିବାସୀ ଗୋଟିଏ ସ୍ଥାନରୁ ଅନ୍ୟ ସ୍ଥାନକୁ ଗ୍ରାମ ପରିବର୍ତ୍ତନ ଓ ବସବାସ କରିବାକୁ ଗଲାବେଳେ ନିର୍ଦ୍ଦିଷ୍ଟ ସ୍ଥାନରେ ପହଞ୍ଚି ପ୍ରଥମେ ଢୋଲ ସ୍ଥାପନା କରନ୍ତି ଓ ପରେ ବାସଗୃହ ନିର୍ମାଣ ଆରମ୍ଭ କରନ୍ତି ।

ବାର୍ତ୍ତା ସରବରାହ ସକାଶେ ରେଡିଓ, ଟେଲିଗ୍ରାଫ୍, ଟେଲିଫୋନ୍ ଆଦିର ବ୍ୟବହାର ଅବଶ୍ୟ ଆମେରିକାର ଲୋହିତ ଭାରତୀୟ ଏବଂ ଆଫ୍ରିକାର ଆଦିବାସୀମାନେ ଜାଣିବେ, କିନ୍ତୁ ଢୋଲ ଭାଷାର ମହତ୍ତ୍ୱ ଭୁଲେଇ ଯିବ ନାହିଁ । ତାହା ଏବେ ନୂଆ ରୂପ ଧାରଣ କରୁଛି ।

ତୁମେମାନେ ସାମୁଏଲ୍ ମୋର୍ସଙ୍କ ନାମ ଓ ତାଙ୍କର ତାର (ଟେଲିଗ୍ରାଫ୍) ଭାଷା ସମ୍ବନ୍ଧରେ ଶୁଣିଥିବ । ଏହି ଟେଲିଗ୍ରାଫ୍ ଭାଷା ହେଉଛି କେତେକ ବିନ୍ଦୁ ଓ କ୍ଷୁଦ୍ରରେଖା ଚିହ୍ନର ସମାହାର । ବେଳେବେଳେ ଏହି ବିନ୍ଦୁ ଓ କ୍ଷୁଦ୍ରରେଖା ଚିହ୍ନଗୁଡ଼ିକ ଟେଲିଗ୍ରାଫ୍ କାଗଜ ଉପରେ ଲେଖି ହୋଇ ଯାଏ, ଆଉ ବେଳେବେଳେ ଟେଲିଗ୍ରାଫ୍ ଯନ୍ତ୍ରର ଚାଳକ ଶବ୍ଦକୁ ମନଯୋଗ ଦେଇ ଶୁଣି ଖବରକୁ କାଗଜରେ ଲେଖିଥାଆନ୍ତି । ଏହି ଯନ୍ତ୍ରଟିରେ କ୍ଷୀଣ ଶବ୍ଦର ଅର୍ଥ ହେଲା ବିନ୍ଦୁ ଏବଂ କ୍ରମାଗତ ଦ୍ରୁତ ଶବ୍ଦର ଅର୍ଥ ହେଲା – କ୍ଷୁଦ୍ରରେଖା । ଯନ୍ତ୍ରଟି ଯେତେବେଳେ କାମ କରୁଥାଏ, ଆମେ ସେଥିରୁ କିଛି ବୁଝି ପାରୁ ନାହିଁ । ମାତ୍ର ଟେଲିଗ୍ରାଫ୍ ଯନ୍ତ୍ରର ଚାଳକ ସବୁ ଶବ୍ଦକୁ ଶୁଣି ବିନ୍ଦୁ ଓ କ୍ଷୁଦ୍ରରେଖାର ଶବ୍ଦ ସଂଯୋଜନା କରନ୍ତି ଏବଂ ସେହି ଶବ୍ଦକୁ ଖଞ୍ଜି ବାକ୍ୟ ତିଆରି କରନ୍ତି ।

ଅଭିଜ୍ଞ ଲୋକର ଦୃଷ୍ଟି ତାହା ସହଜରେ ଠଉରେଇ ନିଏ ।

...ଢୋଲ ପିଟି ଶତ୍ରୁ ଆକ୍ରମଣର ସୂଚନା ଦେବା ସମ୍ଭବପର ହୋଇଥାଏ । ଯାହା ଫଳରେ ପଡ଼ୋଶୀ ଗ୍ରାମର ଲୋକେ ଶତ୍ରୁ ସାଙ୍ଗରେ ଲଢ଼େଇ କରିବା ପାଇଁ ପ୍ରସ୍ତୁତ ହୋଇ ଯାଆନ୍ତି । କେହି ଢୋଲ ବଜାଇ ତା'ର ପ୍ରତିବେଶୀଙ୍କୁ ଖବର ଦିଏ ତ ଆଉ କିଏ ହାତରେ ହତିଆର ଧରି ଶବ୍ଦ ଆସୁଥିବା ସ୍ଥାନ ଆଡ଼କୁ ଗତିକରେ । ଏହି ସମୟରେ ମହିଳା ଓ ଶିଶୁମାନେ ଜଙ୍ଗଲକୁ ଦୌଡ଼ି ପଳାନ୍ତି । କାରଣ ଢୋଲ ଶବ୍ଦରୁ ଅନ୍ୟ ଗ୍ରାମ ଉପରେ ଶତ୍ରୁର ଆକ୍ରମଣ ଓ ସେ ପଟୁ ସାହାଯ୍ୟ ପ୍ରାର୍ଥନାର ଖବର ମିଳିଛି । ବାଇଦ ଶବ୍ଦରୁ ବାକ୍ୟ ସୃଷ୍ଟି ହୁଏ ଏବଂ ତାହାକୁ ବୁଝି ଲୋକମାନେ ସ୍ଥିର କରନ୍ତି ଯେ, ଶତ୍ରୁକୁ ଦମନ କରିବାକୁ ହେବ । ବିପଦ ଆପଦ ପଡ଼ିପାରେ, ତେଣୁ ମହିଳା ଓ ଶିଶୁମାନଙ୍କୁ ଜଙ୍ଗଲ ଭିତରକୁ ଚାଲିଯିବାକୁ ହେବ ।

ବାଇଦ ଦ୍ରୁତ ବେଗରେ ବିଜୟର ବାର୍ତ୍ତା ମଧ୍ୟ ପ୍ରସାରିତ କରେ । ଯୁଦ୍ଧରୁ

କେବଳ ଶବ୍ଦ ନୁହେଁ ଆଲୋକ ସାହାଯ୍ୟରେ ମଧ୍ୟ ଭାବର ଆଦାନ ପ୍ରଦାନ କରିହୁଏ । ପ୍ରୋଜେକ୍ଟର ସାହାଯ୍ୟରେ କ୍ଷଣସ୍ଥାୟୀ ଓ ଦୀର୍ଘସ୍ଥାୟୀ ଆଲୋକ ପକାଇବା ମଧ୍ୟ ସାମୁଏଲ୍ ମୋର୍ସଙ୍କର ଭାଷା । ଏହାକୁ ଆଲୋକ ଭାଷା କୁହାଯାଏ । କ୍ଷଣସ୍ଥାୟୀ ଆଲୋକର ଅର୍ଥ ହେଲା – ବିନ୍ଦୁ ଏବଂ ଦୀର୍ଘତର ଆଲୋକର ଅର୍ଥ – କ୍ଷୁଦ୍ରରେଖା । ଏହି ବିନ୍ଦୁ ଓ କ୍ଷୁଦ୍ରରେଖାରୁ ଶବ୍ଦ ସଂଯୋଜନା କରିହୁଏ ।

ଏହି ଧରଣର ଭାଷାର ଆଉ ଏକ ଉଦାହରଣ ହେଉଛି – ଏହି ପତାକା ଦେଖାଇ ସଙ୍କେତ ଦେଉଥିବା ଲୋକ । ସଂକେତଦାତା ଯେଉଁ ଭାବ ପ୍ରକାଶ କରିବାକୁ ଚାହାନ୍ତି

ସୈନ୍ୟମାନେ ଘରକୁ ଫେରି ଆସନ୍ତି । ବିଜୟୀ ସୈନ୍ୟମାନଙ୍କୁ ସ୍ୱାଗତ ଜଣାଇବା ପାଇଁ ଜଙ୍ଗଲରୁ ମହିଳା ଓ ଶିଶୁମାନେ ଫେରିଆସି ପ୍ରସ୍ତୁତ ହୁଅନ୍ତି । ଢୋଲ ବାଜିବାରୁ ସେମାନେ ଜାଣି ପାରନ୍ତି ବିଜୟର ବାର୍ତ୍ତା ।

ଏହି ଢୋଲପିଟା, ସୁରୁରି ଶବ୍ଦ ଏବଂ ଆଲୁଅ ପକାଇବାରୁ ଶବ୍ଦାବଳୀ ସୃଷ୍ଟିହୁଏ ଏବଂ ପ୍ରତ୍ୟେକ ଶବ୍ଦର ପଛରେ ଥାଏ ନିର୍ଦ୍ଦିଷ୍ଟ ଅର୍ଥ ଓ ଭାବନା ।



## କଥା ଓ ଅନୁଭୂତି

ଶବ୍ଦ ଓ ଅଙ୍ଗପ୍ରତ୍ୟଙ୍ଗ ସାହାଯ୍ୟରେ ମଣିଷ କେବଳ ଯେ ନିଜର ଭାବ ବ୍ୟକ୍ତ କରେ ତାହା ନୁହେଁ, ଏହା ଦ୍ୱାରା ସେ ନିଜର ଅବସ୍ଥା ଓ ଅନୁଭୂତି ପ୍ରକାଶ କରିଥାଏ ।

ପିଲମାନେ! ତୁମେ ବୋଧ ହୁଏ ଦେଖିଥିବ, ଖଟରେ ଶୋଇଥିବା ଅତି ଛୋଟ ଶିଶୁଟି ହଠାତ୍ ଏପଟ ସେପଟ କଡ଼ ଲେଉଟାଏ । ଅଭିଯୋଗକରି କାନ୍ଦି ଉଠେ, ଏପରିକି ପାଟିକରି ଜୋରରେ କାନ୍ଦେ । ଛୋଟ ପିଲଟି କଥା କହି ଜାଣେ ନାହିଁ କି କିଛି ବୁଝି ପାରେ ନାହିଁ । କିନ୍ତୁ ଖଟରେ ପଡ଼ି ରହିବାକୁ ଆଉ ତାକୁ ଭଲ ଲାଗୁ ନଥାଏ । ତେଣୁ ସେ କଡ଼ ଲେଉଟାଇ କାନ୍ଦିବାକୁ ଆରମ୍ଭ କରି ଦେଇଛି । ସେ କିଛି ଭାବୁ ନାହିଁ, କେବଳ ଏତିକି ଜଣାଇବାକୁ ଚାହେଁ ଯେ, ତାକୁ ଭଲ ଲାଗୁ ନାହିଁ । ବାପା, ମା ଓ ଆଉ, ଅଜାଙ୍କ ଭଳି ବୟସ ଲୋକଙ୍କ ପାଇଁ ଅଥବା ବଡ଼ ଭାଇ, ଭଉଣୀଙ୍କ ପାଇଁ ଛୋଟ ପିଲଟି ଦେଉଥିବା ସଂକେତର ଅର୍ଥ ହେଲା – ତା ପାଖକୁ ଯିବାକୁ ପଡ଼ିବ ଓ କିଛି କରିବାକୁ ପଡ଼ିବ ।

ଏବେ ଆଉ କେତୋଟି ଉଦାହରଣ ଦେବା ।

ହଠାତ୍ ଜଣେ ଲୋକର ଆଙ୍ଗୁଠିରେ କଣ୍ଟା ଫୋଡ଼ି ହୋଇଗଲା ଏବଂ କଷ୍ଟ ଅନୁଭବ କରି ନିଜ ଅଜାଣତରେ ସେ ପାଟି କରି ଉଠିଲା । ଲୋକଟି କାହାକୁ କିଛି କହିବାକୁ ଚାହୁଁ ନଥିଲା । କଣ୍ଟା ଫୋଡ଼ି ହୋଇ ଯିବାରୁ ଆପେ ଆପେ ତା ପାଟିରୁ ଶବ୍ଦ ବାହାରି ପଡ଼ିଲା ।

ପିଲଟିଏ ଶାନ୍ତ ହୋଇ ବସିଛି । ପାଖରେ ଥିବା କବାଟଟା ଜୋରରେ ଧଡ଼କିନା ବନ୍ଦ ହୋଇଗଲା । ଚମକି ପଡ଼ି ପିଲଟି ପାଟିକଲା । ପୁଣି ଠିକ୍ ସେହିପରି, ଅଜାଣତରେ ତା ପାଟିରୁ ଚିତ୍କାର ବାହାରି ଆସିଲା ।

ଅନେକ ଦିନରୁ ଦେଖି ନଥିବା ଜଣେ ଅନ୍ତରଙ୍ଗ ବନ୍ଧୁଙ୍କୁ ଦେଖି ତୁମେ ଆନନ୍ଦରେ ବିଭୋର ହୋଇ ଉଠିଲ । ସମ୍ଭବତଃ ଆନନ୍ଦରେ ଚିତ୍କାର କରି "ହେ ବନ୍ଧୁ!" ବୋଲି କହି ପକାଇ, କିମ୍ବା ତାଙ୍କୁ ପଚାରିଲ "କେଉଁଠୁ ଆସିଲ ? ତୁମକୁ ଦେଖି ମୁଁ ଖୁବ୍ ଖୁସି ।" ପ୍ରଥମେ ତୁମେ ଯେତେବେଳେ "ହେ ବନ୍ଧୁ" ବୋଲି କହି ଉଠିଲ, ଅଜାଣତରେ ତୁମ ମନଭିତରୁ ଆନନ୍ଦରେ ତାହା ବାହାରି ଆସିଥିଲା ।

ଶେଷରେ ଆଉ ଗୋଟିଏ ଉଦାହରଣ ଦେବା । ଜଙ୍ଗଲରେ ବୁଲୁବୁଲୁ ହଠାତ୍ ତୁମେ ଗୋଡ଼ ତଳେ ଦେଖିଲ ଗୋଟାଏ ସାପ । ତତ୍କ୍ଷଣାତ୍ ତୁମେ ଚିତ୍କାର କରି ଉଠିଲ । ହୋଇପାରେ ତୁମେ ରାସ୍ତାରୁ ଟିକିଏ କଡ଼କୁ ହଟିଯାଇ ପଛରେ ଆସୁଥିବା ଲୋକକୁ ପାଟି କରି କହିବ, "ସାବଧାନ! ସାପଟାଏ ଅଛି!"



ଏବେ ଏହି ଉଦାହରଣଗୁଡ଼ିକରୁ କ'ଣ ଜଣା ପଡ଼ିଲା ଦେଖିବା ।

ମଣିଷ ନିଜର ଅନୁଭୂତିକୁ ଦୁଇଟି ଉପାୟରେ ବ୍ୟକ୍ତ କରିପାରେ । ପ୍ରଥମତଃ, ଭାଷା ମାଧ୍ୟମରେ – ଏହା ସଚେତନ ମନର ଭାବ ପ୍ରକାଶ । ଦ୍ୱିତୀୟରେ, ବିସ୍ମୟ ସହକାରେ ଅଙ୍ଗପ୍ରତ୍ୟଙ୍ଗ ହଲାଇଲେ ଅଜାଣତରେ ମନରୁ କିଛି ବାହାରି ଆସେ । ଏହା ହେଉଛି ଅଚେତନ ମନର ଭାବ ପ୍ରକାଶ ।

ଏହାକୁ ସଚେତନ ଏବଂ ଅଚେତନ ମନର ମିଳିତ ଭାବ ପ୍ରକାଶ ବୋଲି କୁହାଯାଇ ପାରେ । ଦୃଷ୍ଟାନ୍ତ ସ୍ୱରୂପ ତୁମର ଆଙ୍ଗୁଠିରେ କଣ୍ଟା ଫୋଡ଼ି ହୋଇ ଗଲେ ଚିତ୍କାର କରି ତୁମେ କହିପାର ତୁମକୁ କିପରି କଷ୍ଟ ହେଲା ।



ସେହିପରି ବନ୍ଧୁଙ୍କୁ ଭେଟି ତୁମେ "ହେ ବନ୍ଧୁ" ବୋଲି ପାଟି କରି ପୁଣି ଧୀରେ ଧୀରେ କହିପାର ଯେ, ତୁମେ ତାଙ୍କୁ ଦେଖି ଖୁବ୍ ଖୁସି ।

ଏହା ତ ହେଲା ମଣିଷର ବ୍ୟବହାର କଥା । ବର୍ତ୍ତମାନ ଦେଖିବା ଜୀବଜନ୍ତୁମାନେ କିପରି ଆଚରଣ କରନ୍ତି ।

କୁକୁର କଥା ଦେଖିବା । ନିଜର ପ୍ରଭୁକୁ ଦେଖି କୁକୁର ଲାଙ୍ଗୁଡ଼ ହଲାଇ ଡେଇଁବାକୁ ଲାଗେ । କୁକୁରଟିର ଆଚରଣରୁ ଜଣାଯାଏ ଯେ, ସେ ଖୁବ୍ ଆନନ୍ଦିତ, କିନ୍ତୁ ଲାଙ୍ଗୁଡ଼ ହଲାଇ ଓ ଡେଇଁ ଡେଇଁ ସେ "ତୁମକୁ ଦେଖି ମୁଁ ଭାରୀ ଖୁସି!" ବୋଲି କହିବାକୁ ଚାହେଁ ନାହିଁ । ମୋଟାମୋଟି ଭାବେ କୁକୁରଟି ଆନନ୍ଦିତ, କିନ୍ତୁ ନିଜର ଆନନ୍ଦ ପ୍ରକାଶ କରିବାକୁ ସେ ଚାହେଁ ନାହିଁ । ସେ କୌଣସି ବିଷୟ ମଧ୍ୟ ଚିନ୍ତା କରେ ନାହିଁ ।

ଯେତେବେଳେ ଜୀବଜନ୍ତୁ କଷ୍ଟ ଅନୁଭବ କରନ୍ତି ସେମାନେ କ୍ଷୀଣ କଣ୍ଠରେ ଶବ୍ଦ କରନ୍ତି କିମ୍ବା ବିକଳ ଚିତ୍କାର କରନ୍ତି । ମଣିଷର ଗୋଡ଼ ବା ହାତ କେଉଁଠି



ବାଜିଗଲେ, କଷ୍ଟରେ ସେ ଯେପରି "ଓଃ" କହିଉଠେ, ଜୀବଜନ୍ତୁ ଠିକ୍ ସେହିପରି କରନ୍ତି । ମଣିଷ ଚିତ୍କାର ନକରି କହିପାରେ ଯେ, ତାକୁ କଷ୍ଟ ହେଉଛି । ମାତ୍ର ମଣିଷ ଯଦି କଥା କୁହେ ତେବେ ତାହା ଅନୁଭୂତି ନୁହେଁ, ତାହା ଭାବନାର ବର୍ଣ୍ଣନା । ଏହାର ଅର୍ଥ ହେଲା ଯେ, ଶବ୍ଦ, ଅଂଗ ଚାଳନା, ଠାଣୀ ଓ ଇଙ୍ଗିତ ଦେଇ ମଣିଷ ନିଜର ଅନୁଭୂତି ଓ ଭାବନା ବ୍ୟକ୍ତ କରେ, କିନ୍ତୁ ଜୀବଜନ୍ତୁ କେବଳ ନିଜର ଅନୁଭୂତି ପ୍ରକାଶ କରନ୍ତି ।

ଅନୁଭୂତି ଓ କ୍ଲେଶ ଇତ୍ୟାଦିକୁ ହୃଦୟର ଆବେଗ କୁହାଯାଏ । ତେଣୁ ପ୍ରତ୍ୟେକ ଅଂଗ ଚାଳନା, ଶବ୍ଦ ଓ ଇଙ୍ଗିତ ତଥା ଜୀବଜନ୍ତୁଙ୍କର ସବୁ ପ୍ରକାର କଥାବାର୍ତ୍ତାକୁ ଆବେଗପୂର୍ଣ୍ଣ ଭାଷା ବୋଲି କୁହାଯାଏ ।





ମଣିଷ ଓ ଜୀବଜନ୍ତୁଙ୍କର ଭାଷା ମଧ୍ୟରେ ଏହା ହେଉଛି ଏକାଧିକ ପାର୍ଥକ୍ୟ ମଧ୍ୟରୁ ପ୍ରଧାନ ପାର୍ଥକ୍ୟ ।

ମଣିଷମାନେ ନିଜେ ନିଜ ସହିତ ଖୁବ୍ କମ୍ କଥାବାର୍ତ୍ତା କରନ୍ତି । ମଣିଷ ଯଦି କଥା କହେ ତେବେ ସେ ଅନ୍ୟ ଜଣକୁ କହେ ଏବଂ ଲକ୍ଷ୍ୟ ରଖି କହେ, ସେ ପ୍ରଶ୍ନ ପଚାରେ, ଭାବ ପ୍ରକାଶ କରେ, ତାକେ ଏବଂ ସତର୍କ କରାଇ ଦିଏ, ନିଜର ଭାବନା ପ୍ରକାଶ କରି ତା'ର ଉତ୍ତର ପାଇବାକୁ କଥାବାର୍ତ୍ତା କରିଥାଏ ।

ମାତ୍ର ଜୀବଜନ୍ତୁମାନେ କାହାରି ସହିତ କଥାବାର୍ତ୍ତା ନହୋଇ ନିଜର ଅବସ୍ଥା ବିଷୟରେ କହନ୍ତି । ଗୋଟିଏ ଜନ୍ତୁ ନିଜର ଜନ୍ତୁ ଭାଇକୁ ଦେଖି କିମ୍ବା ତା'ର କ୍ରନ୍ଦନ ଶୁଣି, ତା'ର ଅନୁଭୂତିର ସଂକେତ ପାଇ ପାରେ । ଗୋଟିଏ ଜନ୍ତୁର ଇଙ୍ଗିତ ଅନ୍ୟ ଜନ୍ତୁ ପାଇଁ ସମ୍ବାଦ, ସତର୍କବାଣୀ କିମ୍ବା ଅନ୍ୟ କିଛି ହୋଇ ପାରେ ।

ଦୁଇଟି କୁକୁର ପରସ୍ପରକୁ ଭେଟିଲେ । ସେମାନଙ୍କ ମଧ୍ୟରୁ ଗୋଟିଏ ବଡ଼ କୁକୁର ଓ ଅନ୍ୟଟି ଟିକିଏ ସାନ । ଛୋଟ କୁକୁରଟି ସାବଧାନତାର ସହ ବଡ଼ ନିକଟକୁ ଆଗେଇଛି । କିଏ ଜାଣେ ବଡ଼ କୁକୁରଟି ହଠାତ୍ କ'ଣ କରିବ ? ମାତ୍ର ବଡ଼ କୁକୁରଟି ଖେଳିବାକୁ ଆଗ୍ରହୀ । ସାନ କୁକୁରକୁ ଦେଖି ସେ ଆନନ୍ଦିତ । ଲାଙ୍ଗୁଡ଼ ହଲାଇ ସେ ନିଜ ମନର ଆନନ୍ଦ ପ୍ରକାଶ କରୁଛି । ସେ କହିପାରୁ ନାହିଁ, "ମୁଁ ତୋତେ ଦେଖି ଖୁସି ।" କେବଳ ଲାଙ୍ଗୁଡ଼ ହଲାଉଛି । କାରଣ, କୁକୁରମାନେ ଲାଙ୍ଗୁଡ଼ ହଲାଇ ନିଜ ମନର ଆନନ୍ଦ ପ୍ରକାଶ କରି ଥାଆନ୍ତି । ସାନ କୁକୁରଟି ବଡ଼ କୁକୁରର ଲାଙ୍ଗୁଡ଼ ହଲା ଦେଖି ବୁଝିପାରେ ଯେ, ଭୟର କାରଣ ନାହିଁ । ଆଉ ଯଦି ବଡ଼ ବଳୁଆ କୁକୁରଟି ଛୋଟ କୁକୁର ସହିତ ମିଶିବାକୁ ଆଗ୍ରହୀ ନୁହେଁ, ବଡ଼ କୁକୁରଟିର ଗର୍ଜନ ଓ ଦେହଫୁଲା ଦେଖି ଛୋଟ କୁକୁରଟି ଖୁବ୍ ଶୀଘ୍ର ଏହା ବୁଝିପାରେ । ତେଣୁ ସାନ କୁକୁରଟି ଦୂରରେ ରହିବା ହିଁ ଭଲ । କୁକୁର କେବେ କହେ ନାହିଁ "ତୁ ଏଠୁ ପଳା, ନଚେତ୍ କାମୁଡ଼ି ଦେବି" । କିନ୍ତୁ ଅନ୍ୟ କୁକୁରର ଉପସ୍ଥିତରେ ସେ ବିବ୍ରତ ହୋଇ ରାଗି ଉଠେ, କୁକୁର ଦେହର ଉପରିସ୍ଥ ଲୋମାଂଶ ଫୁଲି ଉଠିଲେ, ସେ ଭୁକିଲେ କିମ୍ବା ଦାନ୍ତ ଦେଖାଇଲେ, ସେଥିରୁ ତା'ର ଅନୁଭୂତି ପ୍ରକାଶ ପାଏ । ଅନ୍ୟ କୁକୁରଟି ପାଇଁ ନିର୍ବୋଧ କୁକୁରର ମନର ଭାବନା ବିନା ବାକ୍ୟରେ ଇଙ୍ଗିତରୁ ହିଁ ସ୍ପଷ୍ଟ ହୁଏ । ଏହି ପରିସ୍ଥିତିରେ କ'ଣ କରିବାକୁ ପଡ଼ିବ ତାହା ସେ ଉତ୍ତମ ରୂପେ ଜାଣେ ।

ଅନ୍ୟ ଏକ ବଡ଼ ପାର୍ଥକ୍ୟ ହେଲା : ଜୀବଜନ୍ତୁମାନେ ନିଜର ଭାଷା ଜାଣି ଜନ୍ମ ହୋଇ ଥାଆନ୍ତି । ସେମାନଙ୍କୁ ଭାଷା ଶିକ୍ଷା କରିବାକୁ ପଡ଼େ ନାହିଁ । ଉଦାହରଣ ସ୍ୱରୂପ, ଛୋଟ କୁକୁରଛୁଆଟି ଜନ୍ମର କିଛି ଦିନ ପରେ ଅନ୍ୟ କୁକୁରଙ୍କଠାରୁ ଅଲଗା ହୋଇ ବଢ଼େ । ଶୀଘ୍ର ହେଉ ବା ବିଳମ୍ବରେ ହେଉ, ସେ ନିଶ୍ଚୟ ଭୁକିବ, ଦାନ୍ତ

ନିଭୁଟିବ ଓ ଲଙ୍ଗୁଡ଼ ହଲଇବ, ଯଦିଓ କେହି ତାକୁ ଏ ବିଷୟରେ ଶିକ୍ଷା ଦେଇ ନାହାନ୍ତି, ତଥାପି ସେ ସବୁକଥା ଜାଣେ । ମାତ୍ର ମଣିଷ ଯଦି ମଣିଷଙ୍କ ଗହଣରେ ନରହେ, ସେ କେବେହେଲେ କଥାବାର୍ତ୍ତା କରିବ ନାହିଁ ।

କିନ୍ତୁ ମଣିଷ ନିଜ ଭାଷା ବ୍ୟତୀତ ଅନ୍ୟାନ୍ୟ ଭାଷା ମଧ୍ୟ ଶିଖି ପାରେ । ଜୀବଜନ୍ତୁ କେବେହେଲେ ଅନ୍ୟ ଭାଷାରେ କଥାବାର୍ତ୍ତା କରିବାକୁ ଶିଖି ପାରନ୍ତି ନାହିଁ ।

ଚଢ଼େଇମାନଙ୍କ କଥା ଭିନ୍ନ । ସେମାନେ ବିଭିନ୍ନ ଶବ୍ଦ, ଅନ୍ୟର ଗୀତ, ଏପରିକି ମଣିଷର କଣ୍ଠସ୍ୱର ଅନୁକରଣ କରି ପାରନ୍ତି । ସେମାନଙ୍କ ବିଷୟରେ ଆମେ ଅନ୍ୟ ପ୍ରସଙ୍ଗରେ ଆଲୋଚନା କରିବା ।

ପିଲମାନେ ! ତୁମେମାନେ ଏବେ ଜୀବଜନ୍ତୁଙ୍କ ଭାଷା କ'ଣ ତାହା ଜାଣିଲ । ଏହି ଭାଷା କେତେ ପ୍ରକାରର ଓ ଜୀବଜନ୍ତୁମାନେ କିପରି କଥାବାର୍ତ୍ତା ହୁଅନ୍ତି ଏବେ ତୁମମାନଙ୍କୁ ତାହା ବୁଝାଯାଇ ପାରେ ।

# ପ୍ରଥମ ଭାଗ

# ନାକ କ'ଣ ଏତେ କାମ କରେ ?

## ବଡ଼ ବୈଜ୍ଞାନିକ କ'ଣ ଜାଣି ନଥିଲେ

ପ୍ରସିଦ୍ଧ ଫରାସୀ ବୈଜ୍ଞାନିକ ହେନ୍‌ରୀ ଫାବର କୀଟ ପତଙ୍ଗମାନଙ୍କ ଉପରେ ଗବେଷଣା କରି ସାରା ଜୀବନ ବିତାଇ ଦେଇଥିଲେ । ପୂର୍ବରୁ କୌଣସି ବହିରେ ଲେଖା ନଥିବା , କିମ୍ବା କେହି ଜାଣିନଥିବା ଅନେକ କଥା ସେ ଜାଣି ପାରିଥିଲେ । ଛଅଗୋଡ଼ିଆ କୀଟ ପତଙ୍ଗ ସଂସାରରେ ଫାବରଙ୍କ ସାରା ଜୀବନ ବିତିଥିଲା । ତେଣୁ କୌଣସି କଥା ଦେଖି ସେ ଆଶ୍ଚର୍ଯ୍ୟ ହେଉ ନଥିଲେ । କିନ୍ତୁ ଥରେ ପୂର୍ବରୁ ଅଜଣା ଅଶୁଣା ଏପରି ଏକ ଘଟଣା ଘଟିଲା , ଯାହାକି ବୈଜ୍ଞାନିକଙ୍କୁ ବିସ୍ମିତ କରିଦେଲା ।

ଦିନେ ସଞ୍ଜ ଗଡ଼ିବା ଆଗରୁ ଫାବର ବାରଣ୍ଡାରେ ଥିବା ଗୋଟିଏ ଛୋଟ ଜାଲିରେ ଏଣ୍ଡିପୋକଟିଏ ରଖିଥିଲେ । ରାତିରେ ଏଣ୍ଡିରୁ ପ୍ରଜାପତିଟିଏ ବାହାରିଲା । ମାତ୍ର ଏଥିରେ ଆଶ୍ଚର୍ଯ୍ୟ ହେବାର କିଛି ନଥିଲା , କାରଣ ଅନେକ ଥର ଫାବର କୃତ୍ରିମ ଉପାୟରେ ପ୍ରଜାପତି ପ୍ରଜନନ କରାଇଥିଲେ । ବୈଜ୍ଞାନିକ ଫାବରଙ୍କୁ ଆଶ୍ଚର୍ଯ୍ୟ କରିଥିଲା ଅନ୍ୟ ଗୋଟିଏ କଥା : ସକାଳୁ ଦେଖିଲା ବେଳକୁ ବାରଣ୍ଡା ସାରା କୋଡ଼ିଏ ନୂଆ ପ୍ରଜାପତିଗୁଡ଼ାଏ ଉଡ଼ି ଆସି ବସିଛନ୍ତି । ସେମାନେ ବାରଣ୍ଡାର ଟେବୁଲ ଓ ଚଉକି ଧାରରେ ଏବଂ ଘରିଆଡ଼େ ବସିଥାଆନ୍ତି । ଯେଉଁ ଛୋଟ ଜାଲିଟିରେ ଏଣ୍ଡିପୋକରୁ ନବଜାତ ପ୍ରଜାପତିଟିଏ ବାହାରିଥାଏ , ସେହି ଜାଲିଟି ଯାକ ଏହି ରାତ୍ରିର ଅତିଥି , ନୂଆ ନୂଆ ପ୍ରଜାପତି ସବୁ ବସି ଯାଇଥିଲେ ।

ଜାଲି ସାହାଯ୍ୟରେ ପ୍ରାୟ ଶହେଟି ପ୍ରଜାପତି ଧରି , ଫାବର ଡବା ଭିତରେ ରଖିଲେ । ବୈଜ୍ଞାନିକ ଦେଖିଲେ ଯେ , ଉଡ଼ି ଆସିଥିବା ପ୍ରଜାପତିଗୁଡ଼ାକ ଅଣ୍ଡିରା ପ୍ରଜାପତି । ତତ୍‌କ୍ଷଣାତ୍ ନବଜାତ ପ୍ରଜାପତି ଥିବା ଜାଲିଟି ହାତକୁ ଉଠାଇ ନେଇ ସେ ଦେଖିଲେ ଯେ , ଜାଲିରେ ମାଈ ପ୍ରଜାପତିଟିଏ ବସିଛି ।

ଫାବର ଜାଣିବାକୁ ପାଇଲେ ଯେ , ସେହି ଜାତୀୟ ପୁରୁଷ ପ୍ରଜାପତି ସ୍ତ୍ରୀ ପ୍ରଜାପତି ଜନ୍ମ ହେବାର ଅନ୍ତତଃ ଦୁଇଦିନ ଆଗରୁ ଏଣ୍ଡିରୁ ଜନ୍ମ ନିଅନ୍ତି । ସେ ପୁଣି ଜାଣି ପାରିଲେ ଯେ , ଏଣ୍ଡିପୋକରୁ ଜାତ ହେଲା ପରେ ପ୍ରଜାପତିଟି ଟୋପାଏ ତରଳ ପଦାର୍ଥ ଛାଡ଼ି ଯାଏ । ଏହି ତରଳ ପଦାର୍ଥ ଶୁଖି ଜାଲି ତଳେ ଲାଗି ରହିଥାଏ । ଫାବର ଅନୁମାନ କଲେ ଯେ , ଏହି ତରଳ ପଦାର୍ଥ ଟୋପାକର ଗନ୍ଧ

ପୁରୁଷ ପ୍ରଜାପତିମାନଙ୍କୁ ଡାକି ଆଣିଛି । କିନ୍ତୁ ଆହୁରି ଅନେକ କଥା ତାଙ୍କ ପାଇଁ ଅଜଣା ରହିଯାଇ ଥାଏ ।

ଯୁକ୍ତିସଂଗତ ବିଗ୍ଭର କରି ଫାବର ସିଦ୍ଧାନ୍ତରେ ଉପନୀତ ହେଲେ ଯେ, ବାରଣ୍ଡାକୁ ରାତିରେ ଅନେକ ପ୍ରଜାପତି ଆଗମନର କାରଣ ହେଲା ଜାଲି ଭିତରେ ନବଜାତ ପ୍ରଜାପତିର ଆବିର୍ଭାବ ବା ସେହି ତରଳ ପଦାର୍ଥ ଟୋପାକର ଆବିର୍ଭାବ । ଫାବରଙ୍କ ମନରେ ଆଉ ଗୋଟିଏ ପ୍ରଶ୍ନ ଉଠିଥିଲା, ଯାହାରକି ସେ ଉତ୍ତର ପାଇ ନଥିଲେ । ପ୍ରଶ୍ନଟି ହେଲା – ଆଖପାଖରେ ବଣ ନାହିଁ । ଘର ପାଖର ସବୁଠାରୁ ନିକଟତମ ଜଙ୍ଗଲଟି ଦୁଇ-ତିନି କିଲୋମିଟର ଦୂରରେ ଅବସ୍ଥିତ । ତେବେ ଏତେ ସଂଖ୍ୟାରେ ପ୍ରଜାପତି ଆସିଲେ କେଉଁଠୁ ? ସେମାନେ ମାଈ ପ୍ରଜାପତିଟିର ସନ୍ଧାନ ପାଇଲେ କିପରି ? ସେମାନେ କ'ଣ ଗନ୍ଧ ବାରି ପାରିଲେ ? ଦୁଇ-ତିନି କିଲୋମିଟର ଦୂରରୁ ଟୋପାଏ ତରଳ ପଦାର୍ଥର ଗନ୍ଧ ବାରିବା ଯେ ଅସମ୍ଭବ !

ଫାବର କୀଟ ପତଙ୍ଗ ବିଷୟରେ ବିଶାରଦ ଥିଲେ । ଗତ ଶତାବ୍ଦୀରେ ସେ ଥିଲେ ଜଣେ ସ୍ୱନାମଧନ୍ୟ ଫରାସୀ ବୈଜ୍ଞାନିକ । ତଥାପି ସେ ଅନେକ କଥା ଜାଣି ପାରି ନଥିଲେ । କୀଟ ପତଙ୍ଗଙ୍କ ଜୀବନର ସବୁଠାରୁ କୌତୂହଳପୂର୍ଣ୍ଣ କଥା – ସେମାନଙ୍କର ଘ୍ରାଣଶକ୍ତିର ତୀକ୍ଷ୍ଣତା ତାଙ୍କୁ ଜଣା ନଥିଲା ।

ଏଥିରେ ଆଶ୍ଚର୍ଯ୍ୟ ହେବାର ନାହିଁ, କାରଣ ସେ ସମୟରେ ବୈଜ୍ଞାନିକମାନେ ଛଅଗୋଡ଼ିଆ କୀଟ ପତଙ୍ଗଙ୍କର ଘ୍ରାଣଶକ୍ତି ସମ୍ବନ୍ଧରେ ବିଶେଷ ଗବେଷଣା କରି ନଥିଲେ । ସେମାନେ ଉତ୍ତମ ରୂପେ ବୁଝି ପାରୁଥିଲେ ଯେ, ଜୀବଜନ୍ତୁଙ୍କ ଜୀବନରେ ଘ୍ରାଣଶକ୍ତି ବା ଗନ୍ଧ ବାରିବାର ଦକ୍ଷତାର ବେଶ୍ ମହତ୍ତ୍ୱ ରହିଛି । ଗନ୍ଧ ବାରି ହିଂସ୍ର ଜନ୍ତୁ ଅନ୍ଧାରରେ ଶିକାର ସନ୍ଧାନ କରି ପାରନ୍ତି । ଅନେକ ଜୀବଜନ୍ତୁ ଗନ୍ଧରୁ ବିପଦର ସଂକେତ ପାଇ ପାରନ୍ତି । ଅନ୍ଧକାରରେ, ଭୂମି ତଳେ, ଗଛ ଖୋଲରେ କିମ୍ବା ପାଣି ଭିତରେ ଯେଉଁଠି ଦୃଷ୍ଟିଶକ୍ତି ବା ଶ୍ରବଣଶକ୍ତି ପ୍ରୟୋଗ କରିବା ଅସମ୍ଭବ, ସେଠାରେ ଘ୍ରାଣଶକ୍ତି ସାହାଯ୍ୟ କରିଥାଏ ।

ମଣିଷ ପକ୍ଷେ ଘ୍ରାଣଶକ୍ତିର ଗୁରୁତ୍ୱ କମ୍, କାରଣ ଗନ୍ଧ ବାରି ମଣିଷକୁ ଖାଦ୍ୟ ସଂଗ୍ରହ କରିବାକୁ ପଡ଼େ ନାହିଁ କିମ୍ବା ଶତ୍ରୁ ଆଗମନ ଠଉରେଇବାକୁ ପଡ଼େ ନାହିଁ । ତେଣୁ ମଣିଷ ମାତ୍ର ଅଳ୍ପ କେତେ ହଜାର ପ୍ରକାରର ଗନ୍ଧ ଅନୁଭବ କରେ ଓ ବାରିପାରେ । ପିଲାମାନେ ! ତୁମେ ଭାବୁଥିବ ଯେ, କେତେ ହଜାର ରକମର ଗନ୍ଧ ତ ଖୁବ୍ ବେଶି । କିନ୍ତୁ ଜାଣିରଖ ଯେ, କୁକୁର ପ୍ରାୟ ଦୁଇ ନିୟୁତ ଯାଏ ବିଭିନ୍ନ ପ୍ରକାରର ଗନ୍ଧ ବାରି ପାରେ । ତେବେ ତୁମେମାନେ ଏଥିରୁ ସହଜରେ ଜାଣି ପାରୁଥିବ ଯେ, ମଣିଷର ଘ୍ରାଣଶକ୍ତି କୁକୁରଠାରୁ ଯଥେଷ୍ଟ କମ୍ ।


କୋକିଶିଆଳୀ

କୁକୁରର ଘ୍ରାଣେନ୍ଦ୍ରିୟ ଖୁବ୍ ଉନ୍ନତ । ଏହାଛଡ଼ା କୁକୁର ଭଲଭାବେ ଦେଖିପାରେ ଏବଂ ଖୁବ୍ ଭଲଭାବେ ଶୁଣିପାରେ ମଧ୍ୟ ।

ଯେଉଁ ଜୀବଜନ୍ତୁ ମୂଷା ଖୋଜି ଖାଆନ୍ତି – ଯଥା କୋକିଶିଆଳୀ ଆଦିଙ୍କ ପାଇଁ ଗନ୍ଧ ବାରିବା ନିହାତି ଦରକାର । ଏହାଛଡ଼ା ସର୍ବଦା ଜାଜିଜୁଳି ହୋଇ ଅଣ୍ଟ ଭଳି

ରହୁଥିବା କଦାକାର ଜୀବ ଝିଙ୍କ ପାଇଁ ମଧ୍ୟ ଗନ୍ଧ ବାରିବାର ଆବଶ୍ୟକତା ଖୁବ୍ ବେଶି । ଯଦି ଗନ୍ଧ ବାରି ଖାଦ୍ୟ ଉପଯୋଗୀ ପୋକ ଭଳି କୀଟ ସନ୍ଧାନ କରିବାର ଶକ୍ତି ଝିଙ୍କର ନଥାନ୍ତା , ତେବେ ଅନେକ ଦିନରୁ ଝିଙ୍କସବୁ ଖାଇବାକୁ ନପାଇ ମରି ଯାଇ ଥାଆନ୍ତେ । ସେହିଭଳି ଝିଙ୍କ ଯଦି ପ୍ରାୟ ଦଶ ମିଟର ଦୂରରୁ ଗନ୍ଧ ବାରି ତା'ର ଶତ୍ରୁ ଆଗମନର ସନ୍ଧାନ ପାଇ ନଥାନ୍ତା , ତେବେ ମଧ୍ୟ ଅନେକ ଦିନରୁ ଏ ପୃଥିବୀରେ ଆଉ ଝିଙ୍କ ନଥାନ୍ତେ ।

ମହୁମାଛି , ପ୍ରଜାପତି ଓ ଅନ୍ୟ କେତେକ କାଠପୋକ ବହୁଦୂରରୁ ଉଦ୍ଭିଦ ରସ ଏବଂ ଫୁଲରେ ଥିବା ମହୁର ବାସ୍ନା ଜାଣି ପାରନ୍ତି । ମଣିଷ ଓ ଜୀବଜନ୍ତୁ ଶ୍ୱାସକ୍ରିୟା ସମୟରେ ବାହାର କରି ଦେଉଥିବା ଅଙ୍ଗାରକାମ୍ଳ ଗ୍ୟାସ୍‌ର ଗନ୍ଧ ବାରି ମଶାମାନେ ଖୁବ୍ ଦୂରରୁ ରକ୍ତ ପିଇବାକୁ ଉଡ଼ି ଆସନ୍ତି । ଚର୍ମ ମଧ୍ୟ ଦେଇ ଉପରକୁ ବାହାରି ଆସୁଥିବା ଆଜି ପର୍ଯ୍ୟନ୍ତ ବୈଜ୍ଞାନିକମାନଙ୍କୁ ଅଜଣା ଥିବା ରକ୍ତର କେତେକ ଉପାଦାନ ମଶାମାଛିଙ୍କୁ ଦୂରରୁ ଡାକି ଆଣିଥାଏ ।

ଯେଉଁ ଛୋଟ ଛୋଟ କୀଟ ସାରା ଜୀବନ ମାଟିତଳେ ବିତାନ୍ତି , ସେମାନଙ୍କର ଘ୍ରାଣଶକ୍ତି ଏତେ ଉନ୍ନତ ଯେ , ତାହା ଫଳରେ ସେମାନେ ତାଙ୍କ ଆଗରେ ପ୍ରତିବନ୍ଧକ ସୃଷ୍ଟି କରୁଥିବା ଜିନିଷକୁ ନଦେଖି ତା'ର ଆକାର ପ୍ରକାର ଜାଣି ପାରନ୍ତି ।

ହେନ୍‌ରୀ ଫାବର ଅବଶ୍ୟ ଜାଣିଥିଲେ ଯେ , ଜୀବଜନ୍ତୁ , ବିଶେଷତଃ କୀଟ ପତଙ୍ଗମାନଙ୍କର ଜୀବନରେ ଘ୍ରାଣଶକ୍ତିର ଭୂମିକା ଯଥେଷ୍ଟ ବେଶି । ଏ ସମ୍ବନ୍ଧରେ ସେ ନିଜେ ଅନେକ ପରୀକ୍ଷା କରିଥିଲେ ମଧ୍ୟ କୀଟ ପତଙ୍ଗଙ୍କର ଘ୍ରାଣଶକ୍ତିର ସଠିକତା ସେ ନିର୍ଣ୍ଣୟ କରି ପାରି ନଥିଲେ ।

ଅନେକ ଦିନ ପରେ ବୈଜ୍ଞାନିକମାନେ ଏହା ବୁଝିପାରି , ମାଈ ପ୍ରଜାପତି ଛାଡ଼ି ଯାଉଥିବା ତରଳ ପଦାର୍ଥ ଚୋପାକ କ'ଣ ତାହା କିପରି ପୁରୁଷ ପ୍ରଜାପତିମାନଙ୍କୁ ଆକର୍ଷଣ କରେ ତାହା ଜାଣିବାକୁ ଚେଷ୍ଟା କଲେ । ମାତ୍ର ଏହି ତରଳ ପଦାର୍ଥ ବିଷୟରେ ଜାଣିବାକୁ ହେଲେ ପ୍ରଥମେ ତାହା ସଂଗ୍ରହ କରିବାକୁ ପଡ଼ିବ । ତେବେ ଗୋଟିଏ ଗ୍ରାମ୍ ଓଜନର ଏହିପରି ଗନ୍ଧଯୁକ୍ତ ପଦାର୍ଥ ସଂଗ୍ରହ କରିବାକୁ ହେଲେ ପ୍ରଚିଶ ଲକ୍ଷ ଟସରପୋକର ପ୍ରଜାପତି ଦରକାର ହୋଇଥାଏ ।

ଟସରପୋକ ଅପେକ୍ଷା ବେଯୋଡ଼ିଆ ଟସରପୋକ ପାଖରୁ ଅଧିକ ତରଳ ପଦାର୍ଥ ସଂଗ୍ରହ କରାଯାଇ ପାରେ । ଏକ ଗ୍ରାମ୍ ଓଜନର ଗନ୍ଧଯୁକ୍ତ ପଦାର୍ଥ ସଂଗ୍ରହ କରିବାକୁ ୨୫ ଲକ୍ଷ ପ୍ରଜାପତି ଦରକାର ହୋଇଥାଏ ।

ଏବେ ଦେଖିବା ଗୋଟିଏ ପ୍ରଜାପତି କେତେ ପରିମାଣର ଗନ୍ଧଯୁକ୍ତ ପଦାର୍ଥ ଛାଡ଼େ । ଗୋଟିଏ ପ୍ରଜାପତିଠାରୁ ମିଳୁଥିବା ଗନ୍ଧଯୁକ୍ତ ପଦାର୍ଥ ଖୁବ୍ କମ୍ ତଥାପି ବେଯୋଡ଼ିଆ ପୁରୁଷ ଟସରପୋକ ଅନୁକୂଳ ବାୟୁ ପ୍ରବାହରେ ହଜାର ହଜାର ମିଟର ଦୂରରୁ ବା ସଠିକ୍ ଭାବେ କହିବାକୁ ଗଲେ ୩.୮ କିଲୋମିଟର ଦୂରରୁ ଏହାର ଗନ୍ଧ ବାରି ପାରନ୍ତି ।

ପବନରେ ଉଡ଼ି ଆସୁଥିବା ଅନ୍ୟ କୌଣସି ବାସ୍ନା , ତାଙ୍କ ପାଇଁ ଏଥିରେ ପ୍ରତିବନ୍ଧକ ସୃଷ୍ଟିକରି ପାରେ ନାହିଁ ।

ଥରେ ଘର ଭିତରେ ଥିବା ଗୋଟିଏ ଜାଲିରେ ମୟୂର ଆଖିଆ ବଡ଼ ନିଶାଚର ପ୍ରଜାପତି ଜନ୍ମ ହେଲା । ସଙ୍ଗେ ସଙ୍ଗେ ସେଠାକୁ ପୁରୁଷ ପ୍ରଜାପତି ଉଡ଼ି ଆସିଲେ । ଝରକା ବାଟ ଦେଇ ଘର ଭିତରକୁ ଆସି ସେମାନେ ଜାଲି ଘରିପଟେ , ଟେବୁଲ ଉପରେ ଓ ଲ୍ୟାମ୍ପ ଉପରେ ବସିବାକୁ ଲାଗିଲେ । ଅଳ୍ପ ସମୟ ପରେ କୋଠରୀ ସାରା ବଡ଼ ବଡ଼ ପ୍ରଜାପତିଗୁଡ଼ାକ ଭର୍ତ୍ତି ହୋଇଗଲେ । ଅବସ୍ଥା ଏପରି ହେଲା ଯେ , ଝରକା



ଝିଙ୍କ

ବନ୍ଦ କରି ଦିଆଗଲେ ମଧ୍ୟ ପ୍ରଜାପତି କୋଠରୀ ଭିତରକୁ ଆସିବାରେ ଲାଗିଥାନ୍ତି । ଦେଖାଗଲା, ପ୍ରଜାପତିମାନେ ଚିମ୍ନି ମଧ୍ୟଦେଇ କୋଠରୀକୁ ପ୍ରବେଶ କରୁଛନ୍ତି । ଶେଷରେ ଦେଖାଗଲା, ଘର ଭିତରେ ୧୨୫ଟି ପ୍ରଜାପତି ବସି ରହିଛନ୍ତି । ମୟୂର ଆଖିଆ ବଡ଼ ନିଶାଚର ପ୍ରଜାପତି ଖୁବ୍ କମ୍ ଦେଖିବାକୁ ମିଳନ୍ତି । କିନ୍ତୁ ଏକାଠି ୧୨୫ଟି ପ୍ରଜାପତି ଆଁସିଲେ କୁଆଡ଼ୁ ? ପରେ ଜଣାଗଲା ଯେ, ନବଜାତ ମାଈ ପ୍ରଜାପତିଟିର ଗନ୍ଧ ଜାଣିପାରି ଦୀର୍ଘ ୮ କିଲୋମିଟର ଦୂରରୁ ଏହି ମୟୂର ଆଖିଆ ବଡ଼ ନିଶାଚର ପୁରୁଷ ପ୍ରଜାପତିଗୁଡ଼ିକ ଉଡ଼ି ଆସିଥିଲେ ।

ଅଳ୍ପଦିନ ପୂର୍ବେ ବୈଜ୍ଞାନିକମାନେ ଗୋଟିଏ ପରୀକ୍ଷା କରିଥିଲେ । ତୀକ୍ଷ୍ଣ ଆଖିଆ ପୁରୁଷ ପ୍ରଜାପତିମାନଙ୍କ ଦେହରେ ସଂକେତ ଲଗାଇ ଚଳନ୍ତା ରେଳଗାଡ଼ିର ଝରକାରୁ ବାହାରକୁ ଛାଡ଼ି ଦିଆଗଲା । ୪.୧ କିଲୋମିଟର ଦୂରରୁ ମଶାରି ଭିତରେ ଥିବା ସ୍ତ୍ରୀ ପ୍ରଜାପତି ପାଖକୁ ଛଡ଼ା ଯାଇଥିବା ପଜାପତି ମଧ୍ୟରୁ ପ୍ରାୟ ଅଧେ ଆସି ପହଞ୍ଚିଗଲେ । ୧୧ କିଲୋମିଟର ଦୂରରୁ ସେମାନଙ୍କୁ ଛାଡ଼ି ଦେଖାଗଲା ଯେ, ଏକ ଚତୁର୍ଥାଂଶରୁ ଅଧିକ ସଂଖ୍ୟକ ପୁରୁଷ ପ୍ରଜାପତି ସ୍ତ୍ରୀ ପ୍ରଜାପତିଟି ପାଖକୁ ଉଡ଼ି ଆସିଥିଲେ ।









ପୁରୁଷ ପ୍ରଜାପତିମାନେ ସ୍ତ୍ରୀ ପ୍ରଜାପତି ନିକଟକୁ ସବୁବେଳେ ଆସନ୍ତି ନାହିଁ । ନିର୍ଦ୍ଦିଷ୍ଟ ସମୟରେ, ଯେତେବେଳେ ସ୍ତ୍ରୀ ପ୍ରଜାପତି ଦେହରୁ ତରଳ ଗନ୍ଧମୟ ପଦାର୍ଥ ବାହାରେ, ପୁରୁଷ ପ୍ରଜାପତି କେବଳ ସେହି ସମୟରେ ଆସନ୍ତି । ତାହା ସେମାନଙ୍କୁ ବାଟ କଢ଼ାଇ ଆଣେ । ସତେ ଯେପରି ଏହି ତରଳ ପଦାର୍ଥର ବାସ୍ନା ଉଡ଼ି ଆସିବାକୁ ପୁରୁଷ ପ୍ରଜାପତିମାନଙ୍କୁ ନିର୍ଦ୍ଦେଶ ଦେଉଛି – ବିନା ବାକ୍ୟରେ, ବିନା ଶବ୍ଦରେ ଏହି ନିର୍ଦ୍ଦେଶ ମିଳିଛି । ଏହା ହେଉଛି ନିର୍ଦ୍ଦିଷ୍ଟ ଏକ ବାସ୍ନାର ନିର୍ଦ୍ଦେଶ, ପ୍ରଜାପତିମାନଙ୍କ ମତରେ ତାହାକୁ କାର୍ଯ୍ୟକାରୀ କରିବାକୁ ହେବ ।

ଏବେ ବୈଜ୍ଞାନିକମାନେ ଜାଣି ପାରିଛନ୍ତି ଯେ, ବାସ୍ନା ବାରି କୀଟ ପତଙ୍ଗମାନେ କେବଳ ଯେ ନିର୍ଦ୍ଦେଶ ଦିଅନ୍ତି ତା ନୁହେଁ, ଏହା ଦ୍ୱାରା ସେମାନେ ପରସ୍ପରକୁ ଖବର ଦିଅନ୍ତି, ବିପଦ ଆପଦ ମୁଖରୁ ସତର୍କ କରାଇ ଦିଅନ୍ତି, ଏପରିକି ସାକ୍ଷାତ୍‌ର ସ୍ଥାନ ମଧ୍ୟ ସ୍ଥିର କରି ପାରନ୍ତି । ସଂକ୍ଷେପରେ କହିଲେ ବାସ୍ନା ବାରି ସେମାନେ ପରସ୍ପର ସହିତ କଥା ହୁଅନ୍ତି । ଏହି କଥାବାର୍ତ୍ତାକୁ ବୈଜ୍ଞାନିକମାନେ କହନ୍ତି "ବାସ୍ନାର ଭାଷା" ।

# ଭଅଁର ଓ ଭାଲୁଙ୍କ ବିଜ୍ଞାପନ



ଭଅଁର

କେତେକ ପ୍ରଜାପତି ସଂକେତ ଦିଅନ୍ତି ଓ ନିର୍ଦ୍ଦେଶ ପଠାନ୍ତି, ଅନ୍ୟ କେତେକ ପ୍ରଜାପତି ଆଣ୍ଟିନା ଭଳି ନିଜର ବଡ଼ ବଡ଼ ନିଶ ସାହାଯ୍ୟରେ ଏହି ସଂକେତ ଓ ନିର୍ଦ୍ଦେଶ ସଂଗ୍ରହ କରି ତାହାକୁ କାର୍ଯ୍ୟକାରୀ କରନ୍ତି, ଯେତେ ଯେପରି ଟେଲିଗ୍ରାଫ୍‌ରେ ସର୍ବଦା ଖବର ଦିଆନିଆ ଚାଲିଛି ।

କିନ୍ତୁ ଭଅଁର ଟେଲିଗ୍ରାମ୍ ପଠାଏ ନାହିଁ, ସେ ଚିଠି ଲେଖେ । ପିଲାମାନେ, ତୁମେ ଯଦି ଏକଥା ବିଶ୍ୱାସ ନକର, ତେବେ ବସନ୍ତ ଋତୁରେ କେବେ ଭଅଁର ଉଡ଼ିଲେ ତାକୁ ଧ୍ୟାନ ଦେଇ ଲକ୍ଷ୍ୟ କଲେ ସବୁ ଜାଣି ପାରିବ ।

ଏବେ ଗୋଟିଏ ଭଅଁର କଥା କହିବା । ମୋଟା, ଲୁମଲୁମିଆ, କଦାକାର ଭଅଁରଟାଏ ଧୀର ଗତିରେ ଗଛ ଆଡ଼କୁ ଉଡ଼ିଲା । ଭଅଁରଟିର ଆଜି କ'ଣ ହୋଇଛି ଜଣା ନାହିଁ । ସେ ଗଛଟିର ଡାଳେଡାଳେ ବିଭିନ୍ନ ସ୍ଥାନରେ ବସୁଛି, ପରେ ପାଖରେ ଥିବା ଅନ୍ୟ ଗୋଟିଏ ଗଛକୁ ଯାଇ ବଡ଼ ଡାଳର ଛେଲି ଉପର ଦେଇ ଗଳି ଯାଉଛି, ଡାଳକୁ ଛୁଉଁଛି କିମ୍ବା ପତ୍ର ଏବଂ ଡାଳକୁ କାମୁଡ଼ୁଛି । ତା'ପରେ ସେ ଅନ୍ୟ ଏକ ଗଛକୁ ଉଡ଼ିଯାଉଛି । ଗୋଟିକ ପରେ ଗୋଟିଏ ଗଛକୁ ଉଡ଼ି ବୁଲୁଛି । ଏହି ଭଳି ପାଞ୍ଚ-ଛଅଟି ଗଛକୁ ଉଡ଼ି ସାରିଲଣି । କିନ୍ତୁ ଭଅଁରଟି ଗୋଟିଏ ଗଛରୁ ଅନ୍ୟ ଗଛକୁ ସିଧାସଳଖ ଉଡ଼ୁ ନାହିଁ, ସେ ଗଛ ଚାରିପଟେ ଚକର ମାରୁଛି । ଅନେକ ସମୟ ଧରି ଘୂରି ଘୂରି ଉଡ଼ୁଛି । ଶେଷରେ ପୁଣି ଫେରି ଆସୁଛି ପ୍ରଥମେ ବିସିଥିବା ଗଛଟି ପାଖକୁ । ସେଠାରୁ ଉଡ଼ିବା କାର୍ଯ୍ୟ ପୁନର୍ବାର ଆରମ୍ଭ କରୁଛି । ଭୋକ ଲଗିଲେ କିଛି ସମୟ ପାଇଁ ଅନ୍ୟତ୍ର ଉଡ଼ିଯାଇ ପୁଣି ଭଅଁରଟି ଆରମ୍ଭ କରୁଛି ନିଜର ଆଶ୍ଚର୍ଯ୍ୟଜନକ ଉଡ଼ୟନ କାର୍ଯ୍ୟ ।

ଏହି ଭଳି ଉଡ଼ି ବୁଲୁଥିବା ଭଅଁରକୁ ଦେଖି ଅନେକ ଦିନ ପର୍ଯ୍ୟନ୍ତ ଲୋକମାନେ ଭଅଁରଟିର କ'ଣ ହୋଇଛି କିଛି ବୁଝିପାରିଲେ ନାହିଁ । ଅଳ୍ପ କେତେ ବର୍ଷ ପୂର୍ବେ ବୈଜ୍ଞାନିକମାନେ, ଏହି କୀଟ ସଂପର୍କରେ ସେ ରହସ୍ୟକୁ ଲୋକ ଲୋଚନକୁ ଆଣିଥିଲେ । ଜଣା ପଡ଼ିଲା, ଭଅଁର ଭଅଁରୀ ପାଖକୁ "ଚିଠି ଲେଖିଛି", ଯଦିଓ ଭଅଁର କାଗଜ କଲମ ଧରି ଚିଠି ଲେଖେ ନାହିଁ । ତା'ର କଲମ କିମ୍ବା ପେନ୍‌ସିଲ୍ ନାହିଁ, ମାତ୍ର ତା'ର ଦାନ୍ତ ମାଢ଼ି ଅଛି । ସେ ମାଢ଼ି ମୂଳରେ ଏକ ଗ୍ରନ୍ଥି ରହିଛି । ଭଅଁର ପାଇଁ ତାହା କାଳିର କାମ କରେ । ଅବଶ୍ୟ ଏହି ମାଢ଼ିରୁ କୌଣସି ରଙ୍ଗ ବାହାରେ ନାହିଁ । ତାହା ଦ୍ୱାରା ଏକ ଗନ୍ଧଯୁକ୍ତ ପଦାର୍ଥ ସୃଷ୍ଟି ହୁଏ, ଯାହାକି କାଳିର କାର୍ଯ୍ୟ କରିଥାଏ । ଠିକ୍ ସେହିପରି ଯେପରି କି ମାଢ଼ି କଲମର କାର୍ଯ୍ୟ କରେ । ଗଛର ବକଳ, ପତ୍ର କିମ୍ବା ଡାଳରେ ବସି ଭ୍ରମର ସୁଗନ୍ଧ ପଦାର୍ଥରେ ଚିଠି ଲେଖି ଛାଡ଼ି ଦେଇଥାଏ । ଗୋଟିଏ ଗଛ କିମ୍ବା ଗୋଟିଏ ବୁଦା ଭଅଁର ପାଇଁ ଖୁବ୍ କମ୍ ଜାଗା ହୋଇଥିବାରୁ ଭଅଁର ଗଛରୁ ଗଛକୁ ଉଡ଼ିବୁଲେ ଓ ପ୍ରତ୍ୟେକ ଗଛରେ ଏକା ଭଳି ସଂକେତ ଛାଡ଼ି ଯାଏ । ବେଳେବେଳେ ତିନି ଚାରିଟି ଗଛ, ଏପରିକି ଅଧିକ ଗଛରେ ମଧ୍ୟ ସଂକେତ ରହିଯାଏ । ପୁନର୍ବାର ଗଛଗୁଡ଼ିକ ପାଖକୁ ଯାଇ ଭ୍ରମର ପୁଣି ଘୂରିବୁଲେ । ଦିନେ ଦିନେ ଭଅଁର ସକାଳୁ ସଂଧ୍ୟା ପର୍ଯ୍ୟନ୍ତ ଉଡ଼ୁଥାଏ । ସମୟରେ ସେ ଦୀର୍ଘ ସମୟ ଧରି ଉଡ଼ି ବୁଲେ ନାହିଁ । କୌଣସି ଗୋଟିଏ ଗଛରୁ ସେ ତା ନିଜ ଭଳି ଗୋଟିଏ ମୋଟା ଭଅଁରୀ ସନ୍ଧାନ ପାଇ ପାରିଥାଏ । ଭଅଁରୀ

କେତେବେଳେ ଆଗରୁ ଆସି ଭଅଁର ଛାଡ଼ି ଯାଇଥିବା ଚିଠିଟି ପଢ଼ି ଯାଇଛି ଏବଂ ଅପେକ୍ଷା କରିଛି, କେତେବେଳେ ପୁଣି ରୁମରୁମିଆ ସୁନ୍ଦର ଭଅଁରଟି ସେହି ଗଛ ପାଖକୁ ଉଡ଼ି ଆସିବ ।

ଏହାର ଅର୍ଥ ହେଲା, ଯାହା ଉଦ୍ଦେଶ୍ୟରେ ଭ୍ରମର ଚିଠି ଲେଖିଥିଲା, ସେ ଚିଠି ତାକୁ ମିଳିଛି । ଚିଠିର ଠିକଣା ଗୋଳମାଳ ହୋଇଯିବା ଭୟରେ ଏବଂ ନିର୍ଦ୍ଦିଷ୍ଟ ଭଅଁରୀ ପାଇବାର ଗ୍ୟାରେଣ୍ଟି ଦେବାକୁ ଯାଇ ବିଭିନ୍ନ ଜାତିର ଭଅଁର ଉଡ଼ିଲା ବେଳେ ଭିନ୍ନଭିନ୍ନ ପଥ ଅନୁସରଣ କରି ଥାଆନ୍ତି । କେହି ଯଦି ଗଛର ଗଣ୍ଡିରେ ଚିଠି ଛାଡ଼ି ଯାଏ ତ ଆଉ କେହି ଭୂମି ଉପରେ କିମ୍ବା ବୁଦା ଉହାଡ଼ରେ ବା ଘାସ ଗୋଛା ଉପରେ ଚିଠି ଲେଖିଥାଏ ।

ଭଅଁରମାନେ ମଧୁର ଭାଷାରେ ଚିଠି ଲେଖିଥାଆନ୍ତି । ଅନେକ ଜନ୍ତୁ ଅଛନ୍ତି, ଯେଉଁମାନେ କି ନିଜର ଅଦେଖା ଶତ୍ରୁ ପାଇଁ ଭୟଙ୍କର ଧମକ ଦେଇ ଚିଠି ଲେଖନ୍ତି ।

ଥରେ ଜଣେ ଅଭିଜ୍ଞ ଶିକାରୀଙ୍କ ସହିତ ତାଇଗାର ଘନ ଅରଣ୍ୟରେ ମୁଁ ବୁଲୁଥିଲି । ଶିକାରୀ ଜଣକ ହଠାତ୍ ଗୋଟିଏ ଗଛ ପାଖରେ ଠିଆହୋଇ ଯାଇ ମୋତେ ଗଛ ଆଡ଼କୁ ଦେଖାଇ ଇଙ୍ଗିତ କଲେ । ଗଛର ଛେଲି ଉପରେ ରାମ୍ପୁଡ଼ା ଦାଗ ଭଲ ଭାବରେ ବାରି ହେଉଥାଏ । ଖୁବ୍ ଉଚ୍ଚ ପର୍ଯ୍ୟନ୍ତ, ମୁଣ୍ଡରୁ ବେଶି ଉଚ୍ଚ ପର୍ଯ୍ୟନ୍ତ ଗଛର ଛେଲିକୁ କିଏ ରାମ୍ପି ପକାଇଥାଏ ।

ଶିକାରୀ ମୋତେ କହିଲେ, "ଜଙ୍ଗଲର ମାଲିକ ଏଠି ଚିଠି ଛାଡ଼ି ଯାଇଛି । ଆପଣ ଯଦି ଚାହାନ୍ତି, ମୁଁ ତାହା ପଢ଼ି ଶୁଣାଇବି ।"

"ହଁ, ପଢ଼ନ୍ତୁ", ମୁଁ କହିଲି ।

ସେହି ରମ୍ପା ଦାଗ ଆଡ଼କୁ ଚାହିଁ ପଢ଼ିଲା ଭଳି ମୁହଁକରି ଶିକାରୀ କହିଲେ, "ଏ ଜାଗା ଖାଲି ନାହିଁ । ଅନ୍ୟସବୁ ଭାଲୁଙ୍କୁ ଏଠାକୁ ଆସିବାକୁ ମନା । ଯଦି କେହି ଆସେ ତେବେ ସେ ପାନେ ପାଇବ, କାରଣ ରମ୍ପାଦାଗ ଛାଡ଼ି ଯାଇଥିବା ଭାଲୁଟି ଖୁବ୍ ବଡ଼ ।"

ରମ୍ପାଦାଗ ଆଡ଼କୁ ଲକ୍ଷ୍ୟକରି ମୁଁ ମନେମନେ ଭାବିଲି, ସତରେ ଭାଲୁଟା ଖୁବ୍ ବଡ଼ ହୋଇଥିବ ।

"ବଡ଼ ଭାଲୁଟାଏ ସତ, ମାତ୍ର ସେତେ ବଡ଼ ନୁହେଁ ଯେ ତାକୁ ଆଉ ସବୁ ଭାଲୁ ଡରିବେ । ସବୁ ବଳ ଖଟାଇ ସେ ଉପରକୁ ଉପରକୁ ଡେଇଁ ଗଛ ଛେଲିକୁ ରାମ୍ପି ପକାଇଛି ଅନ୍ୟ ଭାଲୁମାନଙ୍କୁ ଭୟଭୀତ କରିବାକୁ । ବଡ଼ ଚାଲାକ୍ ଅଛି ଭାଲୁଟା । ଭାଲୁମାନେ ପରସ୍ପରକୁ ସବୁବେଳେ ଠକନ୍ତି ... ।"

ଭାଲୁର ଏହି ଚାଲାକ୍ କାମ ମୋତେ ଆନନ୍ଦ ଦେଲା । ମୁଁ ମନେ ମନେ ଭାବିଲି,



ଭାଲୁ


ଲେମୁର

"ଅନ୍ୟ ଭାଲୁମାନେ କିପରି ଜାଣନ୍ତି ଯେ, ଗଛ ଉପରେ ରମ୍ପାଦାଗକୁ ଗୋଟିଏ ଭାଲୁ ଛାଡ଼ି ଯାଇଛି ? ଗଛ ଛେଲି ଉପରେ କ'ଣ ଅନ୍ୟ କେହି ଜନ୍ତୁ ଏପରି ରମ୍ପାଦାଗ ଛାଡ଼ିଯାଇ ପାରିବ ନାହିଁ ?" ମୁଁ ଯେତେବେଳେ ମୋ ମନର ସନ୍ଦେହ କଥା ଶିକାରୀଙ୍କୁ କହିଲି, ସେ ଉଲ୍ଲାସ ମନରେ ଟିକିଏ ହସି ଦେଇ, ସେଇ ଗଛଟାର ଗଣ୍ଡି ଆଡ଼କୁ ଅନାଇବାକୁ ମୋତେ ଇଙ୍ଗିତ ଦେଲେ । ମନଧ୍ୟାନ ଦେଇ ଲକ୍ଷ୍ୟ କରିବାରୁ ମୁଁ ଦେଖି ପାରିଲି, ରମ୍ପାଦାଗ ଉପରେ ଛୋଟ ଛୋଟ ଲୋମ ଲଗି ରହିଛି । ଶିକାରୀ ମୋତେ ବୁଝାଇ ଦେଲେ । ଭାଲୁ କେବଳ ନିଜ ନଖର ରମ୍ପାଦାଗ ରଖି ଯାଏ ନା, ସେ ଏଥିସହ ନିଜ ଦେହର ଗନ୍ଧ ଛାଡ଼ି ଯାଇଥାଏ । ପରବର୍ତ୍ତୀ ଭାଲୁଟି ସେ ସ୍ଥାନକୁ ଆସିଲେ, ପୂର୍ବବର୍ତ୍ତୀ ଭାଲୁ ଛାଡ଼ି ଯାଇଥିବା ଗନ୍ଧ ନିଶ୍ଚୟ ଜାଣି ପାରିବ । ଏହି ବାସ୍ନା ବାରି ସେ ବୁଝି ପାରେ ଯେ, ଏଠି ସ୍ଥାନ ଖାଲି ନାହିଁ । ଏହାଛଡ଼ା ରମ୍ପାଦାଗରୁ ସ୍ପଷ୍ଟ ଜଣାପଡ଼ିବ, ଭାଲୁଟି ଛୋଟ ନା ବଡ଼ ଅଥବା ଅନ୍ୟ କଥାରେ କହିଲେ ଜାଗା ଅଧିକାର କରି ନେଇଥିବା ଭାଲୁଟିର ଆକାର କେତେ ବଡ଼ । ଗଛର ଗଣ୍ଡି ଉପରେ ନିଜର ପିଠି କିମ୍ବା ମୁଣ୍ଡ ଘଷି ଭାଲୁ ନିଜର ଗନ୍ଧ ଛାଡ଼ି ଯାଇଥାଏ ।

ଏହିପରି ଚିଠି ବା ଘୋଷଣାନାମା ଅନେକ ଜନ୍ତୁ ଛାଡ଼ି ଯାଇଥାଆନ୍ତି । ଉଦାହରଣ ସ୍ୱରୂପ, ଭାଲୁଙ୍କ ଭଳି କେତେକ ଜନ୍ତୁ ପଥର କିମ୍ବା ଗଛ ଦେହରେ ନିଜର ପିଠିକୁ ଘଷି ଛାଡ଼ି ଯାଇ ଥାଆନ୍ତି । କେତେକ କୀଟ ପତଙ୍ଗ ନିଜ ନିଜର ଗ୍ରନ୍ଥି ସାହାଯ୍ୟରେ ଏହି ଚିହ୍ନ ରଖି ଯାଆନ୍ତି ।

ସବୁଠୁ କୌତୂହଳପୂର୍ଣ୍ଣ କଥା ଯେ, ଜୀବଜନ୍ତୁଙ୍କ ଦେହରେ ଗନ୍ଧ ପ୍ରସ୍ତୁତକାରୀ ଗ୍ରନ୍ଥି ନିରୂପଣ କରିବା କଷ୍ଟକର । ଭଅଁରମାନଙ୍କର ଏହି ଗ୍ରନ୍ଥିଟି ମାଢ଼ି ମୂଳରେ ତ କେତେ ଜାତୀୟ ହରିଣଙ୍କର ଗନ୍ଧ ଉଦ୍ରେକ କରୁଥିବା ଗ୍ରନ୍ଥି ଆଖି କୋଣରେ ଥାଏ । ନିଜର ଅଧିକୃତ ଜାଗାର ଶେଷ ଆଡ଼କୁ ଆସି ଏହି ଭଳି ହରିଣ ଆଖି କୋଣରେ ଥିବା ଗ୍ରନ୍ଥିକୁ ପତ୍ର ଦେହରେ ଛୁଇଁ ନିଜର ସୁଗନ୍ଧ ଚିଠି ରଖି ଯାଇଥାଏ । ଅନ୍ୟ କେତେକ ଜନ୍ତୁ ଅଛନ୍ତି, ଯେଉଁମାନଙ୍କ ଦେହରେ ଗନ୍ଧ ଉଦ୍ରେକ କରୁଥିବା ଗ୍ରନ୍ଥି ଗୋଡ଼ରେ କିମ୍ବା ଦେହ କଡ଼ରେ, ଓଠ ଉପରେ କିମ୍ବା ପିଠି ଉପରେ ଥାଏ । ଅନ୍ୟ କଥାରେ କହିଲେ ଜୀବଜନ୍ତୁ ନିଜ ଦେହର ଯେଉଁ ଅଂଶକୁ ଗଛ କିମ୍ବା ଘାସ ଉପରେ


ଆମେରିକାନ୍
ଓଧ "ସ୍କାଙ୍କ୍"



ବାରମ୍ବାର ଘଷନ୍ତି, ସେହି ସ୍ଥାନରୁ ତାଙ୍କ ଦେହରୁ ଗନ୍ଧ ବାହାରେ ।

ପିଲମାନେ ! ତୁମେ ଲେମୁର ଜନ୍ତୁର ନାମ ଶୁଣିଥିବ । ଏହି ଜନ୍ତୁର ଗନ୍ଧ ବାହାରେ ଗୋଡ଼ ମୂଳରୁ ବା କାଖ ତଳୁ । ତେଣୁ କୌଣସି ଜିନିଷକୁ ନଛୁଇଁ ନିଜ ଦେହର ଗନ୍ଧ ଛାଡ଼ିଯିବା ଲେମୁର ପାଇଁ ଖୁବ୍ କଷ୍ଟସାଧ୍ୟ । କିନ୍ତୁ ଲେମୁର ଗୋଟିଏ ଉପାୟ ବାହାର କରିଛି । ଉପାୟଟି ହେଲ – ଗୋଡ଼ କୋଣକୁ ନିଜର ଲମ୍ବା ଲଙ୍ଗୁଡ଼ ସାହାଯ୍ୟରେ ଭଲଭାବେ ଘଷିଦେଇ ପରେ ଗଛ ବା ପଥର ଉପରେ ନିଜର ଲଙ୍ଗୁଡ଼କୁ ଝାଡ଼ିଦିଏ ।

ଅନେକ ଜୀବଜନ୍ତୁ ଚିଠି ଲେଖି ଭାବ ବିନିମୟ କରନ୍ତି । ପ୍ରାୟ ଅନେକ ସମୟରେ ଏହି ଚିଠି ସୁମଧୁର କିମ୍ବା ଭୟଙ୍କର ଭାଷାରେ ଲେଖାଯାଇଥାଏ, "ଏଇଟା ମୋ ଜାଗା, ଏଠୁ ଗ୍ଲିଯାଆ, ନଚେତ କାମୁଡ଼ି ଝିଣି ଦେବି" – ଏହା ହେଲ ଭାଷାର ଶୈଳୀ । ଆମେରିକାନ୍ ଓଧ "ସ୍କାଙ୍କ୍" କେବେହେଲେ କାହାରିକୁ କାମୁଡ଼ିବା ବା ନକାମୁଡ଼ିବା କଥା କୁହେ ନାହିଁ । ତା'ର ଭାଷା ସ୍ପଷ୍ଟ ଓ ସୁନ୍ଦର, ମାତ୍ର ତା' ଉପରେ ଆକ୍ରମଣ କରୁଥିବା ଜନ୍ତୁ ଲଗି ଏହି ଭାଷା ଖୁବ୍ କଠୋର ।

ଏହି ଜନ୍ତୁଟିର ବଡ଼ ବଡ଼ ନଖ ନାହିଁ, କିମ୍ବା ଶକ୍ତ ମାଢ଼ି ନାହିଁ । ଏହା ସତ୍ତ୍ୱେ ମଧ୍ୟ ଲେକେ "ସ୍କାଙ୍କ୍"ର ପାଖକୁ ଯିବାକୁ ସାହସ କରନ୍ତି ନାହିଁ । କାରଣ ହେଲ, ବିପଦ ପଡ଼ିଲେ, ହଠାତ୍ ଏହି ଜନ୍ତୁଟି ନିଜ ମୁହଁରୁ ଏପରି ଏକ ତରଳ ଗନ୍ଧମୟ ପଦାର୍ଥ ଛାଡ଼େ ଯେ, ତାହା ମଣିଷ ଦେହରେ ଲଗିଲେ ସହଜରେ ଦୂର ହୁଏ ନାହିଁ । ଭଲଭାବେ ଧୋଇଲେ ମଧ୍ୟ ଗନ୍ଧ ସେହିଭଳି ଲଗି ରହିଥାଏ । ଜୀବଜନ୍ତୁ ଏହି ଅଦ୍ଭୁତ ଜୀବର ଚରିତ୍ର ଜାଣି ତା ପାଖକୁ ଯିବାକୁ ସାହସ କରନ୍ତି ନାହିଁ । ତାଠାରୁ ଦୂରରେ ରହିବାକୁ ସର୍ବଦା ଚେଷ୍ଟା କରନ୍ତି ।

ନିଜର ଅଧିକୃତ ସ୍ଥାନରେ "ସ୍କାଙ୍କ୍" ଏହିଭଳି ଚିଠି ଛାଡ଼ିଯାଏ, ଯାହା ଅନ୍ୟମାନଙ୍କୁ ସତର୍କବାଣୀ ଦେଇ କହେ, "ଏଠୁ ଗ୍ଲିଯାଅ, ନଚେତ୍ ପରିସ୍ଥିତି ଖରାପ ହେବ – ମୁଁ ତୁମର ଦେହକୁ ତରଳ ଦୁର୍ଗନ୍ଧ ପଦାର୍ଥ ପକାଇ ଦେବି" ।

ଏହିପରିଭାବେ ଜୀବଜନ୍ତୁ ପରସ୍ପରକୁ ଚିଠି ଲେଖନ୍ତି ଏବଂ ଭଲଭାବେ ପରସ୍ପରକୁ ବୁଝି ପାରନ୍ତି ।



ମହୁମାଛିମାନେ

## "ମୋ ପଛରେ ଆସ ! ବ୍ୟସ୍ତ ହୁଅ ନାହିଁ !"

ମଣିଷ ମହୁମାଛିଙ୍କ ସହିତ ବହୁ କାଳରୁ ପରିଚିତ । ବୋଧହୁଏ, ଆଦିମ ଯୁଗର ମଣିଷ ଗଛ କୋରଡ଼ରୁ ଜଙ୍ଗଲୀ ମହୁଫେଣା ଭାଙ୍ଗି ମହୁ ଖାଇ ଆନନ୍ଦିତ ହେଉଥିଲ । କେଇ ହଜାର ବର୍ଷ ପୂର୍ବେ ମଣିଷ ମହୁମାଛିଙ୍କୁ ଘରେ ପୋଷି ମହୁ ସଂଗ୍ରହ କରିବା କାର୍ଯ୍ୟ ଆରମ୍ଭ କରିଥିଲ । ଏହା ଫଳରେ ମହୁମାଛି ପରି ଛୋଟ ଜୀବକୁ ମଣିଷ ପ୍ରାୟ ଗୃହପାଳିତ କରି ପାରିଥିଲ । ରୁଷିଆରେ ମଧୁ ସଂଗ୍ରହକାରୀଙ୍କୁ "ବର୍ତ୍ତନିକ୍" କୁହାଯାଉଥିଲ । ସେମାନେ ନିଜର ମହୁଫେଣା ତିଆରି କରୁଥିଲେ ଏବଂ ବୁଲିବୁଲି ଫେଣା ଭାଙ୍ଗି ଜଙ୍ଗଲୀ ମହୁ ସଂଗ୍ରହ କରୁଥିଲେ । ଅଭିଜ୍ଞ ମହୁ ସଂଗ୍ରହକାରୀମାନେ କେଉଁଠି ମହୁ ଫେଣା ମିଳିବ, କେଉଁ ପ୍ରକାରର ମହୁମାଛି ପଲଙ୍କୁ ଘରକୁ ଆଣିଲେ ଭଲ ହେବ, କେଉଁ ସମୟରେ ମହୁ ମିଳିପାରିବ ଏବଂ ମହୁମାଛିମାନଙ୍କୁ କିପରି ଭୋକ ଓ ଥଣ୍ଡା ଦାଉରୁ ରକ୍ଷା କରିବାକୁ ହେବ, ସେ ସବୁ ଟିକିନିଖି ଭାବରେ ଜାଣିଥିଲେ । କିନ୍ତୁ ମହୁମାଛି କିପରି ମହୁ ସଂଗ୍ରହ କରେ ତାହା କେହି ଚିନ୍ତା କରି ନଥିଲେ । ସେମାନେ କେବଳ ଜାଣିଥିଲେ : ପ୍ରକୃତରେ ଫୁଲରୁ ଫୁଲକୁ ଉଡ଼ି ଉଡ଼ି ମହୁମାଛି ପୁଷ୍ପମହୁ ସଂଗ୍ରହ କରେ ଏବଂ ଏହାଫଳରେ ମହୁ ମିଳେ ।

ଏକଥା ଅବଶ୍ୟ ସତ । କିନ୍ତୁ ମନରେ ଅନେକ ପ୍ରଶ୍ନ ଉଙ୍କି ମାରେ । ଉଦାହରଣ ସ୍ୱରୂପ – ଏକ କିଲୋଗ୍ରାମ୍ ମହୁ ସଂଗ୍ରହ କରିବାକୁ ମହୁମାଛିଙ୍କୁ କେତେ ପରିଶ୍ରମ କରିବାକୁ ପଡ଼େ ? କଥାରେ ଅଛି ମଣିଷ ମହୁମାଛି ଭଳି ପରିଶ୍ରମୀ । ବହୁତ କମ୍ ଲୋକ ଜାଣନ୍ତି ଯେ, ମହୁମାଛିକୁ ମହୁ ସଂଗ୍ରହ କରିବା ପାଇଁ କେତେ ପରିଶ୍ରମ କରିବାକୁ ପଡ଼େ । ଏକ କିଲୋଗ୍ରାମ୍ ମହୁ ସଂଗ୍ରହ କରିବାକୁ ମହୁମାଛିକୁ ଏକ କୋଟି ନବେ ଲକ୍ଷ ଫୁଲରୁ ମହୁ ସଂଗ୍ରହ କରିବାକୁ ପଡ଼େ ! ଅବଶ୍ୟ ଗୋଟିଏ ମହୁମାଛି ପକ୍ଷରେ ଏତେ ଫୁଲକୁ ଉଡ଼ିବା ସମ୍ଭବପର ନୁହେଁ : ବହୁତ ମହୁମାଛି ମିଳିତ ଭାବେ ଏକ କିଲୋ ମହୁ ସଂଗ୍ରହ କରନ୍ତି । ମାତ୍ର ଗୋଟିଏ ମହୁମାଛିର କାମ କିଛି କମ୍ ନୁହେଁ : ଦିନକ ମଧ୍ୟରେ ଶ୍ରମିକ ମହୁମାଛିଟି ହାରାହାରି ସାତ ହଜାର ଫୁଲ ଉପରେ ଉଡ଼ି ବସିଥାଏ !

ପୁଣି କେଉଁ ଫୁଲ ଉପରେ ବସି ମଧୁ ସଂଗ୍ରହ କରିହେବ, ସେପରି ଫୁଲ ଖୋଜିବା ଦରକାର !

ସୁଖର କଥା ଯେ, ମହୁମାଛିମାନେ କେଉଁଠି କେଉଁ ଫୁଲରେ କେତେ କି ପ୍ରକାର ମହୁ ଅଛି, ସେ ଖବର ପରସ୍ପରକୁ ଜଣାଇ ଦେଇ ପାରିଥାଆନ୍ତି ।

ମହୁମାଛି ବିଭିନ୍ନ ଉପାୟରେ କଥାବାର୍ତ୍ତା କରିଥାନ୍ତି । ସେମାନେ ଗନ୍ଧ ବାରି ଭାଷା ବୁଝିପାରନ୍ତି ।

ଗୁଇନ୍ଦା ସ୍ତ୍ରୀ ମହୁମାଛି ମହୁ ସଂଗ୍ରହ କରି ନିଜର ଫେଣାକୁ ଫେରିଆସିଲ ବେଳେ ତା ସାଙ୍ଗରେ ଫୁଲର ଗନ୍ଧ ନେଇ ଆସିଥାଏ । ଏହା କେବଳ ଫୁଲର ଗନ୍ଧ ନୁହେଁ, କେଉଁ ଫୁଲରେ ମହୁ ଗଚ୍ଛିତ ଅଛି ତାହାର ସୂଚନା ମଧ୍ୟ ଏଥିରେ ଥାଏ । ଅବଶ୍ୟ ମହୁମାଛିମାନେ ଏହି ଫୁଲର ନାମ ଜାଣନ୍ତି ନାହିଁ, କିମ୍ବା ଭାଷା ଜରିଆରେ କହିପାରନ୍ତି ନାହିଁ ଯେ "ଏହି ଫୁଲଗୁଡ଼ିକରେ ମହୁ ରହିଛି" । ମାତ୍ର ସଂଗୃହୀତ ମହୁର କିଛି ଅଂଶ ସେମାନଙ୍କ ପାଟିରେ ରହିଯାଇଥାଏ । ମହୁଫେଣାକୁ ଛାଡ଼ିଆସି, ବେଳେ ବେଳେ ସେମାନେ ମହୁକୁ ଫେଣାରେ ରଖିଦିଅନ୍ତି ।

ଏହି ମହୁର ଗନ୍ଧ ବାରି ଅନ୍ୟ ମହୁମାଛିମାନେ ଜାଣି ପାରନ୍ତି, କେଉଁଠୁ ତାଙ୍କର ସାଥୀ ମହୁମାଛି ମହୁ ଆଣିଛି ।

ଏହାଛଡ଼ା ଫୁଲର ସୂକ୍ଷ୍ମ ମଧୁର ଗନ୍ଧ ଅନେକ ସମୟ ଧରି ଅନ୍ୟ କୌଣସି ଜିନିଷ କିମ୍ବା କୀଟଙ୍କ ଅପେକ୍ଷା ମହୁମାଛିର ଦେହରେ ଲଗି ରହିଥାଏ ।

ଏହି ଭଳି, ଗୁଇନ୍ଦା ସ୍ତ୍ରୀ ମହୁମାଛି ତା'ର ସାଥୀ ମହୁମାଛିମାନଙ୍କୁ ଫୁଲର ଗନ୍ଧ ବାରି ଜଣେଇ ଦିଏ ଯେ, କେଉଁ ଫୁଲରେ ମହୁ ଗଚ୍ଛିତ ଅଛି ।

ଅନ୍ୟ ଭାଷାରେ ସେ ତା'ର ସାଥୀ ମହୁମାଛିଙ୍କୁ, ମଧୁର ଅବସ୍ଥିତି ଓ ପରିମାଣ ବିଷୟରେ ଜଣାଇଥାଏ । (ମହୁମାଛିମାନଙ୍କର କଥାବାର୍ତ୍ତା ସମ୍ବନ୍ଧରେ ତୁମେମାନେ ପରେ ଜାଣି ପାରିବ ।)

ଫୁଲରେ ଗନ୍ଧ ଥିଲ ବେଳେ ହିଁ, ମହୁମାଛିମାନେ ଫେଣାକୁ ସେ ବାସ୍ନା ନେଇ ଆସନ୍ତି । ମାତ୍ର ତୁମେମାନେ ଜାଣ ଯେ, ପୃଥିବୀରେ ଅନେକ ଗନ୍ଧହୀନ ଫୁଲ ରହିଛି । ଫୁଲରେ ବାସ୍ନା ନଥିଲେ ମଧ୍ୟ ସେଥିରେ ଅନେକ ମହୁ ଥାଇ ପାରେ । ଏଭଳି ପରିସ୍ଥିତିରେ ମହୁମାଛିମାନେ କ'ଣ କରନ୍ତି ? ସେମାନେ କ'ଣ ଏହି ବାସ୍ନାହୀନ ଫୁଲକୁ ଛାଡ଼ି ଅନ୍ୟତ୍ର ଉଡ଼ି ଯାଆନ୍ତି ? ନା ! ତା ନୁହେଁ । ମହୁମାଛିମାନେ ଏହି ବାସ୍ନାହୀନ ଫୁଲର ସନ୍ଧାନ ମଧ୍ୟ ପରସ୍ପରକୁ ଦେଇ ପାରନ୍ତି ।

ମହୁମାଛି ଦେହର ଗଢ଼ଣ ବିଷୟରେ ଲୋକମାନେ ଅନେକ ଆଗରୁ ଟିକିନିଖି ଭାବେ ଜାଣିବାକୁ ପାଇଥିଲେ । ମାତ୍ର ଅଳ୍ପ କେତେ ଦଶନ୍ଧି ପୂର୍ବେ, ମହୁମାଛିର ପେଟତଳେ ବୈଜ୍ଞାନିକମାନେ ପୂର୍ବରୁ ଅଜଣା ଏକ ଗ୍ରନ୍ଥିର ଆବିଷ୍କାର କଲେ । ଏହି ଗ୍ରନ୍ଥି ସାହାଯ୍ୟରେ ମହୁମାଛି ଦେହରେ ଏକ ବାସ୍ନାଯୁକ୍ତ ତରଳ ପଦାର୍ଥ ତିଆରିହୁଏ । ମାତ୍ର ଏହା ସବୁଦିନେ ତିଆରି ହୁଏ ନାହିଁ । ମହୁମାଛିର ଦରକାର ସମୟରେ ଏହା ସୃଷ୍ଟି ହୁଏ । ଉଦାହରଣ ସ୍ୱରୂପ, ବସନ୍ତ ଋତୁରେ ମହୁମାଛିମାନେ ଏହି ତରଳ ସୁଗନ୍ଧ ପଦାର୍ଥ ସାହାଯ୍ୟରେ ଫେଣାର ସ୍ଥାନ ନିରୂପଣ କରନ୍ତି । ଏହି ତରଳ ପଦାର୍ଥର ବାସ୍ନା ଖୁବ୍ କଡ଼ା ଏବଂ ମହୁଫେଣାର ଆଖପାଖରେ ଏହା ଅନେକ ଦିନଧରି ଲଗି



ରହେ । ବର୍ସାକୁ ଫେରୁଥିବା ମହୁମାଛିଙ୍କ ଲାଗି ଏହି ବାସ୍ନା ଦିଗ୍‌ଦର୍ଶକ ଭଳି କାର୍ଯ୍ୟ କରେ ।

ବୈଜ୍ଞାନିକମାନେ ଏହି ବାସ୍ନାକୁ "ଆକର୍ଷଣକାରୀ" ବୋଲି ଆଖ୍ୟା ଦେଇଛନ୍ତି ।

ଭଅଁରମାନଙ୍କ ପରି କେତେକ ଶ୍ରେଣୀର ମହୁମାଛିଙ୍କର ମାଢ଼ି ମୂଳରେ ସ୍ୱତନ୍ତ୍ର ଗ୍ରନ୍ଥି ଥାଏ, ଯିଏକି ସୁଗନ୍ଧ ତରଳ ପଦାର୍ଥ ତିଆରି କରେ । ଅନ୍ୟମାନଙ୍କୁ ଖାଦ୍ୟର ସନ୍ଧାନ ଦେଖାଇ ଗୁଇନ୍ଦା ସ୍ତ୍ରୀ ମହୁମାଛି ନିର୍ଦ୍ଦିଷ୍ଟ ସମୟ ବ୍ୟବଧାନରେ ନିଜର ମାଢ଼ି ସାହାଯ୍ୟରେ ଘାସ, ଡାଳ, ପତ୍ରକୁ ଛୁଇଁ ଏହି ସୁଗନ୍ଧ ପଦାର୍ଥର ସଂକେତ ଛାଡ଼ିଆସେ ।

ପିଲାମାନେ ମନେରଖ, ଭ୍ରମର କେବଳ ମଧୁର ଭାଷାରେ ସବୁବେଳେ ଖବର ପଠାଏ ନାହିଁ । ବେଳେ ବେଳେ ଦରକାରୀ ଚିଠି ମଧ୍ୟ ଲେଖି ଥାଏ : ନିଜର ବାସ ସ୍ଥାନରୁ ଉଡ଼ି ଯାଇ ଏବଂ ଫୁଲମାନଙ୍କରେ ଟୋପାଏ ସୁଗନ୍ଧ ତରଳ ପଦାର୍ଥ ଛାଡ଼ିଦେଇ, କେଉଁଠି ଖାଦ୍ୟ ଅଛି ସେହି ସ୍ଥାନର ସନ୍ଧାନ କରନ୍ତି ।

ପିମ୍ପୁଡ଼ିମାନେ ମହୁମାଛି ପରି ସାମାଜିକ ଭାବେ ବାସ କରନ୍ତି । ସେମାନଙ୍କର ମଧ୍ୟ ସ୍ୱତନ୍ତ୍ର ନିୟମ ରହିଅଛି । ପିମ୍ପୁଡ଼ିଙ୍କ ମଧ୍ୟରୁ ଯଦି ଗୋଟିଏ ପିମ୍ପୁଡ଼ି କେଉଁଠି ଖାଦ୍ୟର ସନ୍ଧାନ ପାଏ, ତେବେ ସେ ଶୀଘ୍ର ଅନ୍ୟମାନଙ୍କୁ ଖବର ଦେଇଦିଏ ଓ ଖାଦ୍ୟ ମହଜୁଟ୍ ଥିବା ସ୍ଥାନକୁ ଅନ୍ୟମାନଙ୍କୁ ବାଟ କଢ଼ାଇ ନିଏ ।

ସବୁ ମହୁମାଛିଙ୍କ ଭଳି ପିମ୍ପୁଡ଼ିଙ୍କର ମଧ୍ୟ ପେଟତଳେ ଏକ ସ୍ୱତନ୍ତ୍ର ଗ୍ରନ୍ଥି ଅଛି, ଯିଏକି ତରଳ ସୁଗନ୍ଧ ପଦାର୍ଥ ତିଆରି କରେ । ପିଲାମାନେ! ତୁମେ ପିମ୍ପୁଡ଼ିଗୁଡ଼ାକୁ ଥରେ ଲକ୍ଷ୍ୟକର । ଗୋଟିଏ ପିମ୍ପୁଡ଼ି ଧୀର ଗତିରେ ଦୌଡ଼ୁଛି, ଅର୍ଥାତ୍, ଅର୍ଥହୀନ ଭାବେ ଦୌଡ଼ୁଛି ତ ଅନ୍ୟଟି ଆଶ୍ଚର୍ଯ୍ୟଭାବେ ଯାଉଅଛି : ଯେମିତିକି ପ୍ରତି ମିନିଟ୍‌ରେ ବସୁଛି ଆଉ ଉଠୁଛି ।

ଭଲଭାବେ ଲକ୍ଷ୍ୟ କଲେ ତୁମେମାନେ ଜାଣି ପାରିବ ଯେ, ସେ ବାରମ୍ବାର



ନିଜର ତଳିପେଟକୁ ମାଟିରେ ଛୁଇଁ ଗାଡ଼ିରେ ସୁଗନ୍ଧ ତରଳ ପଦାର୍ଥରୁ ଟୋପାଏ କାଢ଼ିଦିଏ । ଏହାର ଅର୍ଥ, ପିମ୍ପୁଡ଼ିଟି କୌଣସି ଜିନିଷର ସନ୍ଧାନ ପାଇ ଶୀଘ୍ର ଫେରିଆସେ । କାରଣ, ଗୋଟିଏ ପିମ୍ପୁଡ଼ି ପକ୍ଷରେ ଜିନିଷଟିକୁ ବୋହି ଆଣିବା ଅସମ୍ଭବ, ତେଣୁ ସନ୍ଧାନ ମିଳିଥିବା ଜିନିଷ ଯେଉଁଠି ରହିଛି, ସେହି ସ୍ଥାନକୁ ରାସ୍ତା ଭୁଲିନଯିବା ପାଇଁ ବାଟଯାକ ପିମ୍ପୁଡ଼ି ନିଜ ଦେହର ସୁଗନ୍ଧ ତରଳ ପଦାର୍ଥରୁ ଟୋପାଏ ଟୋପାଏ ଛାଡ଼ି ଯାଏ ।

ଥରେ ପିମ୍ପୁଡ଼ିମାନଙ୍କୁ ଲକ୍ଷ୍ୟ କରୁକରୁ, ମୁଁ ପିମ୍ପୁଡ଼ି ହୁଡ଼ାଠାରୁ ଅଳ୍ପ ଦୂରରେ ଗୋଟାଏ ବଡ଼ ମଲା ଶଅଁବାଳୁଆକୁ ରଖିଦେଲି ।

କିଛି ସମୟ ପରେ ଗୁଇନ୍ଦା ପିମ୍ପୁଡ଼ିଟି ଆସି ଶଅଁବାଳୁଆଟାକୁ ଦେଖିଲା ।

ନିଜର ନିଶରେ ମଲା ଶଅଁବାଳୁଆକୁ ଛୁଇଁ ପିମ୍ପୁଡ଼ିଟି ନିଜର ସବୁ ଶକ୍ତି ଖଟାଇ ନିଜର ହୁଡ଼ା ଆଡ଼କୁ ଦୌଡ଼ିଲା ।

ଅଳ୍ପ ସମୟ ପରେ ପିମ୍ପୁଡ଼ିଟି ଫେରିଲା, ମାତ୍ର ଏକୁଟିଆ ନୁହେଁ, ନିଜର ସାଥୀମାନଙ୍କୁ ସାଙ୍ଗରେ ଧରି ।

ଏଥିରୁ ଜଣାଗଲା ଯେ ଯେତେ ଦ୍ରୁତଗତିରେ ଯାଉ, ଯେତେ ଶୀଘ୍ର ନିଜର ସାଥୀମାନଙ୍କୁ ସଙ୍ଗରେ ନେଇ ଆସିଥିଲେ ମଧ୍ୟ ପିମ୍ପୁଡ଼ିଟି ନିଜର ଗନ୍ତବ୍ୟ ପଥରେ ସୁଗନ୍ଧ ପଦାର୍ଥ ଛାଡ଼ିବାକୁ ଭୁଲି ଯାଇ ନାହିଁ । ସେହି ବାସ୍ନା ପିମ୍ପୁଡ଼ିଦଳକୁ ଶଅଁବାଳୁଆ ପଡ଼ିଥିବା ସ୍ଥାନକୁ ବାଟ କଢ଼େଇ ଆଣିଛି ।

ବର୍ତ୍ତମାନ ଦେଖିବା, ପିମ୍ପୁଡ଼ି କେବଳ ନିଜ ପାଇଁ ଏହି ସୁଗନ୍ଧ ପଦାର୍ଥ ଛାଡ଼ିଥାଏ ନା ଏହି ପଦାର୍ଥ ଅନ୍ୟ ପିମ୍ପୁଡ଼ିମାନଙ୍କ ପାଇଁ ଆବଶ୍ୟକ? ବୋଧହୁଏ ସେମାନେ କେବଳ ଗୁଇନ୍ଦା ପିମ୍ପୁଡ଼ିଟିକୁ ଆଗରେ ଦେଖି ତା ପଛରେ ଦୌଡ଼ୁଛନ୍ତି?

ଘଟଣା କ'ଣ ଜାଣିବାକୁ ସ୍ଥିର କଲି ।

ଗୁଇନ୍ଦା ପିମ୍ପୁଡ଼ିଟି ଅନ୍ୟ ପିମ୍ପୁଡ଼ି ଧାରଠୁ ଆଗରେ ଦୌଡ଼ୁଥାଏ । ତାକୁ ବାଦ୍‌ଦେଇ



ଖଣ୍ଡେ କାଠି ଧରି ଶୀଘ୍ର ମୁଁ ମାଟିରେ ଗାରଟିଏ ଟାଣି ଦେଲି । ଗୁଇନ୍ଦା ପିମ୍ପୁଡ଼ି ଏବଂ ଅନ୍ୟ ପିମ୍ପୁଡ଼ିମାନଙ୍କ ମଧ୍ୟରେ ସରୁ ନାଳଟିଏ ହୋଇ ଗଲା । ପିମ୍ପୁଡ଼ିମାନଙ୍କ ଦୃଷ୍ଟିରେ ଏହା ସରୁ ନାଳଟିଏ ନ ହୋଇ ବଡ଼ ଏକ କେନାଲ୍ ଭଳି ମନେହେଲା । ସତରେ ପିମ୍ପୁଡ଼ିମାନେ ଏ ଭଳି ପ୍ରତିବନ୍ଧକ ସହଜରେ ଅତିକ୍ରମ କରି ପାରନ୍ତି । ମାତ୍ର ଏହି କ୍ଷେତ୍ରରେ ପିମ୍ପୁଡ଼ିମାନେ ଇତସ୍ତତଃ ହୋଇ କ'ଣ କରିବାକୁ ପଡ଼ିବ ନଜାଣି, ନାଳ ଆରରେ ଜମା ହୋଇ ଗଲେ । ସେମାନେ ଇତସ୍ତତଃ ହୋଇ ନିଶରେ ନାଳକୁ ଛୁଇଁବାକୁ ଲାଗିଲେ । କେତେକ ନାଳ ମଧ୍ୟକୁ ଆଗେଇ ଗଲେ, ଅନ୍ୟମାନେ ନାଳ କଡ଼େ କଡ଼େ ମୁହାଁଇଲେ, ଯେମିତିକି କ'ଣ ଗୋଟାଏ ହଜି ଯାଇଥିବା ଜିନିଷକୁ ସେମାନେ ଖୋଜି ବୁଲୁଛନ୍ତି ।

ଏଣେ ଗୁଇନ୍ଦା ପିମ୍ପୁଡ଼ିଟି ଦୌଡ଼ି ଦୌଡ଼ି ଯାଇ ଶଅଁବାଳୁଆ ପାଖରେ ପହଞ୍ଚି ଦେଖିଲା ଯେ, ତା ପଛରେ କେହି ନାହାନ୍ତି । କିଛି ସମୟ ଚିନ୍ତାକଲା ପରେ ପୁଣି ସେଇ ପଥ ଦେଇ ସେ ଫେରିଲା । ଟଣା ଯାଇଥିବା ଗାର ପାଖରେ ପହଞ୍ଚି ତାକୁ ଅତିକ୍ରମ କରିଗଲା ଓ ସେଠାରେ ନିଜ ଦଳର ପିମ୍ପୁଡ଼ିମାନଙ୍କୁ ଭେଟିଲା । ସମସ୍ତେ ଏବେ ଗୋଟିଏ ଜାଗାରେ ରୁଣ୍ଡ ହେଲେ ।

ଗୁଇନ୍ଦା ପିମ୍ପୁଡ଼ିଟି ନାଳ ଅତିକ୍ରମ କରି ପୁଣି ଶଅଁବାଳୁଆ ଆଡ଼କୁ ଦୌଡ଼ିବାକୁ ଲାଗିଲା । ଏଥର ନିର୍ଭୟରେ ଅନ୍ୟ ପିମ୍ପୁଡ଼ିମାନେ ତା ପଛେ ପଛେ ଧାଇଁଲେ ।

ଏଥର ମୁଁ ଜାଣି ପାରିଲି ଯେ ଗୁଇନ୍ଦା ପିମ୍ପୁଡ଼ିଟି ଯେତେବେଳେ ସୁଗନ୍ଧ ତରଳ ପଦାର୍ଥ ସାହାଯ୍ୟରେ ରାସ୍ତା ଫିଟାଏ, ସେହି ରାସ୍ତା କେବଳ ତା ନିଜ ପାଇଁ ନୁହେଁ, ତା'ର ସାଥୀମାନଙ୍କ ପାଇଁ ମଧ୍ୟ ।

ପିମ୍ପୁଡ଼ିଧାର ଉପରେ ହଠାତ ଗାର ଟାଣି ଦେଇ ମୁଁ ସେମାନଙ୍କର ନିର୍ଦ୍ଦିଷ୍ଟ ଗତିପଥକୁ ରୋକିଦେଲି ନାଳଟିଏ କରି । ପିମ୍ପୁଡ଼ିମାନେ ବାଟବଣା ହୋଇଗଲେ । ସେମାନେ କିନ୍ତୁ ତାଙ୍କର ସାମନାରେ ଦୌଡ଼ୁଥିବା ଗୁଇନ୍ଦା ପିମ୍ପୁଡ଼ିକୁ ଭଲଭାବେ ଦେଖୁଥିଲେ । ଅତଃ କେଉଁ ଦିଗକୁ ପିମ୍ପୁଡ଼ିଟି ଦୌଡ଼ିଗଲା, ତାହା ସେମାନେ ଲକ୍ଷ୍ୟ କରୁଥିଲେ । ମାତ୍ର ସେମାନେ ଆଉ ସେଇ ପଥରେ ଗଲେ ନାହିଁ । କାରଣ ପିମ୍ପୁଡ଼ି ଧାରରେ ସେମାନଙ୍କ ଲାଗି ସୁଗନ୍ଧ ପଦାର୍ଥର ଆକର୍ଷଣ ଆଉ ରହିଲା ନାହିଁ । ତେଣୁ ଗୁଇନ୍ଦା ପିମ୍ପୁଡ଼ିଟିକୁ ପୁଣିଥରେ ଆସି, ବାଟ କଢ଼ାଇ, ସାଥୀମାନଙ୍କୁ ଗନ୍ତବ୍ୟ ପଥରେ ଆଗେଇ ନେବାକୁ ପଡ଼ିଲା ।

ଶଅଁବାଳୁଆ ନିକଟରେ ପହଞ୍ଚି ପିମ୍ପୁଡ଼ିମାନେ ତାକୁ ନିଜର ହୁଡ଼ା ପାଖକୁ ଘୋଷାରି ଘୋଷାରି ଆଣିଲେ । ସେମାନଙ୍କ ପକ୍ଷେ ଏହା ଖୁବ୍ କଷ୍ଟକର କାର୍ଯ୍ୟ ହେଲେ ମଧ୍ୟ ଶଅଁବାଳୁଆଟା ସେମାନଙ୍କୁ ବଳେଇ ଗଲା ନାହିଁ । ଏହି ସମୟରେ ହଠାତ୍ ମୁଁ ଭାବିଲି : ଶଅଁବାଳୁଆଟିକୁ ନେବାକୁ ଯେତିକି ପିମ୍ପୁଡ଼ି ଦରକାର ଠିକ୍ ସେତିକି ପିମ୍ପୁଡ଼ି କେମିତି ଆସିଲେ ? ଯଦି ଶଅଁବାଳୁଆ ଟିକିଏ ଭାରି କିମ୍ବା ହାଲୁକା ହୋଇ ଥାଆନ୍ତା, ତେବେ ତାକୁ ଟାଣି ନେବାକୁ ସେତିକି ପିମ୍ପୁଡ଼ି ଆସି ଥାଆନ୍ତେ ନା କମ୍ ବା ଅଧିକ ସଂଖ୍ୟାରେ ଆସି ଥାଆନ୍ତେ ? ଏହି ସବୁ ପ୍ରଶ୍ନର ସଠିକ୍ ଉତ୍ତର ପାଇବା ପାଇଁ ଆମେ ପରୀକ୍ଷା କଲେ ଦେଖି ପାରିବା ।

ଥରେ ମୁଁ ପିମ୍ପୁଡ଼ି ହୁଡ଼ାଠାରୁ ଅଳ୍ପ ଦୂରରେ ଗୋଟିଏ ଛୋଟ ବୁଢ଼ିଆଣୀ ରଖିଲି । ମାତ୍ର ଦୁଇ, ତିନୋଟି ପିମ୍ପୁଡ଼ି ଏହି ବୁଢ଼ିଆଣୀଟିକୁ ଟାଣି ନେଇ ପାରିବେ ବୋଲି ମନେ ମନେ ଚିନ୍ତାକରି ମୁଁ ଅପେକ୍ଷା କଲି ।

ପୂର୍ବଥର ପରି ଗୁଇନ୍ଦା ପିମ୍ପୁଡ଼ିଟି ଆସି ବୁଢ଼ିଆଣୀଟିକୁ ଦେଖିଲା । ଚଞ୍ଚଳ ଗତିରେ ବୁଢ଼ିଆଣୀଟିକୁ ଏପଟ ସେପଟ ଦେଖି ସାରିଲା ପରେ ସେ ଅନ୍ୟମାନଙ୍କର ସାହାଯ୍ୟ ପାଇବାକୁ ଫେରିଗଲା । ତା'ପରେ ଶଅଁବାଳୁଆ ସହିତ ପୂର୍ବରୁ ଯାହା ଘଟିଥିଲା, ଠିକ୍ ତାହାହିଁ ହେଲା । ଏଥର କିନ୍ତୁ ଗୁଇନ୍ଦା ପିମ୍ପୁଡ଼ି ଦ୍ୱାରା ନିମନ୍ତ୍ରିତ ପିମ୍ପୁଡ଼ିଙ୍କ ସଂଖ୍ୟା ଖୁବ୍ କମ୍ ଥିଲା । ଏହି ପିମ୍ପୁଡ଼ି ଦଳ ବୁଢ଼ିଆଣୀଟିକୁ ଟାଣି ଟାଣି ପିମ୍ପୁଡ଼ି ହୁଡ଼ା ଆଡ଼କୁ ନେଇଗଲେ ।

ମନେ ହୁଏ, ହୁଏତ ଏଥରକ ଆକସ୍ମିକ ଭାବେ କମ୍ ପିମ୍ପୁଡ଼ି ଆସି ପାରିଥାନ୍ତି । ତେଣୁ ଛୋଟ ବଡ଼ ବିଭିନ୍ନ ଆକାରର କୀଟ ପତଙ୍ଗ ମୁଁ ପିମ୍ପୁଡ଼ିମାନଙ୍କ ଲାଗି ପକେଇ ଦେଇ ନିରୀକ୍ଷଣ କଲି । ମାତ୍ର ପ୍ରତିଥର ଲକ୍ଷ୍ୟ କଲି ଯେ, ଗାତ ନିକଟକୁ ଖାଦ୍ୟ ଟାଣି ନେବାକୁ ଯେତିକି ପିମ୍ପୁଡ଼ି ଦରକାର, ଗୁଇନ୍ଦା ପିମ୍ପୁଡ଼ି ଠିକ୍ ସେତିକି ସଂଖ୍ୟକ

ପିମ୍ପୁଡ଼ି ସଙ୍ଗରେ ନେଇ ଆସୁଥିଲ । ସମ୍ଭବତଃ ଗାତ ଭିତରେ ବାସ କରୁଥିବା ପିମ୍ପୁଡ଼ିଙ୍କ ମଧ୍ୟରେ "ଶ୍ରମିକ ଶକ୍ତି"ର ଅଭାବ ଥିଲ । ତେଣୁ ଛୋଟ କୀଟଟିଏ ବହି ନେବାକୁ କମ୍ ଓ ବଡ଼ କୀଟକୁ ନେବାକୁ ଅଧିକ ସଂଖ୍ୟକ ପିମ୍ପୁଡ଼ି ଆସୁଥିଲେ ।

ମାତ୍ର ଆଶ୍ଚର୍ଯ୍ୟର କଥା – ଶିକାରର ଆକାର ପ୍ରକାର ପିମ୍ପୁଡ଼ି ଜାଣୁଥିଲେ କେଉଁଠୁ ? ବୋଧହୁଏ, ଗୁଇନ୍ଦା ପିମ୍ପୁଡ଼ି କେବଳ କେଉଁଠାରେ ଶିକାର ପଡ଼ିଛି ନକହି, କି ଜିନିଷ ଏବଂ ତାହାକୁ ଗାତ ନିକଟକୁ ଆଣିବାକୁ କେତେ ଶ୍ରମିକ ପିମ୍ପୁଡ଼ି ଦରକାର, ଏସବୁ ବିଷୟ ମଧ୍ୟ ଜଣାଇ ଦେଉଥିଲ । ଏଥିରୁ ଜଣାଗଲ ଯେ, କୌଣସି ଜିନିଷର ବାସ୍ନାର ଭାଷା ବ୍ୟବହାର କରି ପିମ୍ପୁଡ଼ିମାନେ ପରସ୍ପରକୁ କହି ପାରନ୍ତି, "ମୋ ପଛରେ ଆସ ! ବ୍ୟସ୍ତ ହୁଅ ନାହିଁ !" ଏହାଛଡ଼ା ସେମାନେ କେଉଁଠି ଶିକାର ପଡ଼ିଛି, ସେ ସ୍ଥାନ ଦେଖାଇ ପାରନ୍ତି ଏବଂ ଶିକାରର ଆକାର ପ୍ରକାର ସମ୍ବନ୍ଧରେ ଧାରଣା ଦେଇ ଥାଆନ୍ତି ।

କେତେକ ବୈଜ୍ଞାନିକ ମନେ କରନ୍ତି ଯେ, ଶିକାରର ଆକୃତି ଓ ତା'ର ଓଜନ ଇତ୍ୟାଦି ସଂପର୍କରେ ତା ଦେହରୁ ବାହାରୁଥିବା ତୀବ୍ର ଗନ୍ଧ ଆଭାଷ ଦେଇଥାଏ : ଏହି ଗନ୍ଧ ଯେତେ କଡ଼ା, ଶିକାରର ଆକାର ସେତେ ବୃହତ୍ ଏବଂ ଗନ୍ଧ କମ୍ ହେଲେ ଶିକାରର ଆକାର କ୍ଷୁଦ୍ର । କିନ୍ତୁ ଏହି ପ୍ରଶ୍ନର ସଠିକ୍ ଉତ୍ତର ପାଇବାକୁ ହେଲେ ଅନେକ ପରୀକ୍ଷା କରିବାକୁ ହେବ । ଗୋଟିଏ କଥା ଆମକୁ ସଠିକ୍ ରୂପେ ଜଣା ଯେ, ଯେତେ ତୀବ୍ର ଗନ୍ଧ ହେଉ ନା କାହିଁକି, ତାହା ଅଳ୍ପ ସମୟ ପରେ ଉଡ଼ିଯାଏ ।

କାହିଁକି ଆମେ ଜାଣିଛେ : ଯଦି ଦୀର୍ଘ ସମୟ ଧରି ଗନ୍ଧ ଲଗି ରହୁଥାଆନ୍ତା, ତେବେ ପିମ୍ପୁଡ଼ିମାନେ ବିବ୍ରତ ହୋଇ ପଡ଼ନ୍ତେ । ଅନ୍ୟ କୌଣସି ପିମ୍ପୁଡ଼ି ଦଳ ଶିକାରଟିକୁ ପୂର୍ବେ ଗାତକୁ ନେଇ ଯାଇଥିଲେ ମଧ୍ୟ, ସେମାନେ ସେହି ଜାଗାରେ ଏପଟ ସେପଟ ବୁଲନ୍ତେ, ଯେଉଁଠି ତାହା ଥିଲ ।

ଏପରି କେତେକ ପିମ୍ପୁଡ଼ି ଅଛନ୍ତି, ଯିଏକି ନିଜ ଦେହରୁ ସୁଗନ୍ଧ ତରଳ ପଦାର୍ଥ ଭୂମି ଉପରେ ନଛାଡ଼ି, ପବନରେ ଛାଡ଼ି ଦିଅନ୍ତି । ଏହି ଜାତୀୟ ପିମ୍ପୁଡ଼ି ମରୁଭୂମି କିମ୍ବା ଅତି ଶୁଷ୍କ ସ୍ଥାନରେ ରହନ୍ତି । ଦିନବେଳେ ଖରାରେ ଭୂଇଁ ଏତେ ତାତି ଯାଏ ଯେ, ତା ଉପରେ ତଳିପେଟ ଦେଇ ଛୁଇଁବା କଷ୍ଟକର ହୋଇପଡ଼େ (ତୁମେମାନେ ଦେଖିଥିବା ପିମ୍ପୁଡ଼ିମାନଙ୍କ ଅପେକ୍ଷା ଏହି ମରୁଭୂମି ପିମ୍ପୁଡ଼ିମାନଙ୍କର ଗୋଡ଼ ଖୁବ୍ ଲମ୍ବା, ତେଣୁ ଗ୍ଲଲିଲ ବେଳେ ସେମାନଙ୍କର ଦେହ ତଳେ ଲଗେ ନାହିଁ) । ଏହି ଜାତୀୟ ପିମ୍ପୁଡ଼ି ନିଜ ତଳିପେଟରୁ ତରଳ ସୁଗନ୍ଧ ପଦାର୍ଥ ଛାଡ଼ିଲ ବେଳେ, ଭୂଇଁ ଉପରେ ନଛାଡ଼ି, ଉପରକୁ ଫିଙ୍ଗି ଦିଅନ୍ତି । ପବନ ବହୁ ନଥିଲେ ଏହି ଗନ୍ଧ କିଛି ସମୟଧରି ଗୋଟିଏ ସ୍ଥାନରେ ଲଗି ରହେ ଏବଂ ସେମାନଙ୍କୁ ପଥ ଦେଖାଏ ।

## "ଏଠି ଜାଗା ନାହିଁ ! ଅନ୍ୟଠି ଦେଖ !"

ଏହା କାଲିଫର୍ଣ୍ଣିଆର କଥା ।

ଥରେ ଆକାଶଟା ସାରା କଳା ଧୂଆଁ ବିଛେଇ ହୋଇଗଲ । ତିନିଦିନ ଧରି କଠିଣ ପରିଶ୍ରମ କରି ମଧ୍ୟ ନିଆଁ ଲିଭାଳୀ ଦଳ ନିଆଁ ଲିଭେଇ ପାରିଲେ ନାହିଁ । ଏହି କାର୍ଯ୍ୟରେ ସାହାଯ୍ୟ କରିବାକୁ ପଡ଼ୋଶୀ ପ୍ରଦେଶରୁ ଦମ୍‌କଳଆଦି ଅଣାଗଲ । ହଜାର ହଜାର ଲୋକ ସ୍ୱଇଚ୍ଛାରେ ନିଆଁ ଲିଭାଇବାକୁ ଲଗି ପଡ଼ିଲେ । ଜଳୁଥିବା ପେଟ୍ରୋଲ୍ ଟାଙ୍କି ପାଖରେ ଏଣେତେଣେ ବୁଲୁଥିବା ଜଣେ ଶାନ୍ତଶିଷ୍ଟ ଲୋକକୁ ଲୋକଗହଳିରେ କେହି ଲକ୍ଷ୍ୟ କରୁ ନଥାନ୍ତି । ସବୁ ଲୋକ ଯେତେବେଳେ ପାରୁପର୍ଯ୍ୟନ୍ତ ଲଗିପଡ଼ି ନିଆଁ ଲିଭାଉ ଥାଆନ୍ତି, ଏଣେତେଣେ ବୁଲୁଥିବା ଲୋକଟି କାଠପୋକସବୁ ସଂଗ୍ରହ କରୁଥାଏ । ଶେଷରେ ପୁଲିସ୍‌ମାନେ ଏହି ଲୋକଟି କ'ଣ କରୁଛି ଓ କାହିଁକି ପୋକ ଧରୁଛି ତାହା ଜାଣିବାକୁ ଚାହିଁଲେ । ଜଣାଗଲ ଯେ, ଏହି ଲୋକଟି ଜଣେ ପ୍ରସିଦ୍ଧ ବୈଜ୍ଞାନିକ ।



ଧୂଆଁଚିଆ କାଠପୋକ

ବୈଜ୍ଞାନିକମାନଙ୍କ ମଧ୍ୟରେ ଅନେକ ଅଦ୍ଭୁତ ଲୋକ ମଧ୍ୟ ଥାଆନ୍ତି । ଯଦି ଏହି ଅଦ୍ଭୁତ ଲୋକଟି ନିଆଁ ଜଳୁଥିବା ସ୍ଥାନର ଆଖପାଖରେ କାଠପୋକସବୁ ଖୋଜୁଛି, ତେବେ ତାକୁ କେହି ବାରଣ କରିପାରିବେ ନାହିଁ ।

ହଁ, ଏହା ଅବଶ୍ୟ ଠିକ୍ କଥା । କିନ୍ତୁ ନିଆଁ ଜଳୁଥିବା ସ୍ଥାନରେ ବୈଜ୍ଞାନିକଙ୍କର କାଠପୋକ ସଂଗ୍ରହ ପଛରେ କିଛି ରହସ୍ୟ ଥିବା କଥା ପୁଲିସ୍‌ମାନେ ଜାଣନ୍ତେ କିପରି ? ନିଆଁ ଲଗି ଯାଇଥିବା ପେଟ୍ରୋଲ୍ ଟାଙ୍କି ନିକଟରେ ଅକସ୍ମାତ୍ ଅଟକି ଯାଇ ବୈଜ୍ଞାନିକ ଜଣକ ଦେଖିଲେ ଯେ, ଅନେକ କାଠପୋକ ଉଡ଼ି ବୁଲୁଛନ୍ତି । ଗୋଟିଏ ପୋକକୁ ଧରି ସେ ଜାଣି ପାରିଲେ ଯେ, ଏହି ପୋକଗୁଡ଼ାକ ହେଉଛନ୍ତି, ଧୂଆଁଳିଆ କାଠପୋକ । ସେମାନଙ୍କୁ ଧୂଆଁଳିଆ କାଠପୋକ ବୋଲି କୁହାଯାଏ, କାରଣ ଜଙ୍ଗଲରେ ନିଆଁ ଲଗିଥିବା ସମୟରେ ଏହି ପୋକ ନିଆଁ ଆଡ଼କୁ ଉଡ଼ିବାକୁ ଖୁବ୍ ଭଲ ପାଆନ୍ତି ଏବଂ ସେମାନଙ୍କୁ ଧୂଆଁର ଗନ୍ଧ ଆକର୍ଷଣ କରିନିଏ । ମାତ୍ର ଏଥର ଏହି କାଠପୋକସବୁ ଜଙ୍ଗଲରେ ନିଆଁ ଲଗିବା ହେତୁ ଆସି ନାହାନ୍ତି, ଆସିଛନ୍ତି ପେଟ୍ରୋଲ୍ ଟାଙ୍କିରେ ନିଆଁ ଦେଖି । ମାତ୍ର ଏହି ପୋକଗୁଡ଼ାକ ଆସିଲେ କେଉଁଠୁ ? ପେଟ୍ରୋଲ୍ ଟାଙ୍କିଠାରୁ ପ୍ରାୟ ଅଶୀ କିଲୋମିଟର ଦୂରରେ ନିକଟତମ ଜଙ୍ଗଲ ଥିଲା । ଏହି କାଠପୋକ ସବୁ କ'ଣ ଏତେ ଦୂରରୁ ଉଡ଼ି ଆସିଲେ ? ହଁ, କିନ୍ତୁ ସେମାନେ ଅଯଥାରେ ଏତେ ବାଟ ଉଡ଼ିଲେ : ଜଙ୍ଗଲ ଯେ ଜଳୁନଥିଲା !


କୋବି ପ୍ରଜାପତିମାନେ




କୋବି ପୋକମାନେ

କାଠପୋକଙ୍କୁ ଧୂଆଁ ଅନେକ ସମୟରେ ଠକି ଦିଏ । ଆମେରିକା ଯୁକ୍ତରାଷ୍ଟ୍ରର ବୈଜ୍ଞାନିକମାନେ ଲକ୍ଷ୍ୟ କରିଛନ୍ତି ଯେ, ଫୁଟ୍‌ବଲ୍ ଖେଳ ସମୟରେ ଦର୍ଶକମାନେ ଘନଘନ ସିଗାରେଟ୍ ଟାଣି ଯେଉଁ ଧୂଆଁ ଛାଡ଼ନ୍ତି, ତାହା ଫଳରେ ଖେଳ ପଡ଼ିଆ ଉପରେ ସୃଷ୍ଟି ହେଉଥିବା ଧୂଆଁ ଆଡ଼କୁ ମଧ୍ୟ ଏହି କାଠପୋକସବୁ ଉଡ଼ି ଆସନ୍ତି । ଆଶ୍ଚର୍ଯ୍ୟ କଥା । ସେମାନଙ୍କର ଘ୍ରାଣଶକ୍ତି ଏତେ ପ୍ରବଳ ଯେ, ଧୂଆଁର ଗନ୍ଧ ସେମାନେ ଦଶ କିଲୋମିଟରରୁ ଅଧିକ ଦୂରରୁ ଜାଣି ପାରନ୍ତି ! ମାତ୍ର କେଉଁ ଜିନିଷ ଜଳି ଏ ଧୂଆଁ ବାହାରୁଛି ତାହା ସେମାନେ କ'ଣ ସ୍ଥିର କରି ପାରନ୍ତି ନାହିଁ ? ଯେ କୌଣସି ଧୂଆଁ ସେମାନଙ୍କୁ ଉଡ଼ି ଯିବାକୁ ଡାକ ଦିଏ । ଏହା କେବଳ ଡାକ ନୁହେଁ, ଶୀଘ୍ର ଉଡ଼ିବା ପାଇଁ ନିର୍ଦ୍ଦେଶ ମଧ୍ୟ ।

ଏବେ ଦେଖିବାକୁ ଗଲେ ଜଙ୍ଗଲରେ ନିଆଁ ଲଗିବା ଫଳରେ ଅନେକ କୀଟ ପତଙ୍ଗ

ମରି ଯାଆନ୍ତି । ଧୂଆଁଳିଆ କାଠପୋକସବୁ ନିଆଁ ଦାଉରୁ ବଞ୍ଚି ଯାଇଥିବା ଦରପୋଡ଼ା କାଠ ଖୋଲରେ ତରବର ହୋଇ ଡିମ୍ବ ଦେଇ ଯାଆନ୍ତି ।

କିଛି ଦିନ ଗଲ ପରେ ଏହି ଦରପୋଡ଼ା କାଠ ଖୋଲରେ ସବୁଜପତ୍ରସବୁ କଅଁଳିବାକୁ ଲଗନ୍ତି । ଧୂଆଁଳିଆ କାଠପୋକ ଛାଡ଼ିଯାଇଥିବା ଡିମ୍ବରୁ ଏହି ସମୟ ମଧ୍ୟରେ ଲର୍ଭା ଜାତ ହୁଏ । ଅନ୍ୟ କୀଟ ପତଙ୍ଗଙ୍କ ସଂଖ୍ୟା ଏଠି ବେଶି ନଥାଏ । ତେଣୁ କାଠପୋକର ଲର୍ଭା ପାଇଁ ପ୍ରଚୁର ଖାଦ୍ୟ ମହଜୁଦ ଥାଏ ।

କେବଳ ଧୂଆଁଳିଆ କାଠପୋକ କାହିଁକି, ଅନେକ କୀଟ ସେମାନଙ୍କର ଭବିଷ୍ୟତ ବଂଶଧରଙ୍କ ପାଇଁ ଖାଦ୍ୟର ବ୍ୟବସ୍ଥା ଏହିଭଳି କରି ଥାଆନ୍ତି ।

ପିଲମାନେ ! ତୁମେ ଟିକେ ବଗିଚ୍ଚରେ ଉଡ଼ୁଥିବା କୋବି ପ୍ରଜାପତିକୁ ଲକ୍ଷ୍ୟ କର ! ବିଭିନ୍ନ ଗଛ ପତ୍ର ଉପରେ ଉଡ଼ିଲେ ମଧ୍ୟ ଏହି ଜାତୀୟ ପ୍ରଜାପତି କେବଳ କୋବି ଉପରେ ନିଜର ଡିମ୍ବ ଦେଇଥାନ୍ତି । ଯଦି ଆଖପାଖରେ କୋବି ଗଛ ନଥାଏ, ତେବେ ଓଲକୋବି କିମ୍ବା ସୋରିଷ ଜାତୀୟ କୌଣସି ଗଛରେ ଡିମ୍ବ ଦେଇ ଥାନ୍ତି । ପ୍ରଜାପତିକୁ ଜଣା ଯେ, ଡିମ୍ବରୁ ଜାତ ପୋକ ପାଇଁ କେବଳ ଏହି ଗଛ ସବୁ ଲୋଡ଼ା । ପ୍ରଜାପତି ଗନ୍ଧ ବାରି ଏହି ଗଛ ସ୍ଥିର କରେ । ସୋରିଷ ଜାତୀୟ ଗଛରେ, ବିଶେଷତଃ କୋବିରେ ସବୁଜସାର ଥାଏ, ତାହା ବ୍ୟତୀତ କୋବି ପୋକ ବଞ୍ଚିପାରେ ନାହିଁ । ଏହି ସବୁଜସାରର ଗନ୍ଧ ପ୍ରଜାପତିକୁ ଆକର୍ଷଣ କରେ ଏବଂ ନିର୍ଦ୍ଦେଶ ଦେଇ କହେ : ଏହି ଗଛଟିରେ ଡିମ୍ବ ଦେଲେ ତୋର ପିଲମାନେ ଆବଶ୍ୟକ ମତେ ଖାଦ୍ୟ ପାଇ ପାରିବେ । ଏହି ସବୁଜସାରର ଗନ୍ଧ ଯେ କେତେ ତୀବ୍ର, ତୁମେ ତାହା ଜାଣି ଆଶ୍ଚର୍ଯ୍ୟ ହେବ ।

ଗ୍ରୀଷ୍ମକାଳରେ ପରୀକ୍ଷା କରି ଦେଖ ! କୋବି ପ୍ରଜାପତି ଅଣ୍ଡା ଦେବା ସମୟରେ ବଗିଚ୍ଚର ବାଡ଼ କିମ୍ବା ଖଣ୍ଡେ କାଗଜ ଉପରେ କୋବି ପତ୍ରରୁ ରସ ଚିପୁଡ଼ି ଦିଅ । ତୁମେ ଦେଖି ପାରୁଥିବ ଏଭଳି ସ୍ଥାନରେ କାଗଜଟିକୁ ନେଇ ରଖ, ଯେଉଁଠି କୋବି ପ୍ରଜାପତିମାନେ ଉଡ଼ନ୍ତି । ତୁମେ ଦେଖିବ, ପ୍ରଜାପତି କାଗଜଟି ଉପରେ କିମ୍ବା କୋବି ପତ୍ରର ରସ ବୋଳା ବାଡ଼ ଉପରେ କେବଳ ଯେ ବସିବ ତା ନୁହେଁ, ତାହାରି ଉପରେ ହିଁ ଅଣ୍ଡା ଦେବ । କାଗଜ ଖଣ୍ଡକ ଯେ କୋବିପତ୍ର ନୁହେଁ ! ଏଥିରୁ ଜଣାଗଲ ଯେ, କୀଟ ପତଙ୍ଗମାନେ ନିଜ ଆଖି ଅପେକ୍ଷା ଗନ୍ଧର ଭାଷାକୁ ବେଶି ବିଶ୍ୱାସ କରନ୍ତି ।



ସାଧବବୋହୂ

କୋବି ପ୍ରଜାପତି ପରି ଅନେକ କୀଟ ପତଙ୍ଗଙ୍କ ପାଇଁ ସବୁଠୁ ବଡ଼ କଥା ହେଲା ଡିମ୍ବ ଦେବା ପାଇଁ ଏକ ଉପଯୁକ୍ତ ସ୍ଥାନ ବାଛିବା, ଯେଉଁ ସ୍ଥାନରୁ ଭବିଷ୍ୟତ୍ ବଂଶଧରକୁ ପ୍ରଚୁର ଖାଦ୍ୟ ମିଳିବ । କିନ୍ତୁ ଏପରି କେତେକ କୀଟ ପତଙ୍ଗ ଅଛନ୍ତି, ଯେଉଁମାନେ କି ନିଜର ପିଲମାନଙ୍କୁ ଖାଦ୍ୟ ଯୋଗାଇବା ପାଇଁ ବହୁ କଷ୍ଟ କରିବାକୁ ପଡ଼ିଥାଏ, ସମୟ ସମୟରେ ଲର୍ଭା ପାଇଁ ଖାଦ୍ୟ ଯୋଗାଇବାକୁ ଯାଇ, କୀଟ ପତଙ୍ଗମାନଙ୍କୁ ଘମାଘୋଟ ଲଢ଼େଇ କରିବାକୁ ପଡ଼ିଥାଏ ।

ତୁମେ ଜାଣିଥିବ ଯେ, ଏଭଳି କେତେକ ତୃଣଭୋଜୀ କୀଟ ପତଙ୍ଗ ଅଛନ୍ତି, ଯିଏକି କେବଳ ଗଛରେ ବାସ କରନ୍ତି ଓ ତା'ର ପତ୍ର ଖାଇ ବଞ୍ଚନ୍ତି । (ବେଳେବେଳେ କୀଟ ପତଙ୍ଗ ଓ ସେମାନଙ୍କର ଲର୍ଭା ଗଛପତ୍ର ଖାଇ ବଞ୍ଚନ୍ତି ତ ଆଉ କେତେକ କ୍ଷେତ୍ରରେ ପତ୍ରହିଁ ଲର୍ଭାର ଏକମାତ୍ର ଆହାର ହୋଇଥାଏ ।) ଏହା ଛଡ଼ା, ଏଭଳି କେତେକ ହିଂସ୍ର କୀଟ ଅଛନ୍ତି, ଯିଏକି ଅନ୍ୟ କୀଟଙ୍କୁ ଖାଇ ବଞ୍ଚନ୍ତି ।

ଆମେ ଯେତେବେଳେ ହିଂସ୍ର ଜନ୍ତୁଙ୍କ କଥା କହେ, ସେତେବେଳେ ହଠାତ୍ ଆମ ମନରେ ଭାସିଉଠେ ବାଘ କିମ୍ବା ସିଂହ ଅଥବା ଭୟଙ୍କର ହେଟାର ବଡ଼ ବଡ଼ ଦାନ୍ତ ଓ ମେଲ ପାଟି । ସୁନ୍ଦରୀ ଜଙ୍ଗି କିମ୍ବା ଛୋଟ ସାଧବବୋହୂଟି ହିଂସ୍ର ବୋଲି ଆମେ କେବେ ଚିନ୍ତା କରେ ନାହିଁ । କିନ୍ତୁ ସେମାନେ ମଧ୍ୟ ହିଂସ୍ର ଓ ସବୁବେଳେ ଖାଇବାକୁ ଖୁବ୍ ଭଲ ପାଆନ୍ତି ।

କୀଟ ପତଙ୍ଗମାନେ ହିଂସ୍ର ଜନ୍ତୁଙ୍କ ସମ୍ବନ୍ଧରେ ଆମର ଧାରଣାକୁ ବଦଳାଇ ଦିଅନ୍ତି । ଆଉ ମଧ୍ୟ ପରଜୀବୀମାନଙ୍କ ସମ୍ବନ୍ଧରେ ଆମର ଧାରଣାକୁ ସେମାନେ ବଦଳାଇ ଦିଅନ୍ତି ସଂପୂର୍ଣ୍ଣରୂପେ ।

ଅନେକ ପୂର୍ବରୁ ମଣିଷ ଏକ ଅଦ୍ଭୁତ କଥା ଲକ୍ଷ୍ୟ କରିଥିଲା : ବେଳେବେଳେ ଛୋଟ ଛୋଟ ଶୁଅଁବାଳୁଆରୁ ହଠାତ୍ କ୍ଷୁଦ୍ର ପରଥିବା ମାଛିସବୁ ବାହାରିଥାନ୍ତି । ଅଢ଼େଇ ହଜାର ବର୍ଷ ପୂର୍ବେ ଜଣେ ପ୍ରସିଦ୍ଧ ଗ୍ରୀକ୍ ବୈଜ୍ଞାନିକ ଶୁଅଁବାଳୁଆରୁ କିପରି ପରଯୁକ୍ତ ମାଛି ବାହାରେ ଲକ୍ଷ୍ୟ କରିଥିଲେ ଏବଂ ସିଦ୍ଧାନ୍ତରେ ଉପନୀତ ହୋଇଥିଲେ ଯେ, ମାଛିର ଜନ୍ମ କିଆରୁ ।

ଏଫିଆଲ୍ଟ (ଇକ୍‌ନେମନ୍) କଙ୍କି

ମାତ୍ର ଏକଥା ସଠିକ୍ ନୁହେଁ । କାରଣ କେତେକ ଜାତୀୟ ମାଛି (ଉଦାହରଣ ସ୍ୱରୂପ, ତାଖିନା ନାମକ ମାଛି) ଓ କେତେକ କୀଟ ପତଙ୍ଗ ଅଛନ୍ତି, ଯିଏକି ପ୍ରକୃତରେ ଶୁଅଁବାଳୁଆରୁ ଜନ୍ମ ନେଇଥାନ୍ତି । ସେମାନେ କଙ୍କି ଜାତୀୟ କୀଟ (ଇକ୍‌ନେମନ୍ ମାଛି) ଭାବରେ ପରିଚିତ । ସେମାନେ ପ୍ରକୃତରେ କିଆରୁ ଜନ୍ମ ନେଇ ନଥାନ୍ତି, ବରଂ ଶୁଅଁବାଳୁଆ ଭିତରେ ବଢ଼ନ୍ତି । ଏହି ଜାତୀୟ ମାଈ କଙ୍କି ଶୁଅଁବାଳୁଆ ଦେହରେ ଅଣ୍ଡା ଦେଇଥାଏ । ଏହି ଅଣ୍ଡାରୁ ଲାର୍ଭା ଜନ୍ମି ଶୁଅଁବାଳୁଆ ଦେହରେ ବସା ବାନ୍ଧନ୍ତି ଓ ଧୀରେ ଧୀରେ ତାକୁ ଖାଆନ୍ତି । ଶୁଅଁବାଳୁଆ ମରି ଗଲା ବେଳକୁ, ଲାର୍ଭା ବଡ଼ କୀଟରେ ପରିଣତ ହୋଇ ଉଡ଼ିଯାଆନ୍ତି ।


ତାଖିନା ନାମକ ମାଛି

ପିଲାମାନେ ! ତୁମେ ଏହି କଙ୍କି ଜାତୀୟ କୀଟଙ୍କ ବିଷୟରେ କିଛି ଜାଣିବା ସାଙ୍ଗେ ସାଙ୍ଗେ, ଯଦି ନିଜେ ଏହି ସବୁ କୀଟ ଦେଖି ପାରନ୍ତ, ତେବେ ଖୁବ୍ ଭଲ ହୁଅନ୍ତା । ଏହା କଷ୍ଟକର ନୁହେଁ । ଏଯାଏଁ ଜଣା ପଡ଼ିଛି ଯେ, ପୃଥିବୀରେ ପ୍ରାୟ ପଚାଶ ହଜାର ଶ୍ରେଣୀର କୀଟ ପତଙ୍ଗ ଅଛନ୍ତି, ଯିଏକି ନିଜ ଅଣ୍ଡାକୁ ଅନ୍ୟତ୍ର ରଖି ବଂଶ ବୃଦ୍ଧି କରନ୍ତି । ସୋଭିଏତ୍ ଦେଶରେ ସହସ୍ରାଧିକ ଏହି ଶ୍ରେଣୀର କୀଟ ପତଙ୍ଗ ଅଛନ୍ତି । ସେମାନେ ପରସ୍ପରଠାରୁ ଭିନ୍ନ । ତିନି ମିଲିମିଟର ଲମ୍ବର କ୍ଷୁଦ୍ର କୀଟଠାରୁ ଆରମ୍ଭ କରି ଚାରି ସେଣ୍ଟିମିଟର ଲମ୍ବର ବଡ଼ ବଡ଼ କୀଟ ଦେଖିବାକୁ ମିଳନ୍ତି । ବଡ଼ କୀଟମାନଙ୍କ ମଧ୍ୟରେ ଏହି ଜାତୀୟ କଙ୍କି ୨ ପ୍ରକାରର ଅଛନ୍ତି । ଗୋଟିକର ନାମ ଏଫିଆଲ୍ଟ ଓ ଅନ୍ୟଟିର ନାମ ଭିସ୍‌ସା । ସେମାନେ ପାଇନ୍ ଜାତୀୟ ଜଙ୍ଗଲରେ ବାସ କରନ୍ତି ଏବଂ ଗଛ ଖୋଲରେ ରହୁଥିବା ଲାର୍ଭା ମଧ୍ୟରେ ଅଣ୍ଡା ଦିଅନ୍ତି ।

ସ୍ୱଚ୍ଛ ପରଥିବା ଗୋଟିଏ ଲମ୍ବା ପତଳା କଙ୍କି ଥରେ ଖୁବ୍ ଜୋରରେ ଗଛରେ ଦୌଡ଼ିବାକୁ ଲାଗିଲା । ଦେଖାଗଲା ଯେ, ତା ଦେହରେ ଏପରି ଏକ ରୋଜିଆ ନଳୀ ରହିଛି, ଯିଏକି ଅଣ୍ଡା ଛାଡ଼ିବାରେ ସାହାଯ୍ୟ କରିଥାଏ । ଏହି ଅଙ୍ଗଟି ବେଳେ ବେଳେ ନିଜ ଦେହଠାରୁ ବଡ଼ ହୋଇଥାଏ । ଗଛ 'ଦେହରେ' ଦୌଡ଼ିବା ସମୟରେ ନିଜର ତୀକ୍ଷ୍ଣ ନିଶରେ ଗଛର ଛେଲିକୁ ସେ ଗେ୍ଟ ମାରିବାକୁ ଲାଗିଲା । କଙ୍କିଟି ହଠାତ୍ ଠିଆ ହୋଇଯାଇ, ନିଜର ତୀକ୍ଷ୍ଣ ନିଶକୁ ନଚେଇ ନଚେଇ କ୍ଷଣକ ପାଇଁ ସ୍ଥିର ହୋଇଗଲା । ତା'ପରେ ସେ ଆଉରି ସିଧାକି ଠିଆ ହେଲା । ଏହି ସମୟରେ କଙ୍କିଟି ହାତ ପାପୁଲି ଉପରେ ବ୍ୟାୟାମକାରୀ ଠିଆ ହେଲା ପରି ଦେଖାଯାଉଥାଏ । କଙ୍କିଟି କେବଳ ମୁଣ୍ଡ ତଳକୁ କରି ଠିଆ ହୋଇ ଥାଏ । କିଛି ସମୟ ପରେ ନିଜର ତଳିପେଟକୁ ଟିକିଏ ଟେକି ଦେଇ ଦେହର ଅଣ୍ଡାନଳୀଟିକୁ ଧୀରେ ଧୀରେ ଗଛର



ଦେହରେ ତଳକୁ ନୁଆଁଇଲା ଓ କଣା କରିବାକୁ ଲାଗିଲା । କଙ୍କି ଦେହରେ ଥିବା ଅଣ୍ଡାନଳୀଟି ଘୋଡ଼ା ବାଳଭଳି ଖୁବ୍ ପତଳା ଏବଂ ଲର୍ଭା ଗଛ ଗଣ୍ଡିରେ ୩-୪ ସେଣ୍ଟିମିଟର ଭିତରକୁ ପଶି ଯାଇଥାଏ, ଏହି କାର୍ଯ୍ୟଟି ସେତେ ସହଜ ନୁହେଁ ! ଯଦି ଗଛର ଗଣ୍ଡି ଝାଉଁ କିମ୍ବା ଲେମ୍ବୁ ଗଛର କାଠ ପରି ଶକ୍ତ ନୁହେଁ ତେବେ ୫-୧୦ ମିନିଟ୍ ଭିତରେ ଅଣ୍ଡାନଳୀଟି ଲର୍ଭା ପର୍ଯ୍ୟନ୍ତ ଯାଇ ନଳୀ ଭିତର ଦେଇ ଅଣ୍ଡା ଛାଡ଼ିଥାଏ । ଯଦି ଗଛର ଗଣ୍ଡି ଶକ୍ତ, ତେବେ ଏହି କାମଟି କରିବାକୁ ଅଧ ଘଣ୍ଟାଏରୁ ଘଣ୍ଟାଏ ପର୍ଯ୍ୟନ୍ତ ସମୟ ଲାଗେ ।

ଅବଶ୍ୟ ଆଶ୍ଚର୍ଯ୍ୟ କଥା, କିଭଳି ଏହି ପତଳା, ସୂକ୍ଷ୍ମ ଅଣ୍ଡା ନଳୀଟି ଗଛର ଗଣ୍ଡି ଭିତରକୁ କଣା କଲା । ଆହୁରି ବିସ୍ମୟକର କଥା ହେଲା ଯେ, କଙ୍କିଟି ଲର୍ଭା ପାଇଲା କିପରି ? ଏହା ଯେ ଗଛର ଗଣ୍ଡି ଭିତରେ ଥିଲା । କଙ୍କି କେବଳ ଲର୍ଭାର ସନ୍ଧାନ ପାଇନି, ଏପରିକି ସେ ସଠିକ୍ ଭାବେ ଜାଣି ପାରିଛି, କେଉଁ ଅବସ୍ଥାରେ ସେ ରହିଛି । ତେଣୁ ସେ ନିର୍ଭୁଲଭାବେ ନିଜର ଅଣ୍ଡାନଳୀଟିକୁ ଲର୍ଭା ଭିତରକୁ ଭର୍ତ୍ତିକରି ଦେଇଛି । ସ୍ଥାନ ନିରୂପଣ କରିବାରେ ସେ ଗୋଟିଏ ମିଲିମିଟର ମଧ୍ୟ ଭୁଲ କରି ନାହିଁ ।

ଏହି ଭଳି କଙ୍କିଟି ଯେତେଥର ଅଣ୍ଡା ଦେଉନା କାହିଁକି, ପ୍ରତିଥର ଖୁବ୍ ସଠିକ୍ ରୂପେ କାର୍ଯ୍ୟ କରେ । ତୁମେମାନେ ପ୍ରଶ୍ନ କରି ପାର କିପରି ସେ ଏସବୁ କରି ପାରୁଛି ? ବୈଜ୍ଞାନିକମାନେ ମଧ୍ୟ ଆଗରୁ ନିଜକୁ ଏହି ପ୍ରଶ୍ନ ପଚାରି ସାରିଛନ୍ତି । ମାତ୍ର



ଛୋଟ ପେଟା କଙ୍କି ଓ କୋବି ପୋକ

ଯେ ପର୍ଯ୍ୟନ୍ତ ସେମାନେ କଙ୍କିର ନିଶ କିପରି କାର୍ଯ୍ୟ କରୁଛି ତାହା ଭଲ ଭାବେ ଜାଣି ନଥିଲେ, ସେ ପର୍ଯ୍ୟନ୍ତ ଏହି ପ୍ରଶ୍ନର ଉତ୍ତର ଦେଇପାରି ନଥିଲେ ।

ତୁମେମାନେ ଯଦି କେବେ ଏ ଭଳି କଙ୍କିକୁ ଜଙ୍ଗଲରେ ଦେଖିବ ମନଯୋଗ ଦେଇ ଲକ୍ଷ୍ୟ କରିବ କିପରି ତା'ର ନିଶ କାର୍ଯ୍ୟ କରୁଛି । ତୁମେ ଦେଖି ପାରିବ, ତା'ର ନିଶ ଲର୍ଭା ଖୋଜିବାରେ ସବୁଠୁ ବେଶି ସାହାଯ୍ୟ କରୁଛି ।

ମନେକର ଗନ୍ଧ ବାରି କଙ୍କିଟି ଠିକ୍ ଜଲ ଗଛର କେଉଁ ଜାଗାରେ ବିନ୍ଧୁଡ଼ି ବା ଶିଙ୍ଗଥିବା କାଠପୋକର ଲର୍ଭା ରହିଛି । ଏହା କେଉଁ ଅବସ୍ଥାରେ ଓ ତା ଦେହରେ ଅଣ୍ଡାନଳୀରୁ ଅଣ୍ଡା ଦେବାକୁ ହେଲେ କେଉଁ ଜାଗାରେ ଗାତ କରିବାକୁ ପଡ଼ିବ, ସେ କଥା କଙ୍କିଟି ଜାଣିଲା କିପରି ? ବୈଜ୍ଞାନିକମାନଙ୍କ ମତରେ ଏ କ୍ଷେତ୍ରରେ ଘ୍ରାଣଶକ୍ତି ହିଁ ସଠିକ୍ ରୂପେ ସବୁକଥା କରାଇବାରେ ସାହାଯ୍ୟ କରୁଛି । ଅବଶ୍ୟ, ତା'ର ଏହି ଘ୍ରାଣଶକ୍ତି ସ୍ୱତନ୍ତ୍ର ଅଟେ । ବୈଜ୍ଞାନିକମାନେ ତାହାର ନାମ ରଖିଛନ୍ତି "ସ୍ପର୍ଶରାସାୟନିକ (ଟପୋକେମିକାଲ୍)" ଅନୁଭୂତି । ଏହି ଅନୁଭୂତି ବଳରେ କୀଟ ପତଙ୍ଗମାନେ ନିଜର ଲକ୍ଷ୍ୟ ସ୍ଥଳକୁ ନଛୁଇଁ ଶୁଙ୍ଘ ବା ନିଶ ସାହାଯ୍ୟରେ କେବଳ ଗନ୍ଧ ବାରି ଭିତରେ ଥିବା ଜିନିଷର ଆକାର ପ୍ରକାର ନିର୍ଣ୍ଣୟ କରନ୍ତି ନାହିଁ, ଏପରିକି ଜିନିଷଟିର ଦେହ ମସୃଣ କିମ୍ବା ଖସଖସ ତାହା ମଧ୍ୟ ସେମାନେ ଜାଣି ପାରନ୍ତି । ଏହି ଗନ୍ଧ, ଏଫିଆଲ୍‌ଟ କଙ୍କି କିମ୍ବା ରିସ୍‌ସା କଙ୍କିଙ୍କୁ ଅଣ୍ଡା ଦେବା ପାଇଁ ସଠିକ୍ ଜାଗାକୁ ବାଟ କଢ଼ାଇ ଆଣେ ଏବଂ ଆଉ କ'ଣ ସବୁ କରିବାକୁ ପଡ଼ିବ ତାହା ମଧ୍ୟ ଜଣାଇ ଦେଇଥାଏ ।

ଏଫିଆଲ୍‌ଟ ଓ ରିସ୍‌ସା କଙ୍କି କେବଳ ପାଇନ୍ ଜାତୀୟ ଜଙ୍ଗଲରେ ଦେଖିବାକୁ ମିଳନ୍ତି । ସବୁବେଳେ ମଧ୍ୟ ଦେଖିବାକୁ ମିଳନ୍ତି ନାହିଁ । ପ୍ରାୟ ବାରମ୍ବାର ଏମାନଙ୍କର ବଂଶଧର ଦେଖିବାକୁ ମିଳନ୍ତି – "ଆପାନ୍ତିଲେସ୍" କିମ୍ବା ଛୋଟ ପେଟା କଙ୍କି । ଏହାର ତଳିପେଟ ଅତ୍ୟନ୍ତ ଛୋଟ ହୋଇଥିବାରୁ ଏହାକୁ ଛୋଟ ପେଟା କଙ୍କି ବୋଲି କହନ୍ତି । ଛୋଟ ହଳଦିଆ ଗୋଡ଼ଥିବା ଏହି କଙ୍କିଟି ଦେଖିବାକୁ ଭାରି ସୁନ୍ଦର ହୋଇଥାଏ । ସେ ଖୁବ୍ ଶୀଘ୍ର କୋବିପତ୍ର ଉପରେ ଦୌଡ଼େ । କୋବି ପୋକ ହେଉଛି ତା'ର ଶିକାର । ସେ ଲୁଚେ ନାହିଁ ତେଣୁ ତାକୁ ପାଇବା କଷ୍ଟକର ନୁହେଁ । ଛୋଟ ପେଟା କଙ୍କିର ବିପଦ ରହିଛି, ଯାହାକି ଏଫିଆଲ୍‌ଟ ଓ ରିସ୍‌ସାଙ୍କୁ ଅଜଣା । କୋବି ପୋକ ଦେହରେ ଡେଇଁ, ଅଣ୍ଡାନଳୀକୁ ତା ଭିତରକୁ ପୂରାଇବାକୁ ଏବଂ ବାହାର କରି ଆଣି ପୁଣି ପୂରାଇବାକୁ ତାକୁ ୧-୨ ସେକେଣ୍ଡ ଲାଗିଥାଏ । ଏହି ସମୟରେ କୋବି ପୋକ ବି ଶୋଇ ରହେ ନାହିଁ । ତା'ର ମୃତ୍ୟୁ ସମୟ ପାଖେଇ ଆସୁଛି ଜାଣି ସେ କଡ଼



ଲେଉଟାଏ ଓ ପାଟିରୁ ସବୁଜ ଫେଣ ବାହାର କରେ । କଙ୍କି ଦେହରେ ଏହି ସବୁଜ ଫେଣରୁ ଟିକିଏ ଲାଗିଗଲେ କଙ୍କିଟି ମରିଯିବ , ତେଣୁ ସେ ମଧ୍ୟ ବୁଲି ପଡ଼ିବାକୁ ଚେଷ୍ଟା କରେ । ଅନେକ ସମୟରେ କଙ୍କିଟି ବିଜୟୀ ହୁଏ ଓ କୋବି ପୋକ ହାରିଯାଏ ।

କଙ୍କି କୋବି ପୋକ ଦେହରେ ଅଣ୍ଡା ଦେଇ ଗଲିଯିବାର କିଛି ସମୟ ପରେ ପୋକଟି କ୍ରମଶଃ କମ୍‌ଜୋର ହୋଇ ପଡ଼େ ଓ ତା'ର ଦେହର ରଙ୍ଗ ବଦଳି ଯାଏ । ପ୍ରଥମ କେତେଦିନ ଧରି ଏହି କୋବି ପୋକ ଅନ୍ୟ କୋବି ପୋକ ପରି ଦେଖାଯାଏ । ଅନ୍ୟ ଗୋଟିଏ କଙ୍କି କ'ଣ ପୁଣି ତା ଦେହରେ ଅଣ୍ଡା ଦେବା ପାଇଁ ଚାହିଁବ ? ନା , ଏହି କୋବି ପୋକ ପାଖକୁ ଗୋଟିଏ ହେଲେ କଙ୍କି ଆଉ ଆସନ୍ତି ନାହିଁ ।

ସେହି କୋବି ପୋକଟି ଆଡ଼କୁ ଦୃଷ୍ଟି ନଦେଇ ଛୋଟ ପେଟା କଙ୍କିମାନେ ସିଧାସଳଖ ଦୌଡ଼ି ଯାଆନ୍ତି , ସତେ ଯେପରି କୋବିପତ୍ର ଉପରେ କିଛି ନାହିଁ ।

ଅଳ୍ପଦିନ ପୂର୍ବେ ବୈଜ୍ଞାନିକମାନେ ଜାଣିବାକୁ ପାଇଲେ ଯେ , କୋବି ପୋକ ଦେହରେ ଅଣ୍ଡା ଦେଇ ଛୋଟ ପେଟା କଙ୍କିଟି ଅନ୍ୟ କଙ୍କିଙ୍କ ପରି ସତେ ଯେପରି ତା ଦେହରେ କିଛି ଲେଖି ଦେଇ ଯାଏ । ଆମ ଭାଷାରେ ଅନୁବାଦ କଲେ ସେହି ଲେଖାର ଅର୍ଥ ହେଇ "ଏଠି ଜାଗା ନାହିଁ ! ଅନ୍ୟଠି ଦେଖ !" ଖୁବ୍ ତୀବ୍ର ଗନ୍ଧରେ ଏହା ଲେଖାଥାଏ ।

## "ଯିଏ ପାରିବ , ବଞ୍ଚାଅ !"

ଆମେ ଏବେ ଯେଉଁ ବିଷୟରେ କହିବା , ସେହି ଉଦ୍ଭାବନଟି ଆପାତତଃ ଅଳ୍ପ ଦିନ ତଳେ ହୋଇଥିଲା । ଏହାର ମାନେ ନୁହେଁ ଯେ ତାହା ଦୁଃସାଧ୍ୟ , ଅନେକ କଷ୍ଟସାଧ୍ୟ ଥିଲା । ଉଦ୍ଭାବନ ଏହା ପୂର୍ବରୁ ହୋଇ ପାରିଛି । ତେବେ ଏହି ଉଦ୍ଭାବନଟି ଖୁବ୍ ବିଳମ୍ବରେ ହେବାର କାରଣ ହେଉଛି , ମାଛମାନଙ୍କର ଘ୍ରାଣଶକ୍ତି ଅଛି କି ନାହିଁ , ସେ ସମ୍ବନ୍ଧରେ ମଣିଷ ପୂର୍ବରୁ କେବେ ଚିନ୍ତା କରିନଥିଲା । ପାଣି ଭିତରେ କୌଣସି ଜିନିଷକୁ ଶୁଂଘିବା ସମ୍ଭବ ବା କିପରି ? ମାତ୍ର ସତକଥା କେବେ ଲୁଚି ରହେ ନାହିଁ । ଶୀଘ୍ର ହେଉ ବା ବିଳମ୍ବରେ ହେଉ ତାହା ମଣିଷର ଧ୍ୟାନ ଆକର୍ଷଣ କରେ , ଏବଂ ବାଧ୍ୟକରେ ସତ୍ୟର ସନ୍ଧାନ କରିବାକୁ ।

ମାଛମାନଙ୍କର ଘ୍ରାଣଶକ୍ତି ଅଛି କି ନାହିଁ , ଏ ବିଷୟରେ ସର୍ବପ୍ରଥମେ କିଏ ଗବେଷଣା ଆରମ୍ଭ କରିଥିଲେ କହିବା କଷ୍ଟ । ଏମିତି ହୋଇ ପାରିଥାଏ ଯେ , କୌଣସି ସମ୍ମାନୀୟ ବୈଜ୍ଞାନିକ କିମ୍ବା କେହି ଜଣେ ଆଗ୍ରହୀ ଯୁବକ ଏହି ବିଷୟରେ ଅନୁଧ୍ୟାନ ଆରମ୍ଭ କରିଥିଲେ , ଅଥବା ସାରା ଜୀବନ ମାଛ ଧରୁଥିବା କୌଣସି କେଉଟ ହୁଏତ ପ୍ରଥମେ ପ୍ରମାଣ କରିଥିବ ଯେ , ମାଛମାନେ ପରସ୍ପର ମଧ୍ୟରେ ଖବର ଦିଆନିଆ କରନ୍ତି । ସେ ଯାହା ହେଉନା କାହିଁକି , ଗବେଷଣା ଆରମ୍ଭର ପ୍ରଥମ ଦିନରୁ ବୈଜ୍ଞାନିକମାନେ ଏହି ଆଶ୍ଚର୍ଯ୍ୟ ବସ୍ତୁର ଉଦ୍ଭାବନକୁ ଅପେକ୍ଷା କରୁଥିଲେ ।

ମାଛ ଜୀବନର ବେଶିଭାଗ ନିଜ ଜନ୍ମସ୍ଥାନରୁ ଦୂରରେ ରହୁଥିବା ବେଳେ ମଧ୍ୟ ଯାଆଁଳ ଛାଡ଼ିବା ସମୟରେ ପୁଣି ଖୋଜି ଖୋଜି ପୂର୍ବସ୍ଥାନକୁ କିପରି ଫେରିଆସି ପାରନ୍ତି ? ବର୍ତ୍ତମାନ ଏହାର ଉତ୍ତର ମିଳିସାରିଛି !

ଭଲ ଭାବେ ଗବେଷଣା ଫଳରେ ଜଣାଗଲା ଯେ , ପ୍ରତ୍ୟେକ ନଦୀରେ ଏପରିକି ଗୋଟିଏ ନଦୀର ବିଭିନ୍ନ ଧାରରେ , ସ୍ୱତନ୍ତ୍ର ରାସାୟନିକ ପଦାର୍ଥ ରହିଥାଏ । ତେଣୁ ପ୍ରତ୍ୟେକ ଜାଗାରେ ପାଣିର ନିଜସ୍ୱ ଗନ୍ଧ ଥାଏ । କିନ୍ତୁ ପ୍ରଶ୍ନଟି ହେଲା : ପାଣିର ଏହି ଗନ୍ଧ କ'ଣ ଏତେ ଦୂରରୁ ମାଛଙ୍କୁ ନିଜର ଜନ୍ମସ୍ଥାନକୁ ଆକର୍ଷଣ କରେ ? ହଁ , ଜଣାଗଲା ମାଛଙ୍କର ଘ୍ରାଣଶକ୍ତି ଏତେ ତୀବ୍ର ଯେ ତାହା ସବୁଠାରୁ ଭଲ କୁକୁରକୁ ବି ବଳିଯାଏ । ଜେତେକ ଜୀବଙ୍କୁ ଛାଡ଼ିଦେଲେ ମାଛଙ୍କର ଘ୍ରାଣଶକ୍ତି ସବୁଠୁ ତୀବ୍ର ।

ଏ କଥା ଜାଣିଲା ପରେ , ଦୂର ଜାଗାକୁ ମାଛ ଗଲିଯାଇ ମଧ୍ୟ ପୁଣି କିପରି



ରୋହି ଜାତୀୟ ମାଛମାନେ

ନିଜର ରହିବା ସ୍ଥାନକୁ ଫେରିଆସେ, ତାହା ବୈଜ୍ଞାନିକମାନେ ବୁଝି ପାରିଲେ । ସେମାନେ ବୁଝି ପାରିଲେ ଯେ, ମାଛମାନଙ୍କ ପାଇଁ ଘ୍ରାଣଶକ୍ତି ହେଉଛି ସବୁଠୁ ବଡ଼ ଅନୁଭୂତି । ପରବର୍ତ୍ତୀ ପରୀକ୍ଷାରୁ ଜଣାଗଲା, ଯେ ଯଦି ମାଛଙ୍କୁ ଘ୍ରାଣଶକ୍ତି ବିହୀନ କରି ଦିଆଯାଏ, ତେବେ ସେମାନେ ଭୋକରେ ମରିଯିବେ । ଖାଦ୍ୟର ସ୍ୱରିପଟେ ପହଁରୁଥିଲେ ମଧ୍ୟ ସେମାନେ ତାହାକୁ ଘ୍ରାଣଶକ୍ତି ବିନା ପାଇ ପାରିବେ ନାହିଁ । ଯଦି ଗୋଟିଏ ମାଛର ଆଖିଦୁଇଟି ଫୁଟାଇ ଦିଆଯାଏ, ତେବେ ମଧ୍ୟ ସେ ଘ୍ରାଣଶକ୍ତି ସାହାଯ୍ୟରେ ଖାଦ୍ୟ ସହଜରେ ସଂଗ୍ରହ କରି ପାରିବ ।

ଘ୍ରାଣଶକ୍ତି ବଳରେ ମାଛମାନେ ପରସ୍ପରକୁ ଚିହ୍ନି ପାରନ୍ତି । ସେମାନେ କ'ଣ ଘ୍ରାଣଶକ୍ତିର ଭାଷା ବଳରେ ପରସ୍ପର ସହିତ କଥାବାର୍ତ୍ତା ହୁଅନ୍ତି ? ଜଣାଗଲା, ପ୍ରକୃତରେ କଥା ହୁଅନ୍ତି । ଏହି ଉଦ୍ଭାବନ ଆକସ୍ମିକ ଭାବେ ହୋଇଥିଲା ।

ଅଷ୍ଟ୍ରିଆର ପ୍ରସିଦ୍ଧ ବୈଜ୍ଞାନିକ କାର୍ଲ ଫ୍ରିଶ୍ ମାଛଙ୍କ ଉପରେ ଗବେଷଣା କରୁଥିବା ବେଳେ, ଥରେ ଗୋଟିଏ ରୋହି ଜାତୀୟ ମାଛର କାତିରୁ ଦୁଇ ତିନିଟି ଛଡ଼ାଇ, ତାକୁ ପାଣିରେ ଛାଡ଼ି ଦେଲେ । ହଠାତ୍ ପାଣି ଭିତରେ ଥିବା ଏହି ଜାତୀୟ ମାଛଙ୍କ ମଧ୍ୟରେ ଆତଙ୍କ ସୃଷ୍ଟି ହୋଇଗଲା । ଭୟରେ ମାଛ ସବୁ ଏଣେତେଣେ ତେଇଁ ପଳାଇଲେ । ଅନେକ ସମୟ ବିତିଗଲା ପରେ ମାଛମାନେ ପୁଣି ସେହି ସ୍ଥାନକୁ ଫେରିଲେ । ଏହି ରୋହି ଜାତୀୟ ମାଛସବୁକୁ ଏକ ସ୍ୱତନ୍ତ୍ର ସ୍ଥାନରେ ପୋଷା ଯାଇଥିଲା । ପ୍ରତିଦିନ ସେମାନଙ୍କୁ ଖାଇବାକୁ ଦିଆ ଯାଉଥିଲା ଏବଂ ସେମାନେ ସୁଖରେ ସେଠାରେ ପହଁରୁଥିଲେ । ଏସବୁ ସତ୍ତ୍ୱେ ମଧ୍ୟ ଏ ଭଳି ଘଟିଥିଲା ।

ଯେଉଁ ମାଛଟି ଦେହରୁ କାତି ଛଡ଼ାଇ ଦିଆଗଲା, ସେଇ ମାଛଟି କ'ଣ ଅନ୍ୟମାନଙ୍କୁ କିଛି କହିଥିଲା ? ଏହା ଯଦି ଅସମ୍ଭବ ମନେ ହେଉଥାଏ, ତେବେ ଅନ୍ୟ କୌଣସି ଉପାୟରେ ଘଟଣାର ବ୍ୟାଖ୍ୟା କରାଯାଇ ନପାରେ ।

ନିଜର ସନ୍ଦେହ ଦୂର କରିବାକୁ ଯାଇ କାର୍ଲ ଫ୍ରିଶ୍ ମାଛମାନେ ସେହି ସ୍ଥାନକୁ ଫେରିବା ପର୍ଯ୍ୟନ୍ତ ଅପେକ୍ଷା କଲେ । ତା'ପରେ ଗୋଟିଏ ମାଛକୁ ଧରିଆଣି ମାରିଦେଇ ପୁଣି ସେଇ ପାଣିରେ ଛାଡ଼ି ଦିଆଗଲା । କାରଣ ମଲା ମାଛଟି ତା ସାଙ୍ଗ ମାନଙ୍କୁ କିଛି କହି ପାରିବ ନାହିଁ! ମଲା ମାଛଟିକୁ ପାଣିକୁ ଫିଙ୍ଗି ଦେବାରୁ ଏଥର ମଧ୍ୟ ଅନ୍ୟ ମାଛମାନେ ଖୁବ୍ ଭୟଭୀତ ହୋଇଗଲେ! ସେମାନଙ୍କ ଉପରେ ମଲାମାଛର ପ୍ରଭାବ ପଡ଼ିଲା ନା କ'ଣ ? ସନ୍ଦେହ ମନରୁ ଯାଉନଥିଲେ ମଧ୍ୟ ମାଛଙ୍କର ବ୍ୟବହାର ବିଷୟରେ ଆଉ କିଭଳି ଚିନ୍ତା କରାଯାଇପାରେ ?

ମାତ୍ର ବୈଜ୍ଞାନିକ ଫ୍ରିଶ୍ ଅନୁମାନକରି କେତେକଥା ଠଉରେଇ ନେଲେ । ଭୟ ଦୂର ହେଲା ପରେ ମାଛ ସେଠାକୁ ପୁଣି ଫେରିବା ପର୍ଯ୍ୟନ୍ତ ସେ ଅପେକ୍ଷା କଲେ । ତା'ପରେ ମରି ଯାଇଥିବା ମାଛଟିକୁ ପାଣିରେ ଧୋଇ ମଇଳା ସେ ଆଇଁଷିଣିଆ ପାଣିକୁ ଛାଣି ପୁଣି ମାଛ ରହୁଥିବା ପାଣି ଭିତରକୁ ପକାଇ ଦେଲେ । ଏଥର ଆଶା କରାଯାଉଥିଲା ଯେ ମାଛ ଭୟଭୀତ ହେବେ ନାହିଁ । ମାତ୍ର ପୂର୍ବ ଦୁଇଥର ପରି ଏଥର ମଧ୍ୟ ମାଛମାନେ ଶଙ୍କିତ ହେବାକୁ ଲାଗିଲେ । ସେମାନଙ୍କର ଆଶଙ୍କା ପୂର୍ବ ଦୁଇଥର ଅପେକ୍ଷା କୌଣସି ଗୁଣରେ କମ୍ ନଥିଲା ।

ପ୍ରଶ୍ନର ଉତ୍ତର ଏଥର ମିଳିଲା : ମାଛଙ୍କୁ ଗନ୍ଧହିଁ ଭୟଭୀତ କରିଛି । ସତେ ଯେମିତି ଏହି ଗନ୍ଧ ତାକୁ କହିଛି – ପଳାଇ ଯାଅ, ଜୀବନ ବଞ୍ଚାଅ !

ପ୍ରଥମେ ଫ୍ରିଶ୍ ମାଛଟି ଦେହରୁ ଅଳ୍ପ କାତି ଛଡ଼ାଇ ଦେଇ ପାଣିରେ ଛାଡ଼ି ଦେଇଥିଲେ । ମାଛମାନଙ୍କ ଡରିବା ପାଇଁ ଏହା ଯଥେଷ୍ଟ ଥିଲା । ହେଲେ, ଏଥିରେ ଭୟ କରିବାର କ'ଣ ଥିଲା ? କେବଳ ମାଛ ଦେହରୁ କାତି କେତୋଟି କାଢି ନିଆଯାଇଥିଲା । କଥାଟା କିନ୍ତୁ ସତ । ଗନ୍ଧ ମାଛଙ୍କୁ ଭୟର ସଙ୍କେତ ଦିଏ । କାତି ଛାଡ଼ିଯିବା ପରେ ମାଛର ଚର୍ମ ଯଦି ଆଘାତ ପାଏ, ତେବେ ସ୍ୱାଭାବିକ ଭାବେ ମାଛ ଚର୍ମରେ ଥିବା ସ୍ୱତନ୍ତ୍ର କୋଷରୁ ଏହି ଗନ୍ଧ ବାହାରିଥାଏ ବା ବୈଜ୍ଞାନିକମାନଙ୍କ ଦ୍ୱାରା ଆଖ୍ୟା ଦିଆଯାଇଥିବା "ଆତଙ୍କିତ ପଦାର୍ଥ" ବା "ଭୀତ ପଦାର୍ଥ" ସାଧାରଣତଃ ପାଣିରେ ମିଶିଯାଏ । ଏହି ଆତଙ୍କିତ ପଦାର୍ଥ କେବଳ ରୋହି ଜାତୀୟ ମାଛ ନୁହେଁ, ଅନ୍ୟ ମାଛଙ୍କ ଦେହରୁ ମଧ୍ୟ ବାହାରିଥାଏ । ଉଦାହରଣ ସ୍ୱରୂପ, ଯଦି ଗୋଟିଏ ଗାର୍ଜନ ମାଛ ପାଇକ୍‌ମାଛ ପାଟିରେ ପଡ଼ିଯାଏ ତାହେଲେ ସେ ନିଶ୍ଚୟ ମରିବ । ଯେତେବେଳେ ପାଇକ୍‌ମାଛ ଗାର୍ଜନକୁ କାମୁଡ଼େ, ଗାର୍ଜନର ଦେହ





ରାମି ହୋଇ ଯାଏ । ଏହି ରମ୍‌ା ଜାଗାରୁ ପାଣି ସାରା ଆତଙ୍କର ସଙ୍କେତ ଛୁଟେ । ମାଛମାନଙ୍କୁ ଏହା କହେ : ପଳାଇ ଯାଅ , ନିଜକୁ ରକ୍ଷାକର !

ଯଦି ଗାର୍ଜନ ମାଛଟି ପାଇକ୍‌ମାଛ ପାଟିରୁ ଖସି ପଳାଇ ଆସିଲା , ତେବେ ମଧ୍ୟ ତା ଦେହରେ ଆଘାତର ଦାଗ ଥାଏ ଏବଂ ଏହି ଦାଗ ଫଳରେ ପାଣିରେ ଯେଉଁ "ବିପଦ ସଙ୍କେତ" ଛୁଟେ , ତାହା ମାଛଙ୍କୁ କହେ : ବିପଦ ଅଛି , ନିଜକୁ ରକ୍ଷା କର !



ପାଇକ୍‌ମାଛ

ଗନ୍ଧ ସାହାଯ୍ୟରେ ବିପଦର ସଙ୍କେତ କେବଳ ମାଛମାନେ ଦିଅନ୍ତି ନାହିଁ । ବାହୁଣୀବେଙ୍ଗର ଡିମ୍ବରୁ ବେଙ୍ଗଫୁଲର ଆବିର୍ଭାବ ହେଲା ମାତ୍ରେ , ଗନ୍ଧ ସାହାଯ୍ୟରେ କିପରି କଥାବାର୍ତ୍ତା କରିହେବ ତାହା ତାକୁ ଜଣାଥାଏ । ବେଙ୍ଗଫୁଲ ଯେଉଁ ଶବ୍ଦଟି ପ୍ରଥମେ ଉଚ୍ଚାରଣ କରେ ତାହା ହେଲା "ହେ ! ଯିଏ ପାରିବ , ବଞ୍ଚାଅ !"

କୌଣସି ଗୋଟିଏ ବେଙ୍ଗଫୁଲକୁ ଟିକିଏ ସାମାନ୍ୟ ଆଘାତ କଲେ କିମ୍ବା ତା ପାଇଁ ପାଣିରେ ଜାଣିଶୁଣି କୌଣସି ଅସୁବିଧା ସୃଷ୍ଟିକଲେ – ଉଦାହରଣ ସ୍ୱରୂପ ତା ଉପରେ ଟିକିଏ ଗୋଡ଼ ପକାଇଲେ , ହଠାତ୍ ପାଣି ଭିତରେ ବିପଦର ଖବର ଖେଳି ଯାଏ , ଅନ୍ୟ ସବୁ ବେଙ୍ଗଫୁଲ ପହଁରି ପଳାଇ ଯାଆନ୍ତି କିମ୍ବା ପଙ୍କରେ ଛପି ଯାଆନ୍ତି । କୋଡ଼ିଏ ମିନିଟ୍ ଅତିବାହିତ ହୋଇଗଲା ପରେ ପୁଣି ବେଙ୍ଗଫୁଲଗୁଡ଼ିକୁ ପୂର୍ବ ସ୍ଥାନରେ ଦେଖିବାକୁ ମିଳେ । ଏହାର ଅର୍ଥ ହେଲା : ପାଣିରେ ଆଉ "ବିପଦ ସଙ୍କେତଦାୟୀ ପଦାର୍ଥ" ନାହିଁ । ଏହି ପଦାର୍ଥର ଗନ୍ଧ ପାଣିରୁ ଉଡ଼ି ଗଲାଣି ।

ମୂଷାମାନେ ଯେଉଁ ଗନ୍ଧ ବା "ବିପଦ ସଙ୍କେତଦାୟୀ ଗନ୍ଧ" ଛାଡ଼ି ଯାଆନ୍ତି , ତାହା ମାଛ ଅପେକ୍ଷା ଦୀର୍ଘ ସମୟଧରି ଲାଗି ରହିଥାଏ । ଅନେକ ସମୟରେ ଦେଖିବାକୁ ମିଳେ : ମୂଷାଟିଏ ଯନ୍ତାରେ ପଡ଼ିବା ପରେ ଅନ୍ୟ ମୂଷା ଆଉ ସେ ଯନ୍ତାରେ ପଡ଼ନ୍ତି ନାହିଁ – ସତେ ଯେପରି କିଏ ସେମାନଙ୍କୁ ମନ୍ତ୍ର କରି ଦେଇଛି । ଯନ୍ତାଟାକୁ ଯେତେଥର ଧୋଇ ତା ଦେହରେ ସବୁଠୁ ସୁସ୍ୱାଦୁ ଖାଦ୍ୟ ବାନ୍ଧିଲେ ମଧ୍ୟ ମୂଷା ଆଉ ପଡ଼ିବେ ନାହିଁ । ଅନେକ ଦିନ ପରେ ଘଟଣା କ'ଣ ଜଣା ପଡ଼ିଲା : ମୂଷା ଯନ୍ତାରେ ପଡ଼ି ମରିବା ପୂର୍ବରୁ ଟୋପାଏ ତରଳ ଗନ୍ଧଯୁକ୍ତ ପଦାର୍ଥ ପକାଇ ଦେଇଯାଏ । ଏହି ତରଳ ପଦାର୍ଥ ଟୋପାକର ଗନ୍ଧ ଅନ୍ୟ ମୂଷାମାନଙ୍କୁ ସତର୍କ କରି କହେ "ସେଠାକୁ ଯାଅ ନାହିଁ – ମୃତ୍ୟୁ ସୁନିଶ୍ଚିତ" । ଏହି ଗନ୍ଧ କେବଳ ବିପଦର ଗନ୍ଧ ନୁହେଁ , ମୂଷା ଲାଗି ଏହା ମୃତ୍ୟୁର ସତର୍କବାଣୀ । ଦୀର୍ଘ ସମୟ ଧରି ଏହି ଗନ୍ଧ ଲାଗିରହେ ଏବଂ ମୂଷାମାନେ ବିପଦ ସ୍ଥାନକୁ ନଯିବା ପାଇଁ ଚେଷ୍ଟା କରନ୍ତି ।

ମୂଷାମାନେ ସତରେ ବିପଦକୁ ଅତିକ୍ରମ କରି ଯାଆନ୍ତି । ବେଙ୍ଗଫୁଲ ଭୟରେ ପଳାଇ ଯାଆନ୍ତି କିମ୍ବା ପଙ୍କ ଭିତରେ ଛପି ଯାଆନ୍ତି । ମାଛ ବିପଦ ସଙ୍କେତ ପାଇବା ମାତ୍ରେ ହଲଚଲ ହୁଅନ୍ତି ନାହିଁ , ଯଦି ତାଙ୍କ ଦେହରେ ନିଜକୁ ଲୁଗ୍ଉଲା ଭଳି ରଙ୍ଗ ରହିଥାଏ । ତା ନହେଲେ ହଠାତ୍ ପାଣି ଉପରକୁ ଡେଇଁ ପଡ଼ନ୍ତି ଅଥବା ପଳାଇ ଯାଆନ୍ତି । କିନ୍ତୁ କେତେକ ଜୀବଜନ୍ତୁ ଅଛନ୍ତି , ଯେଉଁମାନଙ୍କ ଉପରେ ବିପଦ ସଙ୍କେତର ପ୍ରଭାବ ଅନ୍ୟରୂପେ ପଡ଼ିଥାଏ ।

ଉଦାହରଣ ସ୍ୱରୂପ , ମଣିଷ ମହୁଫେଣା ଆଡ଼କୁ ଗଲେ , ସବୁ ମହୁମାଛି ଏକ ସମୟରେ କାହିଁକି ତା ଉପରେ ଆକ୍ରମଣ କରନ୍ତି ? ମହୁମାଛିର ଆକ୍ରମଣକୁ ଏକ ସ୍ୱାଭାବିକ ଘଟଣା ମନେକରି ଅନେକ ଦିନ ପର୍ଯ୍ୟନ୍ତ ଲୋକମାନେ ଏ ବିଷୟରେ ଚିନ୍ତା କରୁନଥିଲେ । ମହୁମାଛି ଆକ୍ରମଣ କରିବା ଆଗରୁ ବିଭିନ୍ନ ସ୍ଥାନରେ ଥାଆନ୍ତି



ଗାର୍ଜନ ମାଛମାନେ

ଏବଂ ମଣିଷ ଆସୁଥିବା କଥା ସବୁ ମହୁମାଛି ହୁଏତ ଦେଖି ପାରନ୍ତି ନାହିଁ । ଏହା ସତ୍ତ୍ୱେ ମଧ୍ୟ ଦରକାର ପଡ଼ିଲେ ଆବଶ୍ୟକ ଜାଗାରେ ସମସ୍ତେ ଏକଜୁଟ୍ ହୋଇ ଯାଆନ୍ତି । ଜଣାଗଲା ଯେ, ମହୁମାଛି କାହାକୁ ବିନ୍ଧିଲା ବେଳେ, ଏକ ଗନ୍ଧଯୁକ୍ତ ପଦାର୍ଥ ଛାଡ଼ିଦିଏ, ଯାହାର ଗନ୍ଧ ଅନ୍ୟ ମହୁମାଛିଙ୍କୁ ସତର୍କ କରାଇ କହେ : ହୁସିଆର ! ଶତ୍ରୁ ଆସୁଛି ! ଗନ୍ଧର ଭାଷା ଦ୍ୱାରା ଏହି ସତର୍କବାଣୀ ପାଇ ଅନ୍ୟ ସବୁ ମହୁମାଛି ତତ୍‌କ୍ଷଣାତ୍ ଆକ୍ରମଣରେ ଲାଗି ପଡ଼ନ୍ତି । ବିନ୍ଧିଲା ବେଳେ ମହୁମାଛିର ନାହୁଡ଼ ଶତ୍ରୁ ଚମଡ଼ାରେ ଲାଗିରହେ । ନାହୁଡ଼ ସହିତ ତା'ର ମୂଳ ଅଂଶ ଓ ଗ୍ରନ୍ଥି ଯେଉଁଠାରୁ ଗନ୍ଧଯୁକ୍ତ ତରଳ ପଦାର୍ଥ ବାହାରେ ସେ ସବୁ ମଣିଷ ଦେହରେ ଲାଗିରହେ । ବିନ୍ଧିଥିବା ମହୁମାଛିଟି ମରିଯାଏ, କିନ୍ତୁ ଶତ୍ରୁ ଦେହରେ ସେ ଛାଡ଼ି ଯାଏ ତା'ର ଗନ୍ଧ । ଶତ୍ରୁର କୁଆଡ଼େ ଆଉ ପଳାଇ ଯିବାର ବାଟ ନାହିଁ । ସେ ଦୌଡ଼ି ପଳାଇ ଯିବାକୁ ଚେଷ୍ଟା କଲେ, ମହୁମାଛି ତା'ର ପଛରେ ଦୌଡ଼ିବେ । ଆକ୍ରମଣର ନିର୍ଦ୍ଦେଶ ମହୁମାଛିଙ୍କ ମଧ୍ୟରେ ଦଶ ମିନିଟ୍ ପର୍ଯ୍ୟନ୍ତ ରହିଥାଏ । ବିରୁଡ଼ି କ୍ଷେତ୍ରରେ ମାତ୍ର ଗୋଟିଏ ବ୍ୟତିକ୍ରମ ଛଡ଼ା ଠିକ୍ ଏହି ପରି ଘଟିଥାଏ । ମହୁମାଛି ଭଳି ବିରୁଡ଼ି ନିଜ ନାହୁଡ଼ର ବିଷ ସହିତ ଗନ୍ଧଯୁକ୍ତ ପଦାର୍ଥ ଛାଡ଼ି ଦିଏ ନାହିଁ । ବିରୁଡ଼ି ବିନ୍ଧିବା ସଙ୍ଗେ ସଙ୍ଗେ ଶତ୍ରୁ ଉପରକୁ ଗନ୍ଧଯୁକ୍ତ ପଦାର୍ଥ ଛିଞ୍ଚି ଦିଏ । ଅନ୍ୟ ବିରୁଡ଼ିମାନେ ଏହି ଗନ୍ଧ ଅନୁଭବକରି ଓ ଗନ୍ଧରୁ ନିର୍ଦ୍ଦେଶ ପାଇ ଶତ୍ରୁ ଉପରେ ଆକ୍ରମଣ କରିବାକୁ ଆଗେଇ ଯାଆନ୍ତି ।


ବେଙ୍ଗପୁଲ

ପିମ୍ପୁଡ଼ି ମଧ୍ୟ "ବିପଦର ଗନ୍ଧ"ରୁ ଜାଣି ପାରେ । ଏହି ଗନ୍ଧ ଜାଣିପାରି କେତେକ ପିମ୍ପୁଡ଼ି ଗାତରେ ଛପି ଯାଆନ୍ତି କିମ୍ବା ନିଜର ଲାର୍ଭାକୁ ନେଇ ଦୌଡ଼ି ପଳାନ୍ତି । ଅନ୍ୟ କେତେକ ପିମ୍ପୁଡ଼ି "ବିପଦ ସଙ୍କେତ" ପାଇ ଆକ୍ରମଣ କରନ୍ତି । ସବୁଠୁ ରହସ୍ୟପୂର୍ଣ୍ଣ କଥାଟି ହେଲା ଯେ, ଆକ୍ରମଣକାରୀ ପିମ୍ପୁଡ଼ିଙ୍କ ପାଇଁ ବିପଦ ସଙ୍କେତ ଦୁଇଟି ପର୍ଯ୍ୟାୟରେ ସମ୍ପୂର୍ଣ୍ଣ ହୋଇଥାଏ : ପ୍ରଥମେ ଏହି ପିମ୍ପୁଡ଼ି ନିଜର ସାଥୀମାନଙ୍କୁ ଡାକେ ଓ ପରେ ଏକାଠି ଆକ୍ରମଣ କରିବାକୁ ନିର୍ଦ୍ଦେଶ ଦିଏ ।

ପିମ୍ପୁଡ଼ି ଯେଉଁ ବିପଦ ସଙ୍କେତ ଦିଏ ତେର ସେକେଣ୍ଡ ପରେ ତାହା ମାତ୍ର ଛଅ ସେଣ୍ଟିମିଟର ଦୂରରେ ପହଞ୍ଚି ମିଳେଇ ଯାଏ । ପଇଁତିରିଶ ସେକେଣ୍ଡ ପରେ ତାହା ଅନ୍ୟ ପିମ୍ପୁଡ଼ିମାନଙ୍କ ଉପରେ କୌଣସି ପ୍ରଭାବ ଆଉ ପକାଏ ନାହିଁ । ଯଦି ଏହି ସଙ୍କେତ ବାରମ୍ବାର ଦିଆ ନଯାଏ, ଜଣାଯାଏ ଯେ, କୌଣସି ବଡ଼ ବିପଦ ନାହିଁ କିମ୍ବା ବିପଦ ସଙ୍କେତ ମିଥ୍ୟା ହୋଇ ଥାଇପାରେ । ଅଳ୍ପ ସମୟ ଲାଗି ଏଭଳି ସଙ୍କେତ ଦିଆଯିବା ଆକସ୍ମିକ କଥା ନୁହେଁ : କାରଣ ପିମ୍ପୁଡ଼ି ଗାତରେ ସର୍ବଦା କିଛି ନା କିଛି କାମ ଚାଲିଥାଏ । ମନେକର, ଗୋଟିଏ ଅଜଣା ପିମ୍ପୁଡ଼ି ଅନ୍ୟ କେଉଁଠୁ ଆସିଲା । ଛଅ ସେଣ୍ଟିମିଟର ଦୂରରେ ଥିବା ପିମ୍ପୁଡ଼ିମାନେ ଅଜଣା ପିମ୍ପୁଡ଼ିଟି ସହିତ ଉଚିତ୍ ପଦକ୍ଷେପ ନେଇ ପାରନ୍ତି । ଏଥି ପାଇଁ ଗାତରେ ଥିବା ସବୁ ପିମ୍ପୁଡ଼ି ଏକାଠି ହେବା ଦରକାର ନାହିଁ । ଯଦି ପ୍ରକୃତରେ ବଡ଼ ବିପଦ ଆସେ ତେବେ ଅନ୍ୟ ପିମ୍ପୁଡ଼ିମାନେ ମଧ୍ୟ ବିପଦ ସଙ୍କେତ ଦେବାକୁ ଆରମ୍ଭ କରି ଦିଅନ୍ତି । ଏ ଭଳି କ୍ଷେତ୍ରରେ ବିପଦର ଗନ୍ଧ ବଢ଼ିଯାଏ ଓ ଏହି ଗନ୍ଧ ପିମ୍ପୁଡ଼ି ଗାତର ଚାରିଆଡ଼େ ଖେଳିଯାଏ । ସବୁ ପିମ୍ପୁଡ଼ି ଏକତ୍ର ହେବାକୁ ଏହା ସଙ୍କେତ ଦିଏ । ଗନ୍ଧର ସ୍ୱତନ୍ତ୍ର ଭାଷାରୁ ମଣିଷ ଅନେକ "ଶବ୍ଦ" ଜାଣି ପାରିଛି । ଜାଣି ପାରିଛି ଯେ, ଏହି ଭାଷା ଜୀବଜନ୍ତୁଙ୍କ ଜୀବନରେ


ମୂଷା

ଏକ ପ୍ରଧାନ ଭୂମିକା ଗ୍ରହଣ କରିଥାଏ । ପ୍ରକୃତରେ ସବୁ ଜୀବଜନ୍ତୁଙ୍କ ପକ୍ଷରେ ଗନ୍ଧର ସ୍ୱତନ୍ତ୍ର ଭାଷାର ଗୁରୁତ୍ୱ ଏକା ନୁହେଁ : କେତେକ ଜୀବଙ୍କ ପାଇଁ ଏହି ଗନ୍ଧର ଭାଷାର ମହତ୍ତ୍ୱ ଅନ୍ୟମାନଙ୍କ ତୁଳନାରେ ବେଶି ହେଲା ବେଳେ ଆଉ କେତେକଙ୍କ ପାଇଁ ତାହା ସେତେ ମହତ୍ତ୍ୱପୂର୍ଣ୍ଣ ହୁଏ ନାହିଁ ।

ସେ ଯାହା ହେଉ ନା କାହିଁକି ଗନ୍ଧର ସ୍ୱତନ୍ତ୍ର ଭାଷା ଅଛି । ଜୀବଜନ୍ତୁ ଏହି ଭାଷା ବ୍ୟବହାର କରନ୍ତି ଓ ପରସ୍ପରକୁ ଉତ୍ତମ ରୂପେ ବୁଝି ପାରନ୍ତି ।

# ଦ୍ୱିତୀୟ ଭାଗ

# ଶବ୍ଦ ଆଉ ସଂଗୀତର ଦୁନିଆ

## ଟେଲିଫୋନ୍ ପାଖରେ କାନକଟାଙ୍କ ଭିଡ଼

ସୋଭିଏତ୍ ଶିଶୁ ସାହିତ୍ୟିକ ଚୁକୋଭ୍‌ସି ଗୋଟିଏ କବିତା ଲେଖିଥିଲେ । କବିତାର ନାମଟି ହେଲ "ଟେଲିଫୋନ୍" । ଏହି କବିତାଟିରୁ ଦୁଇଟି ଧାଡ଼ି ଏ ଦେଶର ସବୁ ପିଲ ମନେ ରଖିଥାଆନ୍ତି । ସେହି କବିତା ଧାଡ଼ି ଦୁଇଟି ହେଲ :

"ଟେଲିଫୋନ୍ ମୋର ଉଠିଲ ବାଜି ।
— କିଏ କହୁଛି ? — ହାତୀ !"

ହାତୀ କଥାବାର୍ତ୍ତା ହୋଇ ପାରନ୍ତି — ଏକଥା ମୁଁ ଜାଣେ ନାହିଁ । କିନ୍ତୁ ଝିଣ୍ଡିକା ଟେଲିଫୋନ୍‌ରେ କଥା ହୋଇ ପାରେ ବୋଲି ମୁଁ ଜାଣିଛି । ସେମାନେ ଅବଶ୍ୟ ଟେଲିଫୋନ୍‌ର ରିସିଭର ଉଠାଇ ନମ୍ବର ଘୁରେଇ କଥାବାର୍ତ୍ତା ହୁଅନ୍ତି ନାହିଁ । ତେବେ ସେମାନେ ଟେଲିଫୋନ୍‌ରେ କଥାବାର୍ତ୍ତା କରିବାର ସୁଯୋଗ ପାଇଲେ, ନିଶ୍ଚିୟ କଥାବାର୍ତ୍ତା ହୁଅନ୍ତେ ।

ଝିଣ୍ଡିକାର ଝିଁ ଝିଁ ଶବ୍ଦ ମଣିଷ ସର୍ବଦା ଶୁଣି ଆସିଛି । କିନ୍ତୁ ଝିଣ୍ଡିକା କାହିଁକି ଏଭଳି କରେ ମଣିଷ ସେ କଥା କେବେହେଲେ ଚିନ୍ତା କରି ନଥିଲ । ସେ ଭାବୁଥିଲ, ଝିଣ୍ଡିକାଗୁଡ଼ାଙ୍କର କିଛି କାମ ନାହିଁ, ତେଣୁ ରଡ଼ି ଛାଡ଼ୁଛନ୍ତି ।

ପ୍ରକୃତି ବିଷୟରେ ମଣିଷ ଅଧିକ ଜାଣିବା ସଙ୍ଗେ ସଙ୍ଗେ ଅନେକ ଜିନିଷ ପ୍ରତି ତା'ର ଧାରଣା ସ୍ପଷ୍ଟ ହୋଇଗଲ । ସେ ଜାଣି ପାରିଲ ଯେ, କର୍ମହୀନ ହୋଇଥିବାରୁ ଏବଂ ସୁଖରେ ଦିନ ବିତାଉଥିବାରୁ ଝିଣ୍ଡିକା ଝିଁ ଝିଁ ଶବ୍ଦ କରେ ନାହିଁ । ସୁଖରେ ଯଦି ତା'ର ଦିନ କଟୁଥାନ୍ତା, ତେବେ ସେ କୌଣସି ଶବ୍ଦ ନକରି ଚୁପ୍ ରହନ୍ତା । ବେଳେବେଳେ ଝିଁ ଝିଁ ଝଙ୍କାର ତୋଳିବା ଦ୍ୱାରା ଝିଣ୍ଡିକାକୁ ଜୀବନ ବଳି ଦେବାକୁ ପଡ଼େ । ସବୁଜ ଘାସରେ ଝିଣ୍ଡିକାର ସବୁଜ ରୂପକୁ ଚିହ୍ନାର କରୁଥିବା ଅବସ୍ଥାରେ ଆମେ ଦେଖିବାକୁ ପାଏ ନାହିଁ, ମାତ୍ର ଝିଁ ଝିଁ ଶବ୍ଦ ଶୁଣିପାରେ । ଏହାର ଅର୍ଥହେଲ କୌଣସି ଜିନିଷ ବା କେହି ତାକୁ ଏପରି ଶବ୍ଦ କରିବାକୁ ବାଧ୍ୟ କରୁଛି । ଜଣା ପଡ଼ିଲ ଯେ, କେବଳ ପୁରୁଷ ଝିଣ୍ଡିକା ଏ ଭଳି ଶବ୍ଦ କରେ । କେତେକ ବୈଜ୍ଞାନିକ ମତ ଦେଲେ ଯେ ଝିଁ ଝିଁ ଶବ୍ଦ କରି ପୁରୁଷ ଝିଣ୍ଡିକା ତା'ର ସ୍ତ୍ରୀ ସାଥୀକୁ ଡାକେ । ମାତ୍ର ଅନ୍ୟ ବୈଜ୍ଞାନିକମାନେ ଏ କଥାକୁ ବିଶ୍ୱାସ କଲେ ନାହିଁ । ତେଣୁ ଝିଣ୍ଡିକା

ଝିଣ୍ଡିକାମାନେ

ବଡ଼ ଗୋଡ଼ିଆ ଝିଣ୍ଡିକା



ହୁହୁର ମୁହାଁ ଝିଣ୍ଟିକା



କଥା କହେ କି ନାହିଁ, ଟେଲିଫୋନ୍ ଜରିଆରେ ତାହା ପରୀକ୍ଷା କରିବାକୁ ବୈଜ୍ଞାନିକମାନେ ସ୍ଥିର କଲେ । ଯେତେବେଳେ କି ଝିଣ୍ଟିକାମାନେ ଟେଲିଫୋନ୍‌ରେ କଥାବାର୍ତ୍ତା ହେଲେ, ଏହି ପରୀକ୍ଷା ଜରିଆରେ ବୈଜ୍ଞାନିକମାନେ ଜାଣିବାକୁ ଚାହିଁଲେ ଯେ, ସ୍ତ୍ରୀ ଝିଣ୍ଟିକା ନିଜ ବନ୍ଧୁଟିର ଗୀତ ଶୁଣିପାରେ କି ନାହିଁ, ଯଦି ପାରେ ତା ହେଲେ ତା'ର ପ୍ରଭାବ କିପରି ତା ଉପରେ ପଡ଼େ । ସ୍ତ୍ରୀ ଝିଣ୍ଟିକା ଗୀତ ଶୁଣେ ଓ ତା ଉପରେ ଏହି ଗୀତର ପ୍ରଭାବ ପଡ଼େ ଏବଂ ସେଥି ପାଇଁ ପୁରୁଷ ଝିଣ୍ଟିକା ତା'ର ସ୍ତ୍ରୀ ସାଙ୍ଗ ଲାଗି ଗୀତ ଗାଏ—ଏମିତି ହୁଏ ବୋଲି ଯେଉଁ ବୈଜ୍ଞାନିକମାନେ ବିଶ୍ୱାସ କରୁଥିଲେ, ସେମାନଙ୍କର ଧାରଣା ଠିକ୍ । ଯଦି ପରୀକ୍ଷା ଦ୍ୱାରା ସ୍ତ୍ରୀ ଝିଣ୍ଟିକାର ବ୍ୟବହାରରୁ ଜଣାପଡ଼େ ଯେ, ତାକୁ ପୁରୁଷ ଝିଣ୍ଟିକାର ଝଙ୍କାର ଭଲ ଲାଗୁଛି, ତାହା ହେଲେ ବୁଝାପଡ଼ିବ, ଝିଣ୍ଟିକା ପରସ୍ପର ମଧ୍ୟରେ "କଥା ହୁଅନ୍ତି" ।

ଗୋଟିଏ କୋଠରୀ ଭିତରେ ଟେବୁଲ ଉପରେ ଝିଣ୍ଟିକାଟିକୁ ରଖିଦେଇ ତା ଆଗରେ ଗୋଟିଏ ଛୋଟ ମାଇକ୍ରୋଫୋନ୍ ରଖି ଦିଆଗଲା । ଏହି ମାଇକ୍ରୋଫୋନ୍‌ଟି ଦେଖିବାକୁ ଅବିକଳ ଟେଲିଫୋନ୍ ରିସିଭର ଭଳି । ଅନ୍ୟ ଗୋଟିଏ କୋଠରୀରେ ମାଇକ୍ରୋଫୋନ୍ ରିସିଭର ରଖି ଗୋଟିଏ ସ୍ତ୍ରୀ ଝିଣ୍ଟିକା ଛାଡ଼ି ଦିଆଗଲା ।

କିଛି ସମୟ ବିତିଗଲା ପରେ ପୁରୁଷ ଝିଣ୍ଟିକାଟି କୋଠରୀ ସହିତ ଅଭ୍ୟସ୍ତ ହୋଇ ଗୀତ ଗାଇବାକୁ ଲାଗିଲା । ଅବଶ୍ୟ ସେ ଜାଣିପାରୁ ନଥାଏ ଯେ, ସେ ଘାସବଣ ଭିତରେ ନାହିଁ, ଗବେଷଣାକକ୍ଷ ଭିତରେ ତାକୁ ରଖି ଦିଆଯାଇଛି ଏବଂ ସମ୍ଭବତଃ ପାଖରେ କେଉଁଠି ସ୍ତ୍ରୀ ଝିଣ୍ଟିକାଟି ତାକୁ ଶୁଣୁ ଅଛି । ପୁରୁଷ ଝିଣ୍ଟିକାଟି ଝିଁ ଝିଁ ଶବ୍ଦକରି ଗୀତ ଗାଇଲା ଓ ଏହି ଗୀତରୁ ସ୍ୱରଯନ୍ତ୍ର ସାହାଯ୍ୟରେ ଅନ୍ୟ କୋଠରୀରେ ଥିବା ସ୍ତ୍ରୀ ଝିଣ୍ଟିକା ପାଖରେ ପହଞ୍ଚିଲା । ଝିଣ୍ଟିକାର ଝିଁ ଝିଁ ଗୀତକୁ ମଣିଷ ବୁଝିଲା ଭଳି ଭାଷାକୁ କିପରି ଅନୁବାଦ କରି ହେବ କେହି ଜାଣନ୍ତି ନାହିଁ । ଏହାକୁ ଅନୁବାଦ କରିବା ସମ୍ଭବ ନୁହେଁ । ମାତ୍ର ସ୍ତ୍ରୀ ଝିଣ୍ଟିକାର ଭାବଭଙ୍ଗୀ ଲକ୍ଷ୍ୟ କରି ଜଣାଗଲା ଯେ, ଏହି ଗୀତ ତା ପାଇଁ ହିଁ ବୋଲା ଯାଉଛି । ଅନୁମାନ କରି ଅନୁବାଦ କଲେ ଏହି ଗୀତର ଅର୍ଥ ହେଲା "ମୁଁ ଏଇଠି, ମୁଁ ଏଇଠି ଅଛି" ।

ସ୍ତ୍ରୀ ଝିଣ୍ଟିକା କଥା କହି ଜାଣେ ନାହିଁ, ଏଭଳିକି ଝିଣ୍ଟିକାଙ୍କ ଭାଷାରେ ମଧ୍ୟ । ଯଦି ପାରୁ ଥାଆନ୍ତା, ନିଶ୍ଚୟ କିଛି ନା କିଛି କହି ଦିଅନ୍ତା । କିନ୍ତୁ କିଛି କହି ପାରୁ ନାହିଁ, ତେଣୁ କାର୍ଯ୍ୟରେ ଦେଖାଇବାକୁ ପଡ଼ିବ । ତେଣୁ ସେ ଗୀତ ବାହୁଥିବା ଜାଗାକୁ ଗଲା । କଳା ଟେଲିଫୋନ୍ ରିସିଭରର ଗୋଟିଏ ଅଂଶରୁ ଏହି ଶବ୍ଦ ଲହରି ଭାସି ଆସୁଥାଏ । ରିସିଭର ଓ ପୁରୁଷ ଝିଣ୍ଟିକାଟା ମଧ୍ୟରେ କୌଣସି ସାମଞ୍ଜସ୍ୟ ନାହିଁ । ସେ କ'ଣ ଆଉ ରିସିଭରର ଭିତରେ ଅଛି ? ଏହା ଭାବି ସ୍ତ୍ରୀ ଝିଣ୍ଟିକାଟି ଟେଲିଫୋନ୍ ରିସିଭର ଭିତରକୁ ଯିବାକୁ ଚେଷ୍ଟା କଲା ।

ଏହିଭଳି "ଟେଲିଫୋନ୍‌ରେ କଥାବାର୍ତ୍ତା କରି" ଝିଣ୍ଟିକାମାନେ ନିଜର ଗୁପ୍ତକଥା ମଣିଷକୁ ଜଣାଇ ଦେଲେ ।

ଗୋଟିଏ ଗୁପ୍ତକଥା ଜାଣିଲା ପରେ ମଣିଷ ମନରେ ନୂତନ ଏକ ପ୍ରଶ୍ନ ଜନ୍ମିଲା । ସେ ପ୍ରଶ୍ନଟି ହେଲା : ଝିଣ୍ଟିକା ସବୁ ସମୟରେ କାହିଁକି ଏକାଭଳି ଶବ୍ଦ କରେ ନାହିଁ ? ବିଭିନ୍ନ ସମୟରେ ଝିଣ୍ଟିକା କରୁଥିବା ଭିନ୍ନ ଭିନ୍ନ ଝଙ୍କାରର ଅର୍ଥ ମଧ୍ୟ ଭିନ୍ନ ଭିନ୍ନ । ଖୁବ୍ ଜୋରରେ ଝିଁ ଝିଁ ଶବ୍ଦକରି ପୁରୁଷ ଝିଣ୍ଟିକା ତା'ର ସ୍ତ୍ରୀ ସାଥୀକୁ ଜଣାଇ ଦିଏ ଯେ, ସେ କେଉଁଠି ବସିଛି ଏବଂ ସେହିଭଳି ସେ ଡାକେ । ଦିହେଁ ଯେତେବେଳେ ଏକାଠି ଥାଆନ୍ତି, ସେତେବେଳେ ପୁରୁଷ ଝିଣ୍ଟିକାର ଗୀତର ସ୍ୱର ବଦଳି ଯାଏ : ଉଚ୍ଚ ସ୍ୱର ପରିବର୍ତ୍ତେ ସେ ନୀଚ କଣ୍ଠରେ ମଧୁର ଗୀତ ଗାଏ ।

ହଠାତ୍ ପୁଣି ପୁରୁଷ ଝିଣ୍ଟିକା ଉଚ୍ଚ ସ୍ୱରରେ ଶବ୍ଦ କଲା । ଏହି ଶବ୍ଦ କିନ୍ତୁ ସ୍ତ୍ରୀ ସାଥୀକୁ ଆହ୍ୱାନ କରିବାର ଶବ୍ଦ ପରି ନୁହେଁ । ତା'ର ସ୍ତ୍ରୀ ସାଥୀ ତ ପାଖରେ ଅଛି । ସେ ଡାକିବ ବା କାହାକୁ ? ଅନ୍ୟ କିଛି ଘଟଣା ତାହା ହେଲେ ଘଟିଛି ଓ ତା'ର ବାସସ୍ଥାନରେ ଆଉ ଗୋଟିଏ ପୁରୁଷ ଝିଣ୍ଟିକା ଆସି ହାଜର୍ ହୋଇଛି । ସେ ଏଠାକୁ କିପରି ଆସିଲା, ତା'ର ଏଠାରେ କ'ଣ କାମ ? ଯାହା ଜଣା ପଡ଼ୁଛି, ଆସିଥିବା ପୁରୁଷ ଝିଣ୍ଟିକାର ନିଜର ରହିବା ସ୍ଥାନ ନାହିଁ । କିନ୍ତୁ ସେ ଆସି ଯେଉଁ ସ୍ଥାନରେ ପହଞ୍ଚିଛି, ସେ ସ୍ଥାନ ମଧ୍ୟ ଖାଲି ନାହିଁ । ସ୍ଥାନର ମାଲିକ ଆଗନ୍ତୁକ ଝିଣ୍ଟିକାକୁ

ଉଚ୍ଚ କଣ୍ଠରେ ସତର୍କ କରାଇ ଦେଉଅଛି । ଅବଶ୍ୟ ଝିଣ୍ଟିକାର ଏହି ସତର୍କବାଣୀକୁ ମଣିଷ ଭାଷାରେ ଅନୁବାଦ କରାଯାଇ ପାରିବ ନାହିଁ : "ଏଇଟା ମୋ ଜାଗା , ତୁ ଏଠୁ ଚାଲିଯାଆ , ନଚେତ୍ ପିଟିବି" । ଏଭଳି ଭାଷାରେ ଝିଣ୍ଟିକାର ଶବ୍ଦକୁ ଅନୁବାଦ କରାଯିବା ଅନାବଶ୍ୟକ । ଗୋଟିଏ ଝିଣ୍ଟିକା ବିରକ୍ତ ହୋଇ ଶବ୍ଦ କଲା , ଅନ୍ୟ ଝିଣ୍ଟିକା ତାହାକୁ ଶୁଣିଲା । ଏବେ ଆଗନ୍ତୁକ ଝିଣ୍ଟିକାଟି ନିଜ ଲାଗି ଅନ୍ୟ ସ୍ଥାନ ଖୋଜିବାକୁ ଚାଲି ଯାଇପାରେ , କିମ୍ବା ବିଧିବଦ୍ଧ ମାଲିକକୁ ତା ସ୍ଥାନରୁ ତଡ଼ି ଦେବାକୁ ଚେଷ୍ଟା କରିପାରେ । ଯଦି ଆଗନ୍ତୁକ ଝିଣ୍ଟିକା ମାଲିକକୁ ତଡ଼ିବାକୁ ସ୍ଥିର କରେ , ତେବେ ଉଭୟେ ଲଢ଼ିବା ଭଳି ଶବ୍ଦ କରନ୍ତି ଏବଂ ପରସ୍ପର ଉପରେ ଆକ୍ରମଣ କରନ୍ତି । ଆଗନ୍ତୁକ ହେଉ ବା ମାଲିକ ହେଉ , ଲଢେଇରେ ପରାସ୍ତ ହେଲେ ପରାଜିତ ଝିଣ୍ଟିକାକୁ ସ୍ଥାନ ଛାଡ଼ି ଚାଲିଯିବାକୁ ପଡ଼େ ।

ଝିଣ୍ଟିକାର ଶ୍ରବଣଶକ୍ତି ଖୁବ୍ ଭଲ । ତା'ର କାନ ଗୋଡ଼ ପାଖରେ ଥାଏ । ତେଣୁ ପ୍ରଶ୍ନ ଉଠେ : ଝିଣ୍ଟିକାର ଶବ୍ଦ ଭୂଇଁ ଜରିଆରେ ଶୁଣାଯାଏ ନାହିଁ ତ ? ଭୂମି ହେଉଛି ସବୁଠାରୁ ଭଲ ଶବ୍ଦ ବାହକ । ଏକଥା ପରୀକ୍ଷା କରିବାକୁ ଯାଇ ଜଣେ ପ୍ରାଣୀ ବିଜ୍ଞାନୀ ଭୂଇଁ ଉପରୁ ଦୁଇଟି ପୁରୁଷ ଝିଣ୍ଟିକାଙ୍କୁ ଧରି ବେଲୁନ୍ ସହିତ ବାନ୍ଧି ଦେଲେ । ବିରକ୍ତ ଅବସ୍ଥାରେ ଥିବା ଝିଣ୍ଟିକା ଦୁଇଟି ଏକଥା ପ୍ରତି ଧ୍ୟାନ ନଦେଇ ଉପରେ ମଧ୍ୟ ପରସ୍ପର ସହିତ ଚିତ୍କାର ଓ ଲଢ଼େଇ କରିବାକୁ ଲାଗିଲେ । ଏଥିରୁ ଜଣାଗଲା ଯେ , ଝିଣ୍ଟିକା ଦୁଇଟି ପରସ୍ପରକୁ ଶୁଣି ପାରୁଛନ୍ତି ଏବଂ ଭୂମି ସେମାନଙ୍କ ଶବ୍ଦର ବାହକ ନୁହେଁ ।

ଝିଣ୍ଟିକାମାନେ ଏହିଭଳି କଥାବାର୍ତ୍ତା ହୁଅନ୍ତି । ବିଭିନ୍ନ ଜାତିର ଝିଣ୍ଟିକା ଅଛନ୍ତି , ଯଥା , ବଡ଼ ଗୋଡ଼ିଆ ଝିଣ୍ଟିକା , ଭାଲୁଆ ଝିଣ୍ଟିକା ଏବଂ କୁକୁର ମୁହାଁ ଝିଣ୍ଟିକା । ସେମାନଙ୍କର ଶବ୍ଦ ଓ ସେମାନେ ଗାଉଥିବା ଝିଁ ଝିଁ ଶବ୍ଦର ପରସ୍ପର ସହିତ ସାମଞ୍ଜସ୍ୟ ଥାଏ । ସେମାନେ ଯେଉଁ ଅଙ୍ଗ ଯନ୍ତ୍ର ସାହାଯ୍ୟରେ ଏହି ଗୀତ ଗାଆନ୍ତି , ସବୁ ଝିଣ୍ଟିକାଙ୍କର ସେ ଯନ୍ତ୍ର ମଧ୍ୟ ସମାନ । ଗୋଟିଏ ଡେଣାରେ ଚିକ୍କଣ ଶକ୍ତ ଜାଲି , ଢୋଲର ଚମଡ଼ା ଭଳି ଶକ୍ତ କରି ବାନ୍ଧିହୋଇ ଥାଏ । ଡେଣା କଡ଼େ କଡ଼େ ମୋଟା ଶକ୍ତ ଶିରାପ୍ରଶିରା ତାକୁ ଘେରିରହିଥାଏ । ଅନ୍ୟ ଡେଣାଟି ଘେରିରହିଥାଏ ଖଦଡ଼ିଆ ଶିରା ଦ୍ୱାରା । ଡେଣା ଦୁଇଟି ଯେତେବେଳେ ପରସ୍ପର ସହିତ ବାଡ଼େଇ ହୁଅନ୍ତି , ଖଦଡ଼ିଆ ଶିରାଯୁକ୍ତ ଡେଣାଟି ଅନ୍ୟ ଡେଣାଟିର ଶିରା ସହିତ ଘଷିହୁଏ । ଟାଣି ହୋଇ ରହିଥିବା ଡେଣାର ଶକ୍ତ ଚିକ୍କଣ ଜାଲିଟି କରିଆରେ ଶବ୍ଦ ସୃଷ୍ଟିହୁଏ ଏବଂ



ଝିଣ୍ଟିକା ଜାତୀୟ ପୋକ

ତାହା ଧୀରେ ଧୀରେ ବଢ଼ିବାକୁ ଲାଗେ । କେବଳ ଡେଣା ଫଡ଼ଫଡ଼ ନକରି ଗୀତ ବୋଲିବାକୁ ହେଲେ ଝିଣ୍ଟିକାକୁ ଖୁବ୍ ଶୀଘ୍ର ଗୋଟିଏ ଡେଣାକୁ ଅନ୍ୟ ଡେଣାର ଘଷିବାକୁ ପଡ଼େ । ବିଭିନ୍ନ ପ୍ରକାର ଗୀତ ପାଇଁ ବିଭିନ୍ନ ଗତିରେ ଓ ନାନା ଉପାୟରେ ବଳ ଖଟାଇ ସେ ଡେଣା ଦୁଇଟିକୁ ଘଷି ଚାଲେ । ଏହା ଫଳରେ ଶବ୍ଦ କେବେ ଉଚ୍ଚ ତ ଆଉ କେବେ ନିମ୍ନ ଓ ମନ୍ଥର ହୋଇଥାଏ ।

ପାଗ ଭଲ ଥିଲେ ଝିଣ୍ଟିକାର ଝଙ୍କାର ଦଶ-ଦଶ ମିଟରରୁ ଅଧିକ ଦୂରକୁ ଶୁଣାଯାଏ । ଦୀର୍ଘ ସତର ବର୍ଷ କାଳ ମାଟି ଭିତରେ ନିରବରେ ଜୀବନ ଅତିବାହିତ କରି , କେବଳ ଜୀବନର ଶେଷ ସପ୍ତାହ କେତୋଟିରେ ଗୀତ ବୋଲୁଥିବା କେତେକ ଜାତୀୟ ଝିଣ୍ଟିକାଙ୍କର ଶବ୍ଦ ବାଷ୍ପଚାଳିତ ରେଳଗାଡ଼ିର ହର୍ଣ୍ଣ ଭଳି ପ୍ରାୟ ଅଧ କିଲୋମିଟର ଦୂରରୁ ଶୁଣାଯାଏ ।



ଭାଲୁଆ ଝିଣ୍ଟିକା

କେତେକ ବଡ଼ ଗୋଡ଼ିଆ ଝିଣ୍ଟିକା ଅଛନ୍ତି, ଯାହାଙ୍କର ସୁମଧୁର ଶବ୍ଦ ଦେଢ଼ କିଲୋମିଟର ଦୂରରୁ ମଧ୍ୟ ଶୁଣିହୁଏ ।

ଝିଣ୍ଟିକା ଓ ଅନ୍ୟ କେତେକ ଝିଙ୍କାରୀ ଅବଶ୍ୟ କଥାବାର୍ତ୍ତା କରନ୍ତି ବୋଲି କହିବା ଯୁକ୍ତିଯୁକ୍ତ ହେବ ନାହିଁ । ବୈଜ୍ଞାନିକମାନେ ଏପର୍ଯ୍ୟନ୍ତ ପ୍ରାୟ ଦଶହଜାର ପ୍ରକାରର କୀଟ ପତଙ୍ଗ କଥାବାର୍ତ୍ତା ହେଉଥିବା କଥା ଜାଣି ପାରିଛନ୍ତି । ସେମାନଙ୍କର ଭାଷା ଅଥବା ଯେଉଁ ସଙ୍କେତ ସାହାଯ୍ୟରେ ଏହି ଛଅ ଗୋଡ଼ିଆ ଜନ୍ତୁମାନେ କଥାବାର୍ତ୍ତା ହୁଅନ୍ତି, ତାହା କୋଡ଼ିଏରୁ ଅଧିକ : ସେମାନେ ଡାକନ୍ତି, ସତର୍କବାଣୀ ଶୁଣାନ୍ତି, ବିବ୍ରତ ହୁଅନ୍ତି ଏବଂ ଘୋଷଣା କରନ୍ତି : "ଏହି ଜାଗା ଖାଲି ନାହିଁ", ଆଦି ଅନେକ ସଙ୍କେତ । ପଙ୍ଗପାଳ ତା'ର ପଛ ଗୋଡ଼ ଦୁଇଟାକୁ ପରସ୍ପର ସହିତ ଘଷି ଯେଉଁ ଶବ୍ଦ ସୃଷ୍ଟି କରେ ତାହା ଦଳର ଅନ୍ୟ ପଙ୍ଗପାଳଙ୍କୁ ସଙ୍କେତ ଦିଏ, ସଦଳବଳେ ଅନ୍ୟ ସ୍ଥାନକୁ ଉଡ଼ି ଯିବାକୁ । ପଙ୍ଗପାଳ ଦେଉଥିବା ସଙ୍କେତ ଡେଣା ଝାଡ଼ିବାର ଶବ୍ଦ ନୁହେଁ, ଏହା ଏକ ସ୍ୱତନ୍ତ୍ର ସଙ୍କେତ । ବୈଜ୍ଞାନିକମାନେ ପଙ୍ଗପାଳ ଉଡ଼ିଲା ସମୟରେ ଯେଉଁ ଶବ୍ଦ କରେ ତାହାକୁ ଟେପ୍ କରି ରଖିଲେ । ପରେ କେତେକ ପଙ୍ଗପାଳଙ୍କ ଶ୍ରବଣଶକ୍ତି ନଷ୍ଟ କରିଦେଲେ – କହିବାକୁ ଗଲେ ପଙ୍ଗପାଳର କାନ ତା'ର ତଳିପେଟ ସହିତ ଲାଗି ରହିଥାଏ । ପୂର୍ବରୁ ଟେପ୍ କରିଥିବା "ଉଡ଼ିବା ସମୟର ସଙ୍କେତ" ଶ୍ରବଣଶକ୍ତିହୀନ ପଙ୍ଗପାଳଙ୍କ ଆଗରେ ଶୁଣେଇଲେ । ସେମାନେ ଏହି ସଙ୍କେତକୁ ଧ୍ୟାନ ଦେଲେ ନାହିଁ । ଯେଉଁମାନେ ଶୁଣି ପାରିଲେ, ସେମାନେ ଉଡ଼ିଗଲେ । ଜଣା ପଡ଼ିଲା କୀଟ ପତଙ୍ଗମାନଙ୍କ ଲାଗି, ଡେଣା କେବଳ ଉଡ଼ିବାରେ ସାହାଯ୍ୟ କରେ ନାହିଁ, ଏହା ସେମାନଙ୍କ ପାଇଁ କଥାବାର୍ତ୍ତା କରିବାକୁ ସାହାଯ୍ୟ କରିଥାଏ ।

## ମହୁଫେଣାରେ ଗୁପ୍ତଚର

ଅନେକ ଦିନ ପର୍ଯ୍ୟନ୍ତ କାରିଗରମାନେ ବୁଝିପାରୁ ନଥିଲେ ଇଲେକ୍‌ଟ୍ରିକ୍ ଟ୍ରାନସ୍‌ଫର୍‌ମିଟର ମଧ୍ୟରେ ମଶା କାହିଁକି ବସା ବାନ୍ଧି ରହନ୍ତି ? ଟ୍ରାନସ୍‌ଫର୍‌ମିଟର ଆଡ଼କୁ ଆସିବାକୁ କେଉଁ ଜିନିଷ ମଶାକୁ ଆକର୍ଷଣ କରେ ? ସେମାନଙ୍କୁ କ'ଣ ଏହା ବାଧ୍ୟ କରେ ନିଜର ମୃତ୍ୟୁକୁ ପାଖେଇ ଆଣିବାକୁ ? ବିଜୁଳି ଆଲୁଅର ଆଉ କୌଣସି



ପଙ୍ଗପାଳ ଦଳ

ସ୍ୱତନ୍ତ୍ର କରେଣ୍ଟ କ'ଣ ଅଛି, ଯାହାକୁ କେବଳ ମଶା ଜାଣେ, ମଣିଷକୁ ତାହା ଆଜି ପର୍ଯ୍ୟନ୍ତ ଜଣା ନାହିଁ ?

ଇଂଜିନିୟର ଓ କାରିଗରମାନେ ଏହିକଥା ଚିନ୍ତା କରୁଥିବା ବେଳେ, ବୈଜ୍ଞାନିକମାନେ ଏ କଥାକୁ ଲକ୍ଷ୍ୟ କରୁ ଥାଆନ୍ତି । ସଞ୍ଜ ହେଲେ ପଡ଼ିଆରେ ମଶାମାନେ ଗୁଣୁଗୁଣୁ ଶବ୍ଦ କରି ଉଡ଼ି ବୁଲନ୍ତି । ବଡ଼ ବଡ଼ ମଶା ପଲସବୁ । ଦେଖିଲେ ମନେହୁଏ, ସେମାନେ ଯେମିତି ଗୁଣୁଗୁଣୁ ହୋଇ ଗୀତ ଗାଉଛନ୍ତି ଓ ନାଚୁଛନ୍ତି । ସତରେ ସେମାନଙ୍କର ସ୍ୱର ମଚ୍ଛର । ତଥାପି ମଶାମାନେ ମଧ୍ୟ ଘାସ ଉପରେ ବସିଥିବା ଝିଣ୍ଟିକା ପରି ନିଜ ବିଷୟରେ କହିବାକୁ ଚାହାନ୍ତି । ଝିଣ୍ଟିକାମାନେ ଉଚ୍ଚ ସ୍ୱରରେ କଥାବାର୍ତ୍ତା ହୋଇପାରନ୍ତି, କିନ୍ତୁ ମଶାଙ୍କର ଶବ୍ଦ କ୍ଷୀଣ ହୋଇ ଥିବାରୁ ଦୂରରୁ ତାହା ଶୁଣାଯାଏ ନାହିଁ । ତେଣୁ ସେମାନେ ସଦଳବଳେ ଏକାଠି ହୋଇ ଗୁଣ୍‌ଗୁଣ୍ ଶବ୍ଦ କରନ୍ତି । କାରଣ ଏକାଠି ଶବ୍ଦ କଲେ ନିଶ୍ଚୟ ଜୋରରେ ଶୁଣାଯିବ । ମଶାମାନେ ଗୁଣ୍‌ଗୁଣ୍ ଗୀତ ଗାଇଲେ ତାଙ୍କର ସାଥୀମାନେ ଆସି ସେମାନଙ୍କ ସହିତ ଯୋଗ ଦିଅନ୍ତି । ମନେକର, ଗୁଣ୍‌ଗୁଣ୍ ହୋଇ ନାଚ କରୁଥିବା ମଶାଦଳଙ୍କ ପାଖକୁ ଗୋଟିଏ ମାଈ ମଶା ଦୂରରୁ ଉଡ଼ି ଆସିଲା । ହଠାତ୍ ତାକୁ ଭେଟିବାକୁ ଚାଲିଗଲା ତା'ର ପୁରୁଷ ସାଙ୍ଗଟି । ଏହି ଭଳି ଦ୍ୱିତୀୟ, ତୃତୀୟ, ଚତୁର୍ଥ ଓ ପଞ୍ଚମ ମାଈ ମଶା ଉଡ଼ି ଆସିଲା ବେଳେ, ପୁରୁଷ ମଶାମାନେ ସେମାନଙ୍କୁ ପାଛୋଟି ନେଉଥାଆନ୍ତି । କିନ୍ତୁ ଷଷ୍ଠ, ସପ୍ତମ ଓ ଅଷ୍ଟମ ମାଈ ମଶା ଯେତେବେଳେ ଆସିଲେ ବନ୍ଧୁତା କରିବା ପାଇଁ, ପୁରୁଷ ମଶା ଉଡ଼ି ଗଲେ ନାହିଁ । କିନ୍ତୁ ନବମ ଓ ଦଶମ ମାଈ ମଶାଙ୍କର ଭାଗ୍ୟ ଭଲ । ସେମାନେ ଆସିଲା ବେଳେ ପୁରୁଷ ମଶାମାନେ

ସ୍ୱାଗତ ଜଣାଉଲେ । ଘଟଣା କ'ଣ ? ମଶାଗୁଡ଼ାଙ୍କର ଟ୍ରାନସ୍‌ଫର୍‌ମିଟର ସହିତ ସମ୍ପର୍କ କ'ଣ ?

ଏହି ପ୍ରଶ୍ନର ଉତ୍ତର ଦେବା ପୂର୍ବରୁ ବୈଜ୍ଞାନିକମାନେ ଆଉ ଏକ ଆବିଷ୍କାର କରିଥିଲେ । ସମସ୍ତେ ଜାଣନ୍ତି ଯେ, ବାଦ୍ୟଯନ୍ତ୍ର ସିତାରର ତାରକୁ ଆଙ୍ଗୁଠିରେ ହଲାଇଲେ ତାହା ବାଜି ଉଠେ । ବାଜି ଉଠେ, କାରଣ ତାର କମ୍ପିବାକୁ ଲାଗେ । ସିତାରର ତାର ଯେତେ ସୂକ୍ଷ୍ମ ତାହାର ଶବ୍ଦ ସେତେ ସୁମଧୁର, କାରଣ ସୂକ୍ଷ୍ମ ତାର ଦ୍ରୁତ ବେଗରେ କମ୍ପିତ ହୁଏ, ମାତ୍ର ମୋଟା ତାର ମନ୍ଥର ଗତିରେ କମ୍ପେ । ଏହାର ଅର୍ଥ ହେଲା – ତାରର ତରଙ୍ଗ ଯେତେ ଅଧିକ ସ୍ୱର ସେତେ ଉଚ୍ଚ, ତାରର ତରଙ୍ଗ କମ ହେଲେ ନିମ୍ନତର ସ୍ୱର ସୃଷ୍ଟି ହୁଏ । କେବଳ ସିତାରର ତାର କ୍ଷେତ୍ରରେ


ମଶାମାନେ

ନୁହେଁ, ତୁମେ ଯଦି ଗୋଟିଏ ସରୁ ବାଡ଼ି ବା ଖଡ଼ିକା ଧରି ଜୋରରେ ହଲାଅ ତେବେ ସେଥିରୁ ମଧ୍ୟ ଶବ୍ଦ ସୃଷ୍ଟି ହେବ । ଶୀଘ୍ର ଶୀଘ୍ର ଖଡ଼ିକା ହଲାଇଲେ ସ୍ୱର ସେତେ ତୀବ୍ର ହୁଏ । ଯଦି ଅତି ଚଞ୍ଚଳ ତରଙ୍ଗାୟିତ ହୋଇ ଉଠୁଥିବା କୀଟ ପତଙ୍ଗଙ୍କର ପର ଦୋହଲେ ତେବେ ଶବ୍ଦ ସୃଷ୍ଟି ହେବ ନା ନାହିଁ ? ନିଶ୍ଚିତ ଭାବେ ସେଥିରୁ ଶବ୍ଦ ସୃଷ୍ଟି ହେବ । ଯେତେଶୀଘ୍ର ପର ହଲେ, ତାହାରି ଉପରେ ନିର୍ଭର କରି, ଶବ୍ଦ ମଧୁର, ନିମ୍ନ, ଗମ୍ଭୀର କିମ୍ବା କ୍ଷୀଣ ହୋଇ ଉଠେ ।

କୀଟ ପତଙ୍ଗଙ୍କର ପର ବିଭିନ୍ନ ପ୍ରକାରର ହୋଇଥିବାରୁ, ସେମାନେ ପର ହଲାଇ ଉଡ଼ିଲା ବେଳେ ତାହା ବିଭିନ୍ନ ଗତିରେ ତରଙ୍ଗାୟିତ ହୁଏ । ଉଦାହରଣ ସ୍ୱରୂପ, ମାଛି ଉଡ଼ିବା ସମୟରେ ତା'ର ପର ପ୍ରତିସେକେଣ୍ଡରେ ୩୩୦ରୁ ୩୫୦ ଥର ହଲିଥାଏ । ସେହିପରି ପ୍ରତିସେକେଣ୍ଡରେ, ମହୁମାଛିର ପର, ମଧୁନେଇ ଆସୁଥିବା ବେଳେ ୩୦୦


ଜଙ୍କି

ଥର ଓ ଖାଲି ଉଡ଼ୁଥିବା ବେଳେ ୪୪୦ ଥର ହଲିଥାଏ । ଭ୍ରମର ପ୍ରତିସେକେଣ୍ଡରେ ୧୯୦ରୁ ୨୪୦ ଥର ନିଜର ଡେଣା ହଲାଇ ଥାଏ । କେତେକ ମଶା ପ୍ରତିସେକେଣ୍ଡରେ ୫୦୦ରୁ ୬୦୦ ଥର (ଅନ୍ୟ କେତେକ ମଶା ହଜାରେ ଥର ପର୍ଯ୍ୟନ୍ତ) ଡେଣା ଝାଡ଼ି ଉଡ଼ନ୍ତି । ବିରୁଡ଼ି – ୨୫୦ ; ଡାଆଁଶ – ୧୦୦ ; ଜଙ୍କି – ୪୦ରୁ ୧୦୦ ପର୍ଯ୍ୟନ୍ତ ; ସାଧବବୋହୂ – ୭୫ ; ମେମାସିଆ ଗୋବର ପୋକ – ୪୫ ; ନିଶାଚର ପ୍ରଜାପତି ୩୫ରୁ ୪୦ ପର୍ଯ୍ୟନ୍ତ ଓ ପଙ୍ଗପାଳ – ୨୦ ଥରଯାଏ ପ୍ରତିସେକେଣ୍ଡରେ ଡେଣା ହଲାଇ ଉଡ଼ନ୍ତି ।

ଯଦି ଏହି କୀଟ ପତଙ୍ଗଙ୍କର ପର ହଲିବାରେ ଆମେ ଏପରି ତାରତମ୍ୟ ଦେଖୁ, ତାହେଲେ ଏହି ତାରତମ୍ୟ ଉପରେ ନିର୍ଭର କରି ଉଡ଼ିବାର ଶବ୍ଦ ମଧ୍ୟ ଭିନ୍ନ ଭିନ୍ନ ହୋଇ ପାରେ, ଏ କଥା ସତ । ମଶା କାହିଁକି ଟ୍ରାନସ୍‌ଫର୍‌ମିଟର ପାଖକୁ ଆସନ୍ତି ତାହା ଇଂଜିନିୟରମାନଙ୍କୁ ବୁଝିବାକୁ ବୈଜ୍ଞାନିକମାନେ ସାହାଯ୍ୟ କରିଥିଲେ । ଟ୍ରାନସ୍‌ଫର୍‌ମିଟର ଘୁଁଘୁଁ ଶବ୍ଦକରେ । ଏହା ଦ୍ୱାରା ସୃଷ୍ଟି ହୋଇଥିବା ଶବ୍ଦକୁ ଅନେକ କୀଟ ପତଙ୍ଗ ଶୁଣନ୍ତି, କିନ୍ତୁ ତାହା କେବଳ ମଶାଙ୍କୁ ଆକର୍ଷଣ କରେ । କାରଣ ମାଈ ମଶାମାନେ ପ୍ରତିସେକେଣ୍ଡରେ ୫୦୦-୫୫୦ ଥର ନିଜର ଡେଣା ଝାଡ଼ି ଉଡ଼ିଲା ବେଳେ ଯେଉଁ ଗୁଣ୍‌ଗୁଣ୍ ଶବ୍ଦ ହୁଏ, ଟ୍ରାନସ୍‌ଫର୍‌ମିଟରରୁ ଠିକ୍ ସେହି ଭଳି ଶବ୍ଦ ଶୁଣାଯାଇ ଥାଏ । ଏହି 'ସଙ୍କେତର ଡାକ' ସାଧାରଣ ଗୁଣ୍‌ଗୁଣ୍ ଶବ୍ଦ ପରି ନୁହେଁ । ଏହା ଏକ ସୂକ୍ଷ୍ମ କ୍ଷୀଣ ଶବ୍ଦ, ଯାହାକି ଅବ୍ୟର୍ଥ ଭାବେ କାର୍ଯ୍ୟ କରେ ।

ଉତ୍ତର ଦିଆ ନଯାଇ ରହି ଯାଇଥିବା ଅନ୍ୟ ପ୍ରଶ୍ନଟି ହେଲା – କାହିଁକି ପୁରୁଷ ମଶା କେତେକ ସ୍ତ୍ରୀ ମଶା ପ୍ରତି ଧ୍ୟାନ ଦିଅନ୍ତି ଓ ଅନ୍ୟ କେତେକଙ୍କ ପ୍ରତି ଧ୍ୟାନ ଦିଅନ୍ତି ନାହିଁ ?





ଡାଆଁଶ

ଏହି ପ୍ରଶ୍ନଟିର ଉତ୍ତର ପାଇବାକୁ ଅନେକ ଦିନ ଲାଗିଥିଲା । ମଣିଷ ଥରକୁ ଥର ମଶାର ଉଡ଼ିବାକୁ ଲକ୍ଷ୍ୟକରି ପ୍ରତିସେକେଣ୍ଡରେ ତା'ର ପର କେତେ ଥର ହଲୁଛି ଓ ସେଥିରୁ କିପରି ଶବ୍ଦ ବାହାରୁ ଅଛି, ସବୁକଥା ଅନୁଧ୍ୟାନ କଲା । ଶେଷରେ ଜଣାଗଲା ଯେ, ମଶାମାନେ ମଧ୍ୟ ବିଭିନ୍ନ ପ୍ରକାରର ଗୁଣ୍‌ଗୁଣ୍ ଶବ୍ଦ କରିଥାଆନ୍ତି । ସ୍ତ୍ରୀ ମଶାଙ୍କର ଶବ୍ଦ, ପୁରୁଷ ମଶାଙ୍କଠାରୁ ଟିକେ କ୍ଷୀଣ । ଅବଶ୍ୟ ମଣିଷର କାନ ଏହି ତାରତମ୍ୟକୁ ବାରି ପାରେ ନାହିଁ, କିନ୍ତୁ ମଶା ଏହାର ପାର୍ଥକ୍ୟ ଭଲ ଭାବେ ଜାଣିପାରେ । ସବୁ ସ୍ତ୍ରୀ ମଶା ମଧ୍ୟ ଏକା ପ୍ରକାରର ଶବ୍ଦ କରନ୍ତି ନାହିଁ: ଛୋଟ ମଶା, ଯୁବତୀ ମଶାଙ୍କଠାରୁ ଏବଂ ବୁଢ଼ୀ ମଶାଙ୍କର ଶବ୍ଦ ଉଭୟଙ୍କଠାରୁ ପୃଥକ୍ । ପୁରୁଷ ମଶା ଏହି ପାର୍ଥକ୍ୟକୁ ଭଲ ରୂପେ ଠଉରେଇ ପାରେ । ପିଲା ଓ ବୁଢ଼ୀଙ୍କ ପ୍ରତି ସେମାନେ ଧ୍ୟାନ ଦିଅନ୍ତି ନାହିଁ: ସେମାନଙ୍କ ମଧ୍ୟରୁ କେତେକଙ୍କର ପଡ଼ିଆରେ ବୁଲିବାର ସମୟ ଆସି ନାହିଁ ତ ଆଉ କେତେକଙ୍କ ପାଇଁ ଏହି ସମୟ ଗଡ଼ି ଯାଇଥାଏ ।



ମାଛି



ଭଅଁର



ମହୁମାଛି

ମଶାମାନେ ଯେ କେବଳ ବସନ୍ତ ଋତୁରେ ସମସ୍ୱରରେ କଥାବାର୍ତ୍ତା କରନ୍ତି ତା ନୁହେଁ ।

ମଶାଙ୍କର ଉଡ଼ିବାର ବେଗ ସର୍ବଦା ସମାନ ନୁହେଁ । ବେଳେବେଳେ ସେମାନେ ଶୀଘ୍ର ତ ଆଉ କେତେବେଳେ ମନ୍ଥର ଗତିରେ ଉଡ଼ନ୍ତି । ଏହାର ଅର୍ଥ ହେଲା କେତେବେଳେ ଦ୍ରୁତ ଗତିରେ ତ ଆଉ କେତେବେଳେ ଧୀର ଗତିରେ ସେମାନେ ପର ହଲନ୍ତି । ତେଣୁ ପର ହଲିବାର ଶବ୍ଦ ବିଭିନ୍ନ ପ୍ରକାରର ହୁଏ । କେତେବେଳେ ନିମ୍ନ ତ କେତେବେଳେ ଉଚ୍ଚ, ଆଉ କେତେବେଳେ କ୍ଷୀଣ ହୋଇଥାଏ । ବେଳେବେଳେ ଜୋରରେ, ଧୀରେ ଧୀରେ କିମ୍ବା ତୀବ୍ର ଭାବରେ ଶୁଣାଯାଏ ।

ମଶା ଖୁବ୍ କାର୍ଯ୍ୟବ୍ୟସ୍ତ ପତଙ୍ଗ । ସେମାନେ ବିନା ଦରକାରରେ କେବେ ତରବର ହୁଅନ୍ତି ନାହିଁ, କିମ୍ବା ପରିଶ୍ରମ କରନ୍ତି ନାହିଁ । ଯଦି ମଶା ଦ୍ରୁତଗତିରେ ଉଡ଼େ, ଏହାର ଅର୍ଥ ହେଲା, ତା ପାଇଁ ଶୀଘ୍ର ଉଡ଼ିବା ଦରକାର । ଉଦାହରଣ ସ୍ୱରୂପ ମଶା କେଉଁଠି ଖାଦ୍ୟର ସନ୍ଧାନ ପାଇଛି, ତେଣୁ ସେଠାକୁ ଶୀଘ୍ର ଡେଣା ଝାଡ଼ି ଉଡ଼ି ଯାଉଛି । ଅନ୍ୟ ମଶା ମଧ୍ୟ ଶୋଇ ଯାଇ ନଥାନ୍ତି । ସେମାନେ ସବୁକଥା ଲକ୍ଷ୍ୟ କରନ୍ତି, ଭାବନ୍ତି ମଶାଟି ଏତେ ଶୀଘ୍ର କୁଆଡ଼େ ଉଡ଼ି ଯାଉଛି ? ଚାଲ ଦେଖିବା, ସେ କୁଆଡ଼େ ଯାଉଛି ଏବଂ ତାକୁ ଶୁଣିବାକୁ ଲାଗନ୍ତି । ତେଣେ ମଶାଟି ଖୁବ୍ ଶୀଘ୍ର ତରବର ହୋଇ ଡେଣା ଝାଡ଼ି ବାୟୁ ମଣ୍ଡଳରେ ଖୁବ୍ ଶୀଘ୍ର ଉଡ଼ିଯାଏ । ସେ ଯେପରି କହୁଛି, "ଖାଦ୍ୟ ପାଖକୁ ଯାଉଛି, ମୁଁ ଜାଣିପାରିଛି କେଉଁଠି ଖାଦ୍ୟ ଅଛି ।"



ଲଙ୍-ଡ୍ୟାଫାଉ୍

ଅନ୍ୟ ମଶାସବୁ ତା ପଛରେ ଉଡ଼ିବାକୁ ଲାଗନ୍ତି ।

ଆଉ ମଧ୍ୟ ଏପରି ହୁଏ । ଯେତେବେଳେ କି ବିପଦ ମୁଖରୁ ନିଜକୁ ରକ୍ଷା କରିବାକୁ ପଡ଼େ । ଉଦାହରଣ ସ୍ୱରୂପ – ନିଆଁ ଧୂଆଁର ଦାଉରୁ ଜୀବନ ରକ୍ଷା କରିବାକୁ ହେଲେ ମଶା ଖୁବ୍ ଶୀଘ୍ର ନିଜର ଶକ୍ତି ଖଟାଇ, ପାରୁ ପର୍ଯ୍ୟନ୍ତ ଉଡ଼େ ।



ନିଶାଚର ପ୍ରଜାପତି

ମଶା ଖସି ପଳାଇଯିବା ସମୟର ଶବ୍ଦ ସ୍ଵତନ୍ତ୍ର ଏବଂ ଅନ୍ୟ ମଶାମାନଙ୍କୁ ଏହା ସତର୍କ କରାଇ କହେ, "ଯିଏ ପାରୁଛି ଜୀବନ ବଞ୍ଚାଅ !"

ନିଜର ଡେଣା ସାହାଯ୍ୟରେ ମଶାମାନେ ପରସ୍ପରକୁ ବିପଦ ସମ୍ବନ୍ଧରେ ସତର୍କ କରାଇ ଦି[illegible] ଅବସ୍ଥିତି[illegible]ରେ [illegible] ଅନେକ କଥା କହି ପାରନ୍ତି ।

ତୁମେମାନେ ଜାଣିଛ ଯେ, ମହୁମାଛି ଫୁଲରୁ ମଧୁ ସଂଗ୍ରହ କରି ଫେରିଲା ବେଳେ ପ୍ରତିସେକେଣ୍ଡରେ ୩୦୦ ଥର ନିଜର ଡେଣା ହଲାଇ ଉଡ଼େ । ମାତ୍ର ଖାଲି ଉଡ଼ୁଥିବା ମହୁମାଛିଟି ସେକେଣ୍ଡକୁ ୪୫୦ ଥର ନିଜର ଡେଣା ହଲାଇ ଉଡ଼ିପାରେ । ଏଥିରୁ ଜଣାଯାଏ ଯେ, ମହୁ ଧରି ଯାଉଥିବା ମହୁମାଛିଟି, ଖାଲି ଉଡ଼ୁଥିବା ମହୁମାଛିଠାରୁ ନିମ୍ନତର ସ୍ଵର ସୃଷ୍ଟି କରିବ । ମହୁମାଛିମାନେ ଉଭୟନର ଏହି ପୃଥକ୍ ଶବ୍ଦକୁ ଅନେକ ଦିନରୁ ଜାଣିଛନ୍ତି । ଏପରିକି ଖୁବ୍ ଦୂରରୁ ତାହା ଜାଣି ପାରନ୍ତି ଯେ, ସେମାନଙ୍କର ସାଥୀ ମହୁମାଛି ବୋଝ ବୋହୁ ଅଛି ନା ନାହିଁ । ମହୁମାଛିମାନଙ୍କ ଲାଗି ଏହା କୌତୂହଳପ୍ରଦ କଥା ନୁହେଁ, ନିହାତି ଏକ ଦରକାରୀ କଥା । କାରଣ ସେମାନଙ୍କ ମଧ୍ୟରେ ଅନେକ ନିଷ୍ଠାବାନ ପରିଶ୍ରମୀ ଥିବା ବେଳେ ଆଉ କେତେକ ଅଛନ୍ତି, ଯେଉଁମାନେ କି ଅନ୍ୟର ପରିଶ୍ରମ ବଳରେ ବଞ୍ଚନ୍ତି । ଗୋଟିଏ ଫୁଲରୁ ଅନ୍ୟ ଫୁଲକୁ ଉଡ଼ି ସକାଳୁ ସଞ୍ଜ ପର୍ଯ୍ୟନ୍ତ ଟୋପାଏ ହେଲେ ମହୁ ସଂଗ୍ରହ କରିବାକୁ ସେମାନେ ଚାହାନ୍ତି ନାହିଁ । ଏହି ଅଳସୁଆ ମହୁମାଛି ଅନ୍ୟ ଫେଣାରେ ଅନ୍ୟମାନଙ୍କ ଦ୍ଵାରା ସଂଗୃହୀତ ଓ ଗଚ୍ଛିତ ମହୁ ଚୋରାଇ ନେବାକୁ ଚେଷ୍ଟା କରନ୍ତି । ବାହ୍ୟଗଢ଼ଣରେ ଏହି ଅଳସୁଆ ଅକାମୀ ମହୁମାଛିଗୁଡ଼ାକ, କାମିକା ମହୁମାଛି ପରି ଦିଶନ୍ତି । ତେଣୁ ସେମାନେ ସମସ୍ତଙ୍କୁ ଠକି ପାରନ୍ତି । କେବଳ ମହୁ ଫେଣାର ଦ୍ଵାରରେ ପହରା ଦେଉଥିବା ମହୁମାଛିଙ୍କୁ ଏମାନେ ଠକି ପାରନ୍ତି ନାହିଁ । ଏହି ପ୍ରହରୀ ମହୁମାଛିମାନେ ଅନେକ ଦୂରରୁ ଜାଣି ପାରନ୍ତି ଫେଣା ଆଡ଼କୁ କିଏ ଆସୁଛି । ମହୁଧରି ଆସୁଥିବା ମାଛିର ଡେଣା ଶବ୍ଦ ସେମାନଙ୍କୁ କହେ "ଏଇଟା ଆମର ସାଥୀ" । ତେଣୁ ପ୍ରହରୀ ତାକୁ







ଫେଣା ଭିତରକୁ ଛାଡ଼ିଦିଏ । ଅଳସୁଆ ମହୁମାଛି ଆସିଲେ ପ୍ରହରୀ ଜାଣି ପାରେ ଯେ, ସେ ବିନା ମହୁରେ ଆସିଛି, ତେଣୁ ତାକୁ ଭିତରକୁ ଛାଡ଼େ ନାହିଁ ।

ମହୁମାଛିର ଏହି ଡେଣାଝଡ଼ା କେବଳ ପ୍ରବେଶ ପାଇଁ ସଙ୍କେତ ନୁହେଁ । ଫେଣାକୁ ଉଡ଼ି ଆସିବା ପରେ ମହୁମାଛି ନିଜର ଡେଣା ହଲାଇ ସେ କେଉଁ ସ୍ଥାନକୁ ଯାଇଥିଲା, କ'ଣ ଦେଖିଲା ଓ କ'ଣ ପାଇଲା ସବୁକଥା କହିପାରେ । ଅବଶ୍ୟ ପ୍ରାକୃତିକ ସୌନ୍ଦର୍ଯ୍ୟ, କିମ୍ବା ପଡ଼ିଆରେ କାହାକୁ ଭେଟିଲା ସେ କଥା ମହୁମାଛି କହି ପାରେ ନାହିଁ । ମହୁମାଛି କେବଳ ଫୁଲ କଥା ଜାଣିବାକୁ ଚାହେଁ – କେଉଁଠି ଫୁଲ ଅଛି, କି ଜାତିର ଫୁଲ ଓ ସେଥିରେ ମହୁ ଅଛି ନା ନାହିଁ । ତୁମେମାନେ ଜାଣିଛ ଯେ, ଗୁଇନ୍ଦା ମହୁମାଛି ସଙ୍ଗରେ ଆଣିଥିବା ସୁଗନ୍ଧ ବାରି, ଅନ୍ୟ ମହୁମାଛିମାନେ କେତେକ କଥା ଜାଣି ପାରନ୍ତି । କିନ୍ତୁ ଗନ୍ଧ ସେମାନଙ୍କୁ ସବୁକଥା କହେ ନାହିଁ । ଉଦାହରଣ ସ୍ଵରୂପ ଗନ୍ଧରୁ ସେମାନେ ମହୁଥିବା ଫୁଲ କେତେ ଦୂରରେ ଅଛି, ତାହା ଜାଣି ପାରନ୍ତି ନାହିଁ । ଏ ବିଷୟରେ ଗୁଇନ୍ଦା ମହୁମାଛି ଅନ୍ୟମାନଙ୍କୁ ନିଜର ଡେଣା ହଲାଇ କହେ ଓ ଖୁବ୍ ସଠିକ୍ ଭାବେ ଖବର ଦେଇଥାଏ । ଯଦି ଅଧ ସେକେଣ୍ଡରୁ କମ୍ ଗୁଇନ୍ଦା ମହୁମାଛି ଡେଣା ହଲାଏ, ତେବେ ଜଣା ପଡ଼େ ଯେ, ଫୁଲ ପ୍ରାୟ ଦୁଇଶହ ମିଟର ଦୂରରେ ଅଛି । ପ୍ରସିଦ୍ଧ ଜର୍ମାନ୍ ପ୍ରାଣୀବିଜ୍ଞାନୀ ହାରାଲ୍ଡ ଏଶ୍, ମହୁମାଛିଙ୍କୁ ଅନୁଧ୍ୟାନ କରି ଲକ୍ଷ୍ୟ କଲେ ଯେ, ମହୁମାଛି ଡେଣା ଯେତେ ଡେରି ପର୍ଯ୍ୟନ୍ତ ହଲାଏ ଓ ସେଥିରୁ ଯେଉଁ ଗୁଁ ଗୁଁ ଶବ୍ଦ ବାହାରେ ସେଥିରୁ କେବଳ ଫୁଲର ଦୂରତା କାହିଁକି, ଫୁଲରେ ଥିବା ମହୁର ପରିମାଣ ଓ ମହୁର ଗୁଣ ମଧ୍ୟ ଜଣା ପଡ଼ିଥାଏ । (ଫେଣା ଉପରେ ମହୁମାଛି ଡେଣା ହଲାଇ ଗୁଁ ଗୁଁ କରି ଦୌଡ଼େ, ଉଡ଼େ ନାହିଁ ।) ଯେତେ ଚଞ୍ଚଳ ଗୁଇନ୍ଦା ମହୁମାଛି ଡେଣା ହଲାଏ, ମିଳିଥିବା ଖାଦ୍ୟର ଗୁଣ ସେତେ ଭଲ ।

ଥରେ ବୈଜ୍ଞାନିକ ଏଶ୍ ଗୋଟିଏ କୃତ୍ରିମ ମହୁମାଛି ତିଆରି କଲେ ଏବଂ ତାହାକୁ ଡେଣା ହଲାଉବା ଶିଖାଇ ଫେଣା ଭିତରକୁ ଛାଡ଼ିଦେଲେ । କୃତ୍ରିମ ମହୁମାଛିଟି ଡେଣା



ହଲଇ ଫେଣା ଭିତରେ ଗୁଁ ଗୁଁ ହୋଇ ଦୌଡ଼ିଲା । ତା ପଛରେ ମହୁମାଛିମାନେ ଦୌଡ଼ିବାକୁ ଲଗିଲେ । କୃତ୍ରିମ ମହୁମାଛି ଯେଉଁ ଦିଗ ଦେଖାଇବ, ସେହି ବାଟରେ ଉଡ଼ିଯିବାକୁ ସେମାନେ ପ୍ରସ୍ତୁତ ଥାଆନ୍ତି । (କୃତ୍ରିମ ମହୁମାଛିଟି ୦,୪ ସେକେଣ୍ଡ ପାଇଁ ଡେଣା ହଲଇ ଥିଲା, ଯାହାର ଅର୍ଥ ହେଲା ଫୁଲ ପ୍ରାୟ ୨୦୦ ମିଟର ଦୂରରେ ଅଛି ।) ମାତ୍ର ବୈଜ୍ଞାନିକ ଏଶ୍ ଯେତେ ସାବଧାନ ଥିଲେ ମଧ୍ୟ ସେମାନେ ସବୁକଥା ବିଗ୍ଧରକୁ ନେଇ ନଥିବା ଭଳି ମନେହେଲା । ଫେଣାର ମହୁମାଛିସବୁ କୃତ୍ରିମ ମହୁମାଛିର ବ୍ୟବହାରରୁ କିଛି ଅଂଶ ବୁଝିପାରିଲେ ନାହିଁ । ତେଣୁ ଅଧିକ ସୂଚନା ଦେବା ପାଇଁ ଦାବୀ କଲେ । ମାତ୍ର କୃତ୍ରିମ ମହୁମାଛିଟି କେବଳ ଡେଣା ହଲଇ ଗୁଁ ଗୁଁ ହେବା ବ୍ୟତୀତ ଆଉ କିଛି ନକରି ଏକ ନିର୍ଦ୍ଦିଷ୍ଟ ସଙ୍କେତ ଦେଇ ପାରୁଥିଲା । ମହୁମାଛିମାନେ କୃତ୍ରିମ ମହୁମାଛିଟିକୁ ସନ୍ଦେହ କଲେ କିମ୍ବା ଭାବିଲେ ଯେ, ମହୁମାଛିଟି ପାଗଳ ହୋଇ ଯାଇଛି । ତତ୍କ୍ଷଣାତ୍ କୃତ୍ରିମ ମହୁମାଛିଟିକୁ ସେମାନେ ମାରିଦେଲେ ।

ବୈଜ୍ଞାନିକ ଏଶ୍ ପୁଣିଥରେ ନିଜର ପରୀକ୍ଷା ଚଳାଇଲେ । ଏଥର ମଧ୍ୟ କୃତ୍ରିମ ମହୁମାଛିଟିକୁ ଅନ୍ୟ ମହୁମାଛି ମାରିଦେଲେ । ଏହିପରି ଅନେକଥର ପରୀକ୍ଷା କଲା ପରେ ବୈଜ୍ଞାନିକ ପ୍ରକୃତ କଥା କ'ଣ ଜାଣି ପାରିଲେ । ଜଣା ପଡ଼ିଲା ଯେ, ଗୁଇନ୍ଦା ମହୁମାଛି ଡେଣା ହଲଇ ଖବର ଦେଇ ସାରିଲା ପରେ, ମହୁମାଛିଙ୍କ ମଧ୍ୟରୁ କେହି ଗୋଟିଏ ଡେଣା ହଲଇ କହେ "ବୁଝି ପାରିଲି" । ଏହା ପରେ ଗୁଇନ୍ଦା ମହୁମାଛି ସଙ୍ଗରେ ଆଣିଥିବା ମହୁ ତାକୁ ଶୁଙ୍ଘିବାକୁ ଦିଏ । ମାତ୍ର କୃତ୍ରିମ ମହୁମାଛିଟି ଏହା ନକରି କେବଳ ଡେଣା ଝାଡ଼ିବାକୁ ଲଗିଲା । ତା'ପରେ କୃତ୍ରିମ ମହୁମାଛିର ବ୍ୟବହାରରେ କ୍ଷୁବ୍ଧ ହୋଇ ଅନ୍ୟ ମହୁମାଛିମାନେ ତାକୁ ମାରିଦେଲେ ।

ଏକଥା ବୁଝିପାରି ଏଶ୍ ଯେତେବେଳେ ନିଜର କୃତ୍ରିମ ମହୁମାଛିକୁ ଜୀବନ୍ତ ମହୁମାଛି ଭଳି ବ୍ୟବହାର କରିବା ଶିଖାଇ ଫେଣାରେ ଛାଡ଼ିଲେ, ଅନ୍ୟ ମହୁମାଛିମାନେ ତାକୁ ମାରିଲେ ନାହିଁ ।

ମଣିଷ କେବଳ ଯେ କୃତ୍ରିମ ମହୁମାଛି ତିଆରି କରି ପାରେ ତା ନୁହେଁ । ପ୍ରକୃତି ମଧ୍ୟ ମହୁମାଛି ସଦୃଶ ଅନେକ କିଛି ସୃଷ୍ଟି କରିଛି । ଉଦାହରଣ ସ୍ୱରୂପ ବିରୁଡ଼ି ଓ ମହୁମାଛି ପରି ଅନେକ ମାଛି ଅଛନ୍ତି । ସେମାନଙ୍କୁ ବାଘୁଆ ବିରୁଡ଼ି ଓ ବାଘୁଆ



ବାଘୁଆ ବିରୁଡ଼ିମାନେ

ମହୁମାଛି କହନ୍ତି । ବୈଜ୍ଞାନିକମାନେ ଏକଥା ଖୁବ୍ ଅଳ୍ପ ଦିନ ପୂର୍ବେ ଜାଣି ପାରିଥିଲେ : ପ୍ରକୃତ ବିରୁଡ଼ି ଓ ପ୍ରକୃତ ମହୁମାଛି ଏବଂ ବାଘୁଆ ବିରୁଡ଼ି ଓ ବାଘୁଆ ମହୁମାଛି ମଧ୍ୟରେ ସାମଞ୍ଜସ୍ୟ କେବଳ ଗଢ଼ଣରେ ନୁହେଁ, ସେମାନେ ଏକା ଭଳି ଡେଣା ହଲନ୍ତି । ବାଘୁଆ ମହୁମାଛି କିମ୍ବା ବାଘୁଆ ବିରୁଡ଼ି ଉଡ଼ି ଆସି ଅନ୍ୟମାନଙ୍କୁ ଖବର ଦିଏ "ମୁଁ ମହୁମାଛି, ମୁଁ ମହୁମାଛି" କିମ୍ବା "ମୁଁ ବିରୁଡ଼ି, ମୁଁ ବିରୁଡ଼ି" ।

ଏହାକୁ କେହି ବାଧା ଦିଅନ୍ତି ନାହିଁ – କିଏ ଚାହେଁ ମହୁମାଛି ବା ବିରୁଡ଼ି ବିନ୍ଧା ଖାଇବାକୁ । ପ୍ରକୃତ ବିରୁଡ଼ି ଓ ମହୁମାଛି ଭଳି ଯଦି ଗଢ଼ଣରେ ଓ ଶବ୍ଦ ସୃଷ୍ଟି କରିବାରେ ସେମାନେ ଦେଖିବାକୁ ଏକା, ତେବେ କେମିତି ପ୍ରତାରଣା କଥା ଜଣାପଡ଼ିବ ?

ଖରାଦିନେ ଜଂଗଲ ଭିତରେ ଥିବା ପଡ଼ିଆରେ ଠିଆ ହେଲେ, ଫୁଲ ଓ ଖରାରେ ଶୁଖି ଯାଇଥିବା ମାଟିର, ମହୁ ଓ ଶିଉଳିର ଗନ୍ଧ ନାକରେ ବାଜେ । ସତେ ଯେପରି ବାୟୁମଣ୍ଡଳଟା ଏହିସବୁ ସୁଗନ୍ଧରେ ଭରି ଯାଇଛି । ଚାରିଆଡ଼େ କିନ୍ତୁ ଶୁନ୍‌ଶାନ୍ । ଆଶ୍ଚର୍ଯ୍ୟଜନକ ଏହି ଜଂଗଲର ନିଛାଟିଆ ପରିବେଶ । ଏହି ଜଂଗଲର ବକ୍ଷରେ ଭରି ରହିଛି ବିଭିନ୍ନ ଜୀବଜନ୍ତୁଙ୍କର ହଜାର ହଜାର ବିଭିନ୍ନ ପ୍ରକାରର ଶବ୍ଦ । ତାହାରି ମଧ୍ୟରେ ଅଛି ମହୁମାଛିର ଗୁଞ୍ଜନ ଓ ଝିଣ୍ଡିକାର ଝିଁ ଝିଁ ଝଙ୍କାର । ତାଭିତରେ ଅଛି କକିମାନଙ୍କର ଡେଣା ଝାଡ଼ିବାର ଫର ଫର ଆଓ୍ୱାଜ ଓ ମଶାମାନଙ୍କର ଗୁଁ ଗୁଁ ଶବ୍ଦ । ଏହା ହେଲା କୀଟ ପତଙ୍ଗମାନଙ୍କର କଥାବାର୍ତ୍ତା । ସେମାନେ କେଉଁ ବିଷୟରେ କଥା ହୁଅନ୍ତି ? ସେସବୁ ମଧ୍ୟରୁ ଆମେ ଅଳ୍ପ କିଛି ଜାଣିଛେ । ଏବେ ଆହୁରି ଅନେକ କଥା ଅଜଣା ରହିଛି । ସେସବୁକୁ ଜାଣି ପାରିଲେ ଆମେ ଆଉରି ଆଶ୍ଚର୍ଯ୍ୟ ହେବା ।

## ନାବିକଙ୍କ ଦୋଷ ଓ କେଉଟଙ୍କ ଗୁପ୍ତ ରହସ୍ୟ

ସୋଭିଏତ୍ ଦେଶର ମହାନ୍ ଦେଶପ୍ରେମୀ ଯୁଦ୍ଧ ସମୟରେ (୧୯୪୧-୧୯୪୫) ଉତ୍ତର ସାଗରର ନୌବାହିନୀରେ ଏପରି ଜଣେ ହେଲେ ଲୋକ ନଥିଲେ, ଯେ କି ମେଜର ବାରାବାସ୍‌ଙ୍କ ନାମ ଶୁଣି ନଥିଲେ । ଫାସିଷ୍ଟ ପକ୍ଷର ଜାହାଜର ଆଗମନ କଥା ଜାଣିବାରେ ବାରାବାସ୍‌ଙ୍କର ଅସାଧାରଣ କୌଶଳ ଓ ଆଶ୍ଚର୍ଯ୍ୟ ବୁଦ୍ଧିମତା ସମସ୍ତଙ୍କୁ ଜଣାଥିଲା ।

ଏପରି ଏକ ସ୍ୱତନ୍ତ୍ର ଯନ୍ତ୍ର ଅଛି, ଯାହା ସାହାଯ୍ୟରେ ବୁଡ଼ାଜାହାଜରୁ ଅତି ଅଳ୍ପ ଦୂରରୁ ଅନ୍ୟ ଜାହାଜର ଆଗମନ କଥା ଜାଣିହୁଏ । କିନ୍ତୁ ଜାହାଜଟି କେଉଁ ପ୍ରକାରର, କେଉଁଠି ଅଛି ଓ କେଉଁ ଦିଗକୁ ଗତି କରୁଛି – ଏହି ସବୁ ପ୍ରଶ୍ନର ଉତ୍ତର ଦେବାକୁ ହେଲେ ସ୍ୱତନ୍ତ୍ର କଥାସବୁ ଜାଣିବା ଦରକାର । ଯେଉଁ ବୁଡ଼ାଜାହାଜରେ ମେଜର ବାରାବାସ୍ କାମ କରୁଥିଲେ, ସେଥିରେ କୌଣସି ସ୍ୱତନ୍ତ୍ର ଯନ୍ତ୍ରର ଆବଶ୍ୟକତା ନଥିଲା । ଜଳ ଭିତରେ ଶବ୍ଦ ପରିମାପକ ଯନ୍ତ୍ର – "ହାଇଡ୍ରୋଫୋନ୍" (ଜଳଫୋନ୍) ବ୍ୟତୀତ ମେଜର ବାରାବାସ୍‌ଙ୍କ ପାଇଁ ଅନ୍ୟ କିଛିର ଆବଶ୍ୟକ ନଥିଲା । ଗୋଟିଏ ମାତ୍ର ଶବ୍ଦରୁ ସେ ସଠିକ୍ ରୂପେ ସ୍ଥିର କରି ପାରୁଥିଲେ, କି ପ୍ରକାରର ଜାହାଜ, କେତେ ଦୂରରେ ଅଛି ଓ କେଉଁ ଦିଗକୁ ଯାଉଛି । ବାରାବାସ୍‌ଙ୍କର ନିର୍ଦ୍ଦେଶ ପାଇ ଜାହାଜସବୁ ଆକ୍ରମଣ ଲାଗି ପ୍ରସ୍ତୁତ ହେଉଥିଲା ଏବଂ କେବେହେଲେ ବାରାବାସ୍ ଭୁଲ କରୁନଥିଲେ ।

ଥରେ ଗୋଟିଏ ଅଶୁଭ ଦିନରେ ବାରାବାସ୍ ଜାହାଜ ଆଗମନର ଶବ୍ଦ ଶୁଣିବାକୁ ପାଇଲେ ଏବଂ ହଠାତ୍ ଜାଣି ପାରିଲେ ଯେ, ଶତ୍ରୁ ପକ୍ଷରୁ ଗୁଡ଼ାଏ ଜାହାଜ ଆସୁଛି । ଶତ୍ରୁ ଜାହାଜସବୁ କେତେ ଦୂରରେ ଅଛି ଏବଂ କେଉଁ ଆଡ଼କୁ ଗତି କରୁଛି ଜାଣିବା କଷ୍ଟକର ନଥିଲା । କ୍ୟାପ୍‌ଟେନ୍ ଶତ୍ରୁ ଉପରେ ଆକ୍ରମଣ କରିବା ପାଇଁ ଠିକ୍ କଲେ । ଏହାର ଅର୍ଥ ହେଲା : ପାଣି ଭିତରୁ ବୁଡ଼ାଜାହାଜଟି ଉପରକୁ ଉଠି ଆକସ୍ମିକ ଭାବେ ଶତ୍ରୁ ଜାହାଜ ଉପରକୁ ଗୁଳି ଚଳାଇ, ଖୁବ୍ ଶୀଘ୍ର ପାଣି ଭିତରେ ଛପି ଯିବ । ଆକ୍ରମଣ କରିବାକୁ ସବୁକଥା ଠିକ୍ ହୋଇଗଲା, କିନ୍ତୁ ଆକ୍ରମଣ ହୋଇ ପାରିଲା ନାହିଁ । କାରଣ ବୁଡ଼ାଜାହାଜଟି ପାଣି ଭିତରେ ଶତ୍ରୁ ଜାହାଜର ସନ୍ଧାନ ପାଇଲା ନାହିଁ । ଏହି ଆକ୍ରମଣର ବିପଦ ସଙ୍କେତ ଦେଇଥିଲେ ମାଛମାନେ ।

ନିଜର ଭୁଲ ଯୋଗୁ ମେଜର ବାରାବାସ୍ ଖୁବ୍ ଅନୁତାପ କଲେ । ମାତ୍ର ପରେ ଜଣା ପଡ଼ିଲା ଯେ, ମେଜରଙ୍କର କୌଣସି ଦୋଷ ନଥିଲା । ମାଛମାନେ ଯେଉଁ ଶବ୍ଦ କରିଥିଲେ, ପାଣିଭିତରେ ତାହା ଜାହାଜ ଆଗମନର ଶବ୍ଦ ସହିତ ସମାନ ଥିଲା ।

ମେଜର ବାରାବାସ୍ ସେତେବେଳେ ଆମେରିକାନ୍ ନାବିକମାନଙ୍କର ଭୁଲ ବିଷୟରେ ଜାଣି ନଥିଲେ । ଏହି ଭୁଲ ବିଷୟରେ ଜାଣିଥିଲେ, ହୁଏତ ସେ ନିଜର ଦୋଷ ନେଇ ଏତେ ଅନୁତପ୍ତ ହୋଇ ନଥାନ୍ତେ ।

୧୯୪୨ ମସିହାର ବସନ୍ତ ଋତୁରେ ଆମେରିକାର ନୌସେନାଙ୍କୁ ଏକ ଅଦ୍ଭୁତ କଥା ବିବ୍ରତ କରି ଦେଇଥିଲା । ଆଟ୍‌ଲାଣ୍ଟିକ ମହାସାଗର ଉପକୂଳରେ, ଶତ୍ରୁ ପକ୍ଷର ବୁଡ଼ାଜାହାଜ ଆଗମନ ସମ୍ବନ୍ଧରେ ସତର୍କ କରାଇ ଦେବାକୁ ଏବଂ ଭୂପୃଷ୍ଠର ନିରାପତ୍ତା ରକ୍ଷା ପାଇଁ ଯେଉଁ ସ୍ୱତନ୍ତ୍ର ଯନ୍ତ୍ର ପାଣି ଭିତରେ ରଖା ଯାଇଥିଲା, ତହିଁରେ ଏକ ଆଶ୍ଚର୍ଯ୍ୟ ରକମର ଶବ୍ଦ ଶୁଣାଗଲା । ଏହି ଶବ୍ଦକୁ ସଙ୍ଗେ ସଙ୍ଗେ ଉପକୂଳକୁ ଜଣାଇ ଦିଆଗଲା । ଶବ୍ଦ କ୍ରମଶଃ ବଢ଼ି ଚାଲିଲା ଓ ଏତେ ତୀବ୍ର ହୋଇ ଉଠିଲା ଯେ, ତଟବର୍ତ୍ତୀ ଅଞ୍ଚଳର ଲୋକମାନେ ରାତିସାରା ଶୋଇପାରିଲେ ନାହିଁ । ଏହି ଶବ୍ଦ ବୁଡ଼ାଜାହାଜର ଆଗମନର ଶବ୍ଦ ଭଳି ନଥିଲା । ମନେ ହେଉଥାଏ ସତେ ଯେପରି

କୌଣସି ଜୀବନ୍ତ ଜୀବଠାରୁ ସେ ଶବ୍ଦ ଆସୁଛି । ତେବେ ଏହି ଶବ୍ଦ କଅଣ ? ଜୀବ ବିଜ୍ଞାନୀମାନେ ଏହି ପ୍ରଶ୍ନର ସଠିକ୍ ଉତ୍ତର ଦେଇ ପାରିଲେ ନାହିଁ । ସାରି ଆଡ଼େ ଆତଙ୍କ ଖେଳିଗଲା ଯେ, ଶତ୍ରୁ ପକ୍ଷରୁ କୌଣସି ନୂତନ ଅସ୍ତ୍ର ପରୀକ୍ଷା କରାଯାଉଛି । ଏ ସବୁ ଘଟିଗଲା ପରେ, ସେନା ବାହିନୀର କମାଣ୍ଡର ଆବଶ୍ୟକ ପଦକ୍ଷେପ ନେଇ ଶତ୍ରୁ ଆକ୍ରମଣକୁ ପ୍ରତିହତ କରିବାର ସିଦ୍ଧାନ୍ତ ନେଲେ । ଘଣ୍ଟାକୁ ଘଣ୍ଟା ପରିସ୍ଥିତି ଉତ୍ତେଜନାପୂର୍ଣ୍ଣ ହୋଇ ଉଠିଲା । ଏସବୁ ସତ୍ତ୍ୱେ ଶତ୍ରୁ ଆକ୍ରମଣ କଲା ନାହିଁ ।

ପରେ ଜଣା ପଡ଼ିଲା ଯେ, କେତେଗୁଡ଼ିଏ ଛୋଟ ମାଛ ଉପସାଗର ଆଡ଼କୁ ଅଣ୍ଡା ଦେବାକୁ ଆସିଥିଲେ ।

ବୈଜ୍ଞାନିକମାନେ ଅବଶ୍ୟ ମାଛ ଦେଉଥିବା ଶବ୍ଦ ଜାଣିବାକୁ ଆଗ୍ରହୀ ହୋଇ ପଡ଼ିଲେ । ଦେଶ ବିଦେଶର ମାଛଙ୍କୁ ଶୁଣିବାକୁ ଲାଗିଲେ, ଏଥିପାଇଁ ସ୍ୱତନ୍ତ୍ର ଯନ୍ତ୍ର ମଧ୍ୟ ତିଆରି କରାଗଲା । ଲୋକମାନେ ପ୍ରକୃତ କଥା ଜାଣିବାକୁ ନିର୍ଦ୍ଦିଷ୍ଟ ଅଭିଯାନ ଚଳାଇଲେ ଓ ସ୍ୱତନ୍ତ୍ର ଜଳାଶୟମାନ ତିଆରି କଲେ । ପ୍ରଥମେ କାମ ସେତେ ଦ୍ରୁତ ଗତିରେ ଆଗେଇ ପାରିଲା ନାହିଁ, କାରଣ ମଣିଷ ମନରେ ଦୀର୍ଘ ଦିନର ରହି ଆସିଥିବା ଦୃଢ଼ ଧାରଣାଟି ଥିଲା ଯେ, ମାଛମାନେ ନିରବ ଓ ମୂକ ଜୀବ । ଏହି ଧାରଣାକୁ ପଛକୁ ପକାଇ ଦେବା ସହଜ ନଥିଲା । ଏପରିକି "ମାଛ ପରି ମୂକ" ବୋଲି ଅନେକ ଦେଶରେ ଲୋକ କଥା ମଧ୍ୟ ରହିଛି ।

ଏହା ସହିତ ବିପରୀତ ବୋଧକ ଭଳି ଅନେକ ଦିନରୁ ମଣିଷକୁ ଜଣାଥିଲା ଯେ, ମାଛ ସେ ଭଳି ସ୍ୱରହୀନ ଜୀବ ନୁହାନ୍ତି ।

ସମୁଦ୍ର କୂଳରେ ବାସ କରୁଥିବା କେତେକ ଆଫ୍ରିକୀୟ ଦେଶର ଲୋକ, ସାରା ଜୀବନ ମାଛଧରି ଗୁଜରାଣ ମେଣ୍ଟାନ୍ତି । ଏହି ଲୋକଙ୍କ ମଧ୍ୟରୁ ସବୁଠୁ ସମ୍ମାନୀୟ ବ୍ୟକ୍ତି ହେଲେ ମାଛମାନଙ୍କର ସ୍ୱର ବାରି ପାରୁଥିବା ଲୋକ । ମାଛ ଧରାଗଲେ ଏହି ଲୋକମାନେ ବେଶି ଭାଗ ନିଅନ୍ତି, ଯଦିବା ତାଙ୍କର କାମ ହେଲା ମାଛଙ୍କର ସ୍ୱର ଶୁଣି କେବଳ କେଉଟଙ୍କୁ ଏ ସଂପର୍କରେ ଖବର ଦେବା ।

ବେଳେବେଳେ ଏହି ସ୍ୱରର ଶ୍ରୋତା, ପାଣି ଭିତରେ ବୁଡ଼ିରହି ଗଭୀର ଜଳ ଭିତରୁ ଆସୁଥିବା ଶବ୍ଦ ଶୁଣନ୍ତି ।

ପଶ୍ଚିମ ଆଫ୍ରିକାର ମତ୍ସ୍ୟଜୀବୀମାନେ, ନିକଟରେ ମାଛ ଅଛନ୍ତି ନା ନାହିଁ ଜାଣିବାକୁ, ଡଙ୍ଗାର କାଠକୁ ସିଧାକରି ପାଣି ଭିତରକୁ ଛାଡ଼ି ଦେଇ କାଠର ଅଗ୍ରାଂଶରେ କାନ ଦେଇ ଶବ୍ଦ ଶୁଣନ୍ତି । ପାଣି ଭିତରେ କାଠ ହେଉଛି ଶବ୍ଦର ସୁବାହକ, ତେଣୁ ଠିକ୍ କେଉଁ ଜାଗାରେ ଜାଲ ପକାଇବାକୁ ପଡ଼ିବ, ଧୀବରମାନେ ଜାଣି ପାରନ୍ତି ।

ମତ୍ସ୍ୟଜୀବୀମାନେ ମାଛର କଣ୍ଠସ୍ୱର ଜରିଆରେ ମାଛର ସ୍ଥିତି ଜାଣି ପାରନ୍ତି । ସେମାନେ ଜାଣନ୍ତି ଯେ, ମାଛ କଥାବାର୍ତ୍ତା କରେ, ଏପରିକି ମାଛମାନେ ମଧ୍ୟ ଗପୁଡ଼ି । ଆଜି ଯେତେବେଳେ ପାଣିତଳେ ଶବ୍ଦ ବାହକ ବିଭିନ୍ନ ପ୍ରକାର ସ୍ୱତନ୍ତ୍ର ଯନ୍ତ୍ର ମଣିଷକୁ ଶବ୍ଦ ଶୁଣିବାରେ ସାହାଯ୍ୟ କରିଛି, ସେତେବେଳେ ଜଣା ପଡ଼ିଛି ଯେ, ପାଣି ଭିତରଟା ନିରବ ରାଜ୍ୟ ନୁହେଁ । ଅପର ପକ୍ଷରେ ଯଦି ଗୋଟିଏ ଜଳଫୋନ୍‌କୁ ତୁମେ ପାଣି ଭିତରେ ଅଳ୍ପ ତଳକୁ ପକାଇ ଦିଅ, ତେବେ ତୁମେମାନେ ବିଭିନ୍ନ ରକମର ଅଦ୍ଭୁତ ସ୍ୱରର ଲହରୀ ଓ ଅଗ୍ନକ ଶବ୍ଦ ସବୁ ଶୁଣି ପାରିବ । ଏହା ହେଉଛି ପାଣି ଭିତର ରାଜ୍ୟର କିଁ କିଁ ଚିଁ ଚିଁ ସିଁ ସିଁ ଶବ୍ଦ ।

ପାଣି ଭିତର ରାଜ୍ୟର ଏହି ସବୁ ଶବ୍ଦକୁ ବୈଜ୍ଞାନିକମାନେ ଦୁଇ ଭାଗରେ ବିଭକ୍ତ କରିଛନ୍ତି ।

ପ୍ରଥମତଃ, ପାଣି ଭିତରେ ଖାଦ୍ୟ ଖାଇବା ଓ ପହଁରିବା ଫଳରେ ସୃଷ୍ଟି ହେଉଥିବା ଶବ୍ଦ । ବୈଜ୍ଞାନିକମାନେ ଏହାକୁ "ଜୀବ ଜଗତୀୟ କୋଳାହଳ" ନାମ ଦେଇଛନ୍ତି । ମାଛମାନଙ୍କର ଚିତ୍କାର, କ୍ରନ୍ଦନ ଓ ପାଣି ଭିତରେ କରୁଥିବା ଅନ୍ୟାନ୍ୟ ଶବ୍ଦକୁ ଦ୍ୱିତୀୟ ଗୋଷ୍ଠୀଭୁକ୍ତ କରି ବୈଜ୍ଞାନିକମାନେ "ଜୀବ ଜଗତୀୟ ଧ୍ୱନି" ନାମ ଦେଇଛନ୍ତି । ଏହା ହେଲା ମାଛଙ୍କର ଭାଷା ଓ ସେମାନଙ୍କର କଥାବାର୍ତ୍ତା । ସେହି ବିଷୟରେ ହିଁ ଜାଣିବାକୁ ଆମେ ଆଗ୍ରହୀ ।



## ଗାୟିକା ଜଳପରୀ, ଗପୁଡ଼ି ଓ ଜଳଦସ୍ୟୁ

ମାଛମାନେ ମୂକ ବୋଲି ଯେଉଁସବୁ ଲୋକକଥା ଓ ଢଗ ଆଗକାଳରେ ଥିଲା, ତାହା ଗଲା କୁଆଡ଼େ ? ଅବଶ୍ୟ ଯେଉଁ ଲୋକେ ଏହି ସବୁ ଢଗ ଢମାଳୀ ମାଛଙ୍କୁ ନେଇ ସୃଷ୍ଟି କରିଥିଲେ, ମାଛମାନେ ମୂକ ବୋଲି ଭାବିବା ଲାଗି ସେମାନଙ୍କର ବଳିଷ୍ଠ ଯୁକ୍ତି ଥିଲା । କାରଣ ମାଛମାନେ କଥାବାର୍ତ୍ତା କରନ୍ତି କି ନାହିଁ ଜାଣିବାକୁ ହେଲେ ପାଣି ଭିତରେ ବୁଡ଼ିରହି ଶୁଣିବାକୁ ପଡ଼ିବ କିମ୍ବା କୌଣସି ସ୍ୱତନ୍ତ୍ର ଯନ୍ତ୍ର ବ୍ୟବହାର କରିବାକୁ ହେବ । (ଜଳଫୋନ୍ ନହେଲେ ମଧ୍ୟ ଅନ୍ତତଃ ତଙ୍ଗାର ଆହୁଲକୁ ବ୍ୟବହାର କରିବାକୁ ପଡ଼ିବ ।)

ଆମାଜନ୍ ନଦୀ କୂଳରେ ଥରେ ଜଣେ ପର୍ଯ୍ୟଟକ ଏକ ଅଦ୍ଭୁତ ଉଚ୍ଚ ଶବ୍ଦ ଶୁଣି ବିଚଳିତ ହୋଇଗଲେ । କଷ୍ଟ ହେଲେ ମଣିଷ ଯେପରି ଓଃ, ଆଃ ଶବ୍ଦ କରେ ଓ ଦୀର୍ଘ ନିଃଶ୍ୱାସ ନେଲେ ଯେପରି ଶୁଣାଯାଏ, ନଦୀ କୂଳରେ ଠିକ୍ ସେହିପରି ଶୁଣାଯାଉଥିଲା । ପାଣି ଭିତରୁ ଏହି ଶବ୍ଦ ଆସୁଥିଲା ଏବଂ ଏହା ଥିଲା ଆମାଜନ୍ ନଦୀରେ ରହୁଥିବା ମାଛମାନଙ୍କର "ଗାୟନ" ।

ମଣିଷ ବେଳେବେଳେ କୌଣସି ସ୍ୱତନ୍ତ୍ର ଯନ୍ତ୍ରର ସାହାଯ୍ୟ ବିନା ମଧ୍ୟ ମାଛମାନଙ୍କର କଣ୍ଠସ୍ୱର ଶୁଣିପାରେ, ମାତ୍ର କଦବା କେମିତି ।

କଥା ହେଲା, ପାଣି ଭିତରେ ସୃଷ୍ଟି ହେଉଥିବା ଶବ୍ଦ ଉପରକୁ ଆସିଲା ବେଳକୁ ସମ୍ପୂର୍ଣ୍ଣରୂପେ ବିଲୀନ ହୋଇ ଯାଏ ଓ ଶୁଣା ଯାଏ ନାହିଁ । ପାଣି ଭିତରୁ ବାୟୁମଣ୍ଡଳକୁ (ସେହିପରି ବାୟୁମଣ୍ଡଳରୁ ପାଣି ଭିତରକୁ) ଯାଉଥିବା ଶବ୍ଦର ଶତକଡ଼ା ମାତ୍ର ୦.୧ ଭାଗ ଶୁଣାଯାଏ ।

ସତେ ଯେପରି ବାୟୁମଣ୍ଡଳ, ପାଣି ଭିତରୁ ଆସୁଥିବା ଶବ୍ଦକୁ "ଗ୍ରହଣ କରୁ ନାହିଁ" । ସମୁଦ୍ର-ବୁଡ଼ାଳି ଓ ସମୁଦ୍ର ଗର୍ଭରେ ସନ୍ତରଣକାରୀମାନେ ମଧ୍ୟ ସମୁଦ୍ର ଭିତର ଶବ୍ଦ ଶୁଣି ପାରନ୍ତି ନାହିଁ, କାରଣ ସମସ୍ତଙ୍କ କାନ ଉପରେ ବାୟୁ ପରଦା ରହିଥାଏ ।

ପର୍ଚ (କିରାକ୍ଲୋଷମ୍) ମାଛ

ଉପରୁ ପାଣି ଭିତରକୁ ଆସୁଥିବା ଶବ୍ଦକୁ ଜଳ ଯେପରି ଗ୍ରହଣ କରେ ନାହିଁ, ସେହିଭଳି ପାଣି ଭିତରୁ ଉପରକୁ ଆସୁଥିବା ଶବ୍ଦକୁ ବାୟୁ ଗ୍ରହଣ କରେ ନାହିଁ ।

କିନ୍ତୁ ପାଣି ଭିତରେ ଶବ୍ଦ ସଂଚରଣ ଖୁବ୍ ଶୀଘ୍ର ହୋଇଥାଏ । ଜଳ ଭିତରେ ଶବ୍ଦ ବାୟୁମଣ୍ଡଳ ଅପେକ୍ଷା ପାଞ୍ଚ ଗୁଣ ଅଧିକ ବେଗରେ ଗତି କରେ । ବାୟୁମଣ୍ଡଳରେ ଶବ୍ଦର ଗତି ପ୍ରତିସେକେଣ୍ଡରେ ୩୦୦ ମିଟର ହେଲେ, ପାଣି ଭିତରେ ତାହା ପ୍ରାୟ ୧୫୦୦ ମିଟର !



ସମୁଦ୍ର ଗର୍ଣାର୍ଡ



ରୋହ୍ ମାଛ

ଏବେ ଗୋଟିଏ ପ୍ରଶ୍ନର ବ୍ୟାଖ୍ୟା କରିବା : ପାଣି ଭିତରର ଏହି ଶବ୍ଦ କ'ଣ ? ଯେଉଁ ଶବ୍ଦ ଆମେ ଶୁଣୁଛେ, ଯାହା ଶୁଣିବାରେ ଆମେ ଅଭ୍ୟସ୍ତ – ଅଥବା ବାୟୁମଣ୍ଡଳରେ ଯାହା ଶୁଣାଯାଉଛି – ତାହା ହେଉଛି ବାୟୁମଣ୍ଡଳରେ ତରଙ୍ଗ ସୃଷ୍ଟିର ଶବ୍ଦ । ଉଦାହରଣ ସ୍ୱରୂପ ତୁମେ ଯେତେବେଳେ ଢୋଲ ଉପରେ କାଠି ଖଣ୍ଡେ ଧରି ଆଘାତ କର ତାହା ଦ୍ୱାରା ଢୋଲ ଉପରେ ଶକ୍ତ ଭାବେ ଭିଡ଼ାଯାଇଥିବା ଚମଡ଼ା ଥରି ଉଠେ, ଫଳରେ ବାୟୁମଣ୍ଡଳରେ ତରଙ୍ଗ ସୃଷ୍ଟି ହୁଏ । ଏହି ତରଙ୍ଗମାଳା ତୁମର କାନରେ ଆସି ପହଞ୍ଚେ ଏବଂ ତୁମ କାନର ପରଦା ଉପରେ ଏହି ତରଙ୍ଗର ସିଧାସଳଖ ପ୍ରଭାବ ପଡ଼ିବାରୁ କାନ ପରଦା ତରଙ୍ଗାୟିତ ହୁଏ । ଢୋଲ ପିଟିବାର ଶବ୍ଦ ତୁମେ ଶୁଣିପାର ।

ପାଣି ଭିତରେ ଶବ୍ଦ – ଏହା ମଧ୍ୟ ତରଙ୍ଗର ଫଳ । ମାତ୍ର ଏହା ବାୟୁମଣ୍ଡଳର ତରଙ୍ଗ ନୁହେଁ, ଜଳ ତରଙ୍ଗର ଫଳ । ତୁମ ମନରେ ପ୍ରଶ୍ନ ଉଠି ପାରେ : କିପରି ମାଛମାନେ ଏହି ଜଳ ତରଙ୍ଗ ସୃଷ୍ଟି କରନ୍ତି ? ମଣିଷ, ଜୀବଜନ୍ତୁ ଓ ଚଢ଼େଇମାନେ ସିନା ଜିଭ, ଗଳା ଓ ଫୁସ୍‌ଫୁସ୍ ସାହାଯ୍ୟରେ ଶବ୍ଦ କରନ୍ତି, କିନ୍ତୁ ମାଛମାନେ ଶବ୍ଦ କରନ୍ତି କିପରି ?

ଆଶ୍ଚର୍ଯ୍ୟ କଥା, କଥାବାର୍ତ୍ତା ହେବା ପାଇଁ ଏବଂ ସଙ୍କେତ ଦେବା ଲାଗି ମାଛମାନଙ୍କ ପେଟ ଭିତରେ ଥିବା ବାୟୁପୂର୍ଣ୍ଣ ମୁଣା ବା ପୁଙ୍ଗି କାର୍ଯ୍ୟ କରେ ।

ଏହି ପୁଙ୍ଗି ଚାରିପଟେ ବିଶିଷ୍ଟ ମାଂସପେଶୀ ରହିଛି । ଏହି ମାଂସପେଶୀ ଢୋଲ ପିଟିଲା ପରି ପୁଙ୍ଗି ଉପରେ ଆଘାତ କରେ । ଏପରିକି କେତେକ ମାଛ ଠିକ୍ ଢୋଲ ପିଟା ଭଳି ଶବ୍ଦ ସୃଷ୍ଟି କରିବାକୁ ସମର୍ଥ ହୋଇ ଥାନ୍ତି । ପେଟ ଭିତରେ ଥିବା ପୁଙ୍ଗି ଏହି ଶବ୍ଦକୁ ବହୁଗୁଣିତ କରେ ଏବଂ ଦେହ ଭିତରୁ ସେ ଶବ୍ଦ ବାହାରକୁ ପ୍ରକାଶ ପାଏ ।

ଅନ୍ୟ କେତେକ ମାଛଙ୍କ ପାଇଁ "ଢୋଲ"ର କାମ କରେ ତାଙ୍କ ଦେହରେ ଥିବା ଗୋଟିଏ ବିଶିଷ୍ଟ କ୍ଷୁଦ୍ର କଣା, ଯାହାର ଚାରିପଟ ସୂକ୍ଷ୍ମ ପରଦାରେ ଶକ୍ତ ଭାବେ ଆବଦ୍ଧ ।

ଏହି ସୂକ୍ଷ୍ମ ପରଦା ଉପରେ ମାଛ ତା'ର ଡେଣାରେ ଥିବା ସରୁ ସରୁ ରେଖା ସାହାଯ୍ୟରେ ଆଘାତ କରେ ।



ଦୂଳାମାଛ

ଯଦି ମାଛମାନେ ବିଭିନ୍ନ ଶବ୍ଦ ସୃଷ୍ଟି କରି ପାରନ୍ତି, ତେବେ କ'ଣ ସେମାନେ ଶବ୍ଦ ଶୁଣି ପାରନ୍ତି ? ସେମାନେ ସତରେ ଶୁଣି ପାରନ୍ତି । ବୈଜ୍ଞାନିକମାନେ କଥାବାର୍ତ୍ତା କରି ପାରୁଥିବା ଭଳି ହଜାରରୁ ଅଧିକ ପ୍ରକାରର ମାଛଙ୍କୁ ଜାଣି ପାରିଛନ୍ତି । ଏ ପର୍ଯ୍ୟନ୍ତ ଗୋଟିଏ ହେଲେ କାଲ ବା ନଶୁଣି ପାରିଲା ଭଳି ମାଛ ମିଳି ନାହିଁ । ଏଥିରୁ ଜଣାଗଲା କ'ଣ ମାଛଙ୍କର କାନ ନିଶ୍ଚୟ ରହିଛି ? ମାତ୍ର କାନ ତ ଦେଖିବାକୁ ମିଳୁନି, ଯେତେ ଖୋଜିଲେ ମଧ୍ୟ ତାହା ପାଇବା କଷ୍ଟ ।

ମାଛମାନଙ୍କର କାନ – ଏକ ପ୍ରକାର କୋମଳାସ୍ଥିର ଥଳୀ – ଏହା ମୁଣ୍ଡ ଭିତରେ ମସ୍ତିଷ୍କର ଅଳ୍ପ ଦୂରରେ ରହିଥାଏ । ମାଛମାନଙ୍କର କାନର ବାହାରକୁ ବାଟ ନଥାଏ । ମାଛମାନଙ୍କ ପାଇଁ ଏହାର ଆବଶ୍ୟକତା ନାହିଁ । ମାଛର ଶରୀର ଶବ୍ଦକୁ ଦେହ ମଧ୍ୟରେ ନରଖି ବାହାରକୁ ଛାଡ଼ିଦିଏ, ତାହା ଆମକୁ ଜଣା । ଶବ୍ଦ ତରଙ୍ଗ ଖୁବ୍ ସହଜରେ ଭିତର କାନ ପର୍ଯ୍ୟନ୍ତ ପହଞ୍ଚି ପାରେ ।

ପାର୍ଚ୍ଚ ଜାତୀୟ ସବୁଜ ମାଛ



ଅଜୋଭ୍ ସାଗରରେ ରହୁଥିବା ଏକ ଗୋବି ମାଛ



ମାଛମାନଙ୍କର ଆଉ ହଳେ "କାନ" ରହିଛି । ଏହି କାନକୁ ଠେକୁଆ କିମ୍ବା ଗଧର କାନ ସହିତ ତୁଳନା କରାଯାଇ ପାରେ ନାହିଁ । ମାଛର ଲମ୍ବା ଯେତିକି, ଏହି କାନ ପ୍ରାୟ ସେତିକି ଲମ୍ବା । ଏହା ମାଛର ପେଟ ଦୁଇ ପଟେ ଲମ୍ବ ଭାବେ ପଡ଼ିଥିବା ଗହୀରିଆ ସରୁ ଗାର, ଯିଏକି ମାଛର ସମସ୍ତ ଶରୀରକୁ ଘେରିଥାଏ । ମାଛମାନଙ୍କର ଏହି ଦ୍ୱିତୀୟ କାନ ହଳକ ପୂର୍ବ ବର୍ଣ୍ଣିତ କାନ ଅପେକ୍ଷା କୌଣସି ଗୁଣରେ କମ୍ ନୁହେଁ । ହୋଇ ପାରେ, ମାଛଙ୍କ ଲଗି ଏହି କାନର ତାତ୍ପର୍ଯ୍ୟ ଅଧିକ । ପିଠି କଡ଼ର ଏହି ଗହୀରିଆ ସରୁ ଗାର ଦ୍ୱାରା ମାଛମାନେ ଅନେକ ଦୂରରୁ ଅନ୍ୟ ମାଛଙ୍କର ଆଗମନ ବିଷୟରେ ଜାଣି ପାରନ୍ତି । ମାଛମାନଙ୍କ ପିଠି କଡ଼ର ଗାରରେ ଥିବା ସ୍ନାୟୁ ଖୁବ୍ କୋମଳ ଓ ଅନୁଭବଶୀଳ ।



ଷ୍ଟରଜିୟନ ମାଛମାନେ

ନିଜ ରହିବା ଜାଗା ଯୋଗୁ ମାଛମାନେ ପରସ୍ପର ସହିତ ଲଢ଼େଇ ଲଗିଲେ ବେଳେ, ସମାନ୍ତରାଳ ଭାବରେ ପହଁରନ୍ତି ଓ ଲାଞ୍ଜ ଦ୍ୱାରା ନିଜର ପ୍ରତିଦ୍ୱନ୍ଦ୍ୱୀ ଆଡ଼କୁ ପାଣି ଫିଙ୍ଗନ୍ତି ।

ପାଣିର ଲହରୀ ଯାଇ ପ୍ରତିଦ୍ୱନ୍ଦ୍ୱୀ ମାଛର ପିଠି କଡ଼ରେ ଥିବା ଗାରରେ ବାଜେ ଏବଂ ଯେଉଁ ମାଛ ଏହି ପାଣି ଢେଉର ମାଡ଼ ସହ୍ୟ କରି ପାରେ ନାହିଁ, ସେହି ମାଛଟି ଲଢ଼େଇ ସ୍ଥାନରୁ ପଳାଇ ଯାଏ । ଯଦିବା ପରସ୍ପରକୁ ନଛୁଇଁ ମାଛ ଦୁଇଟି ଲଢ଼େଇ କରୁଥିଲେ ।

ମାଛମାନେ ଏହିପରି ପରସ୍ପର ସହିତ କଥା ହୁଅନ୍ତି । ଆମେ ଏବେ ସେମାନଙ୍କର କଥା ଶୁଣିବାକୁ ଚେଷ୍ଟା କରିବା । ସମୁଦ୍ର ପାଣିରେ ଜଳଫୋନ୍ ପକାଇ ସେହି ଯନ୍ତ୍ର ସାହାଯ୍ୟରେ ମାଛମାନଙ୍କ କଥାବାର୍ତ୍ତା ଅବଶ୍ୟ ଶୁଣିଥିଲେ କୌତୂହଳ ଜନ୍ମିଥାଆନ୍ତା । ହୁଏତ କେତେବେଳେ ତୁମକୁ ସମୟ ଓ ସୁଯୋଗ ମିଳିପାରେ ଏହା କରିବା ପାଇଁ । ମାତ୍ର ଆଜି ତୁମେ ମନେ କର ଯେ, ଆମେ ସମୁଦ୍ର ଭିତରକୁ ଗଲୁ ।

ସମୁଦ୍ରବାଳିଆ



ପାଣି ଭିତରେ ଆମେ ଥିବା ସମୟରେ ଘଣ୍ଟି ବାଜିଲା ପରି ଶବ୍ଦ ହେଲା । ସଙ୍ଗେ ସଙ୍ଗେ ଏହି ଶବ୍ଦ ବଦଳି ଯାଇ ବୀଣା ବାଜିଲା ପରି ଶୁଣାଗଲା । ଏହି ଶବ୍ଦ ସବୁ ହେଲା : ପାଟିକରି ଖେଳି ବୁଲୁଥିବା ପମ୍ଫ୍ରେଟ୍ (ସିନାଗ୍ଲୋସମ୍) ମାଛର ସ୍ୱର । ହଠାତ୍ ପୁଣି ହୁଇସିଲ୍ ବାଦନ, ଗୁବ୍‌ଗୁବ୍ ଶବ୍ଦ, ଭୁକିବା ଓ କଥ କଥ ଶବ୍ଦ—

ପମ୍ପେଟ୍ ମାଛର ଶବ୍ଦଠାରୁ ଅଧିକ ହୋଇ ଉଠିଲା । ଏଥିରୁ ଜଣାଗଲା ଯେ, କଥାପ୍ରେମୀ ସମୁଦ୍ର ଗଞ୍ଜାମାନେ ପରସ୍ପର ମଧ୍ୟରେ ଝଗଡ଼ା କରୁଛନ୍ତି । ମାତ୍ର ସେମାନଙ୍କର ଝଗଡ଼ା ମଧ୍ୟ ଶୁଣିବା ସମ୍ଭବ ହେଲା ନାହିଁ । କାରଣ ଖୁବ୍ ଉଚ୍ଚ ସ୍ୱରରେ ଶୁଣାଗଲା ଢୋଲ ବାଜିଲା ଭଳି ଶବ୍ଦ । ସମୁଦ୍ରରେ ଏକପ୍ରକାର ଡ୍ରମ୍‌ମାଛ ଢୋଲ ବାଜାଇଲା ଭଳି ଶବ୍ଦ କରୁଛନ୍ତି ।

ପୁଣି ହଠାତ୍ କେଉଁଠୁ ସୁସୁରି ଶବ୍ଦ ଶୁଣାଗଲା – ଷ୍ଟରଜିୟନ ମାଛ କରିଥିବ କିମ୍ବା ବେଙ୍ଗମୁହାଁ ମାଛ କରିଥିବ । ମନେ ହେଉଛି ବେଙ୍ଗମୁହାଁ ମାଛ କରିଛି ? ହଁ, ସେହିମାଛ । କାରଣ ସୁସୁରି ଶବ୍ଦପରେ ଆରମ୍ଭ ହୋଇଗଲା ସଁଅ ସଁଅ ଶବ୍ଦ । ତା'ପରେ ଶୁଣିବାକୁ ମିଳିଲା ଏକ ପ୍ରକାର ପାର୍ଚ ଜାତୀୟ ସବୁଜ ମାଛର ଠକ୍ ଠକ୍ ଶବ୍ଦ । ପୁଣି କିଏ କେଁକଟର, ଭେଁ ଭେଁ, ଗଁ ଗଁ ଶବ୍ଦ ଆରମ୍ଭ କରିଦେଇଛି । ଏହା ସବୁ ଆଜୋଭ୍ ସାଗରରେ ରହୁଥିବା ଏକ ଗୋବି ମାଛର ଶବ୍ଦ । ଚେଁ ଚେଁ କଲାଣି

ପାଇକ୍ ପର୍ଚ ମାଛ



ରୋଚ୍ ମାଛ ତ ଚିଁ ଚିଁ କଲାଣି ହେରିଂ ମାଛ । ଏହା ବ୍ୟତୀତ ସମୁଦ୍ର ଗର୍ଭରେ ଆମେ ଅନେକ ପ୍ରକାରର ଶବ୍ଦ ଶୁଣିବାକୁ ପାଉଥାଏ, ସେ ସବୁ ହେଲା କେଁ-କେଁ ଶବ୍ଦ, ଉଃ-ଉଃ, ଆଃ-ଆଃ, ଭେଁ-ଭେଁ, ଗୁଣୁଗୁଣୁ ଗୁଞ୍ଜନ, ଗମ୍ଭୀର ଗର୍ଜନ ଓ କୁଁ-କୁଁ ଶବ୍ଦ ... ।

ଆମେ କେବଳ କଳ୍ପନାରେ ଏହି ସବୁ ମାଛଙ୍କୁ ଏକାଠି କରି ପାରିବା । ବାସ୍ତବରେ ତାହା ଅସମ୍ଭବ ।

ପ୍ରକୃତରେ କହିବାକୁ ଗଲେ ଗୋଟିଏ ସ୍ଥାନରେ ସବୁ ପ୍ରକାରର ମାଛ ଦେଖିବାକୁ ମିଳନ୍ତି ନାହିଁ । କେତେକ ମାଛ ଉଷୁମ ପାଣିରେ ରହିବାକୁ ଭଲ ପାଆନ୍ତି



ହେରିଂ ମାଛ

ତ ଆଉ କେତେକ ଥଣ୍ଡା ପାଣିରେ ରହନ୍ତି । ସେହିପରି କେତେକ ମାଛ ଲୁଣି ପାଣିରେ ଓ ଆଉ କେତେକ ମଧୁର ପାଣିରେ ବାସ କରନ୍ତି ।

ଯେଉଁ ପ୍ରକାରର ପାଣିରେ ମାଛ ରହନ୍ତୁ ନା କାହିଁକି, ସେମାନେ କଥାବାର୍ତ୍ତା କରନ୍ତି ଏବଂ ପରସ୍ପରକୁ ଶୁଣନ୍ତି ।

ମାଛମାନଙ୍କ ପାଇଁ ପରସ୍ପରକୁ ଶୁଣିବା ଓ କଥା କହିବା ଦରକାର କ'ଣ ? ସଙ୍କେତ ଦେଇ ସେମାନେ କ'ଣ ପାଆନ୍ତି ?

ଆମେରିକାର ଆଟ୍‌ଲାଣ୍ଟିକ ମହାସାଗରର ଉପକୂଳରେ ସମୁଦ୍ରବାଳିଆମାନେ ରହନ୍ତି । ଏହି ଜାତୀୟ ବାଳିଆ କେବଳ ରାତିରେ ହିଁ ସଁଅ ସଁଅ ଗର୍ଜନ କରିଥାଆନ୍ତି । ଦିନରେ ମାଛମାନେ ସେତେ କର୍ମଠ ନୁହନ୍ତି । ସତେ ଯେପରି ସେମାନେ ଘୁମଉଥାଆନ୍ତି । ସେଥିପାଇଁ ସଁଅ ସଁଅ ଶବ୍ଦ ଶୁଣାଯାଏ ନାହିଁ । ଏହି ସଁଅ ସଁଅ ଶବ୍ଦ କ'ଣ ମଣିଷର ଜଙ୍ଗଲ ଉ-ଉ ଡାକ ଭଳି ନୁହେଁ ? "ମୁଁ ଏଇଠି । ତୁ କେଉଁଠି ?" ଏହିପରି ପ୍ରଶ୍ନ ପଚାରି ସେମାନେ କ'ଣ ରାତିର ସଙ୍କେତ ଦିଅନ୍ତି ନାହିଁ ? ଦଳରୁ ହଜି ଯିବା ଭୟରେ ସେମାନେ କ'ଣ ଚିତ୍କାର କରନ୍ତି ନାହିଁ ?

କଥାବାର୍ତ୍ତା ହୁଅନ୍ତି, ଚିଁ ଚିଁ କରନ୍ତି । ସମସ୍ତେ ଜାଣନ୍ତି ହେରିଂ ମାଛ କହୁଛି ।

ସମୁଦ୍ର ଗଞ୍ଜା – ଏହା ଏକ ମାଛ – ଏପରି ତା'ର ନାମ ଦିଆ ଯାଇଛି, କାରଣ ବେଳେବେଳେ କୁକୁଡ଼ାର "କଅ-କଅ" ଶବ୍ଦ ପରି ସେ ବୋବାଏ । ଭୟରେ ଏହା କଅ-କଅ ଶବ୍ଦ କରିଥାଏ । ତତ୍‌କ୍ଷଣାତ୍ ତା ଦଳର ମାଛମାନେ ଏହି ଶବ୍ଦ ଶୁଣି ପଳାଇ ଯାଆନ୍ତି । "କଅ-କଅ" ଶବ୍ଦ ଅନ୍ୟ ମାଛମାନଙ୍କୁ ସତର୍କ କରି କହେ, "ସାବଧାନ ! ଏଠି ବିପଦ ।"

ଏକ ଜଳଫୋନ୍ ସାହାଯ୍ୟରେ ସମୁଦ୍ର ଗଞ୍ଜା ଭୟ ପାଇଲେ କିପରି କଅ-କଅ କରେ, କିମ୍ବା ରୋଚ୍ ମାଛର ଲାଙ୍ଗୁଡ଼ ଧରିଲେ, ତାହା କିପରି ଚେଁ-ଚେଁ କରି ଉଠେ ଏବଂ ଷ୍ଟରଜିୟନ ମାଛକୁ ଆଘାତ ଦେଲେ ତାହା କିପରି ଚିତ୍କାର କରେ, ତାହା ଭଲ ଭାବେ ଶୁଣି ହୁଏ ।

ପାଇକ ପର୍ଚ ମାଛର କଥା ଦେଖାଯାଉ । ଏହି ମାଛ ତା ବସାକୁ ଜଗେ ।
ହଠାତ୍ ବସା ଆଡ଼କୁ ଅନ୍ୟ ଗୋଟିଏ ମାଛ ଆସିଲା ।
ତାକୁ ଦେଖି ପାଇକ ପର୍ଚ ମାଛଟି, ତା ଗାଲିସାକୁ ଟେକି କ୍ଷୀଣ ଶବ୍ଦ କଲା ।
ଆସୁଥିବା ଆଗନ୍ତୁକ ମାଛଟି ବୁଲିପଡ଼ି ତା ବାଟରେ ଚାଲିଗଲା ।


ରୂପେଲି ମାଛମାନେ

ସବୁବେଳେ ଏହି ଘଟଣାର ସମାପ୍ତି ଶାନ୍ତିପୂର୍ଣ୍ଣ ଉପାୟରେ ହୋଇ ନଥାଏ । ବୈଜ୍ଞାନିକମାନେ ଗର୍ଜନ କରୁଥିବା ଏକ ଜାତୀୟ ରୂପେଲି ମାଛର କଳିକୁ ରେକର୍ଡ କରିଥିଲେ । ସେମାନଙ୍କ କଥାବାର୍ତ୍ତା ଗୋଟିଏ ଖେଳଣା ବନ୍ଧୁକରୁ ଗୁଳି ଫୁଟାଇଲେ ଯେପରି ଶବ୍ଦ ହୁଏ, ତାହାରି ଭଳି । ଆମେ କଥାବାର୍ତ୍ତା ହେଉଥିବା ଭାଷାରେ ଯଦି ତାହାକୁ ଅନୁବାଦ କରାଯାଏ, ତେବେ ତାହାର ଅର୍ଥ ହେବ "ଚାଲି ଯାଆ" – "ଯିବୁନି !" – "ଯାଉଛୁ ନା ଦେଖିବୁ । ମାଡ଼ ହେବ" – "ମୁଁ ତୋତେ ଡରୁନି" । ଶେଷରେ ମାଛ ଦୁଇଟିଙ୍କ ମଧ୍ୟରେ ଲଢ଼େଇ ଲାଗିଲା ।

ନିଜର ବସା କିମ୍ବା ବାସସ୍ଥାନ ରକ୍ଷା କରିବାକୁ ଯାଇ ଅନେକ ମାଛ ଖୁବ୍ ଜୋରରେ ଶବ୍ଦ କରନ୍ତି । 'ନଟ୍ରୋପିସ୍' ମାଛ କାନଫଟା ଶବ୍ଦ କରନ୍ତି ତ 'ପଟଲ' ମାଛ ଗର୍ଜନ କରନ୍ତି ।

ଅଣ୍ଡିରା ମାଛମାନେ ଯେତେବେଳେ ମାଈ ମାଛ ପଛରେ ଧାଇଁ ବୁଲନ୍ତି, ସେତେବେଳେ ସେମାନେ ସୃଷ୍ଟି କରୁଥିବା ଶବ୍ଦ ଭିନ୍ନ ପ୍ରକାରର ହୋଇଥାଏ । ନଟ୍ରୋପିସ୍ ମାଛ ସାଧାରଣତଃ ତା'ର ପ୍ରତିଦ୍ୱନ୍ଦ୍ୱୀକୁ ଦୂରେଇ ଦେବା ପାଇଁ ଗର୍ଜନ କରୁଥିବା ସ୍ଥଳେ, ମାଈ ମାଛ ପଛରେ ଧାଇଁଲା ବେଳେ ସେ ମଧୁର ସ୍ୱରରେ ଗୀତ ଗାଏ । ପଟଲ ମାଛ ଏହି ସମୟରେ ପ୍ରତି ଅଧମିନିଟ୍‌ରେ ଗମ୍ଭୀର ଗର୍ଜନ କରେ ।


ପଟଲ ମାଛ

କେତେକ ପ୍ରକାରର ମାଛ, ବର୍ଷସାରା ସବୁ ସମୟରେ କଥାବାର୍ତ୍ତା ହୁଅନ୍ତି, ଗୀତ ବୋଲନ୍ତି ଓ ଗର୍ଜନ କରନ୍ତି ତ ଆଉ କେତେକ ମାଛ କେବଳ ମାଈ ମାଛର ସାନ୍ନିଧ୍ୟ ପାଇବାକୁ ଏପରି କରିଥାଆନ୍ତି । ଏହା ଛଡ଼ା କେତେ ଜାତିର ମାଛଙ୍କ ମଧ୍ୟରୁ ସ୍ତ୍ରୀ, ପୁରୁଷ ସମସ୍ତଙ୍କର "କଥା କହିବାର ଅଧିକାର" ଅଛି ତ ଆଉ କେତେକଙ୍କ ମଧ୍ୟରୁ କେବଳ ପୁରୁଷଙ୍କର ଅଛି ।

ମାଛଙ୍କ ଜୀବନରେ ଶବ୍ଦର ଅସୀମ ଭୂମିକା ରହିଛି । ନିଜର ଦୃଷ୍ଟିଶକ୍ତି ଅପେକ୍ଷା ଶ୍ରବଣଶକ୍ତିକୁ ମାଛମାନେ ଅଧିକ ବିଶ୍ୱାସ କରନ୍ତି । ଗୋଳିଆ ପାଣିରେ ଶବ୍ଦ ବିନା ମାଛଙ୍କର ଅନ୍ୟ ଉପାୟ ନାହିଁ ।

ବୈଜ୍ଞାନିକମାନେ ଅନେକ ପରୀକ୍ଷା କରି ସାରିଛନ୍ତି । ଉଦାହରଣ ସ୍ୱରୂପ ସାରଡିନ୍ ନାମକ ମାଛର ଦଳ ମଧ୍ୟକୁ ଜଳଫୋନ୍ ପକାଇ, ସେମାନେ ଥରେ ହିଂସ୍ର ମାଛର ଶବ୍ଦ ସୃଷ୍ଟି କଲେ । ଦଳବଦ୍ଧ ହୋଇ ଥିବା ସାରଡିନ୍ ମାଛମାନେ ଭଲ ଭାବେ ଦେଖି ପାରୁଥିଲେ ଯେ, କୌଣସି ମାଛ ଶବ୍ଦ ସୃଷ୍ଟି କରୁ ନାହିଁ । ହିଂସ୍ର ମାଛ ସେଠାରେ ନଥିଲା, ମାତ୍ର ସାରଡିନ୍ ଦଳ ଭୟରେ ଏଣେତେଣେ ପଳାଇଲେ ।

ଅନେକ ମାଈ ଗୋବି ମାଛ ଜଳାଶୟ ଭିତରେ ରହିଥିବା ବେଳେ ଗୋଟିଏ ବୋତଲରେ ଥିବା ଅଣ୍ଡିରା ଗୋବି ମାଛକୁ ତା ଭିତରକୁ ଛାଡ଼ିଦେଲେ । ଅଣ୍ଡିରା ମାଛ ନିରବ ରହିଥିବାରୁ, ମାଈ ମାଛ ତାକୁ ଦେଖିଲେ ମଧ୍ୟ ତା ଆଡ଼କୁ ଦୃଷ୍ଟି ଦେଲେ ନାହିଁ । ଏହା ପରେ ବୋତଲରେ ଥିବା ଅଣ୍ଡିରା ମାଛ ପରିବର୍ତ୍ତେ ପାଣି ଭିତରକୁ ଜଳଫୋନ୍ ପକାଇ ଅଣ୍ଡିରା ମାଛତାକର ଶବ୍ଦ ସୃଷ୍ଟି କରାଗଲା । ମୁହୂର୍ତ୍ତକ ଭିତରେ ମାଈ ମାଛ ସବୁ ଜଳଫୋନ୍ ଆଡ଼କୁ ଧାଇଁଲେ ।

ଜଳ ଗର୍ଭରେ ଥିବା ଅଦ୍ଭୁତ ଦୁନିଆରେ ସ୍ୱତନ୍ତ୍ର ଗାୟିକା, ସଂଗୀତଜ୍ଞ ଓ ବକ୍ତାମାନେ ରହିଛନ୍ତି । ତା ଭିତରେ ଜଳଦସ୍ୟୁମାନେ ମଧ୍ୟ ଅଛନ୍ତି ।


ସାରଡିନ୍ ମାଛମାନେ

କେତେକ ରୁଷୀୟ ଗଳ୍ପ ଓ ଲୋକକଥାରେ, ଗଛ ଉପରେ ଜଗି ବସିଥିବା ଏକ ଦସ୍ୟୁ କଥା ବର୍ଣ୍ଣନା କରାଯାଇଛି । ଦସ୍ୟୁ ବସିଥିବା ଗଛ ପାଖକୁ ଯଦି କେହି ଆସେ, ତେବେ ସେ ଏତେ ଜୋରରେ ସୁସୁରି ମାରେ ଯେ, ମଣିଷଟି ହଠାତ୍ ସେଇଠି ମରିଯାଏ କିମ୍ବା ଏହି ସୁସୁରି ଶବ୍ଦର ତୀବ୍ରତାରେ ଜ୍ଞାନ ଓ ଚେତା ହରାଇ ବସେ । କିନ୍ତୁ ଏହି ଦସ୍ୟୁ କାଳ୍ପନିକ ଓ ଗାଳ୍ପିକ । ସମୁଦ୍ର ଭିତରେ ରହିଛି ପ୍ରକୃତ ଜଳଦସ୍ୟୁ । ସେ ହେଉଛି ଏକ ମାଛ । ନାମ ତା'ର "ବେଙ୍ଗମୁହାଁ ମାଛ" । ସାଧାରଣତଃ ଏହି ମାଛ ସଅଁ ସଅଁ ଶବ୍ଦ କରେ । ଏହି ମାଛ ରହୁଥିବା ଜାଗାକୁ ଅନ୍ୟ କୌଣସି ମାଛ ଆସିଲେ ସଅଁ ସଅଁ ଶବ୍ଦ କରି ସେ ଶୁଣାଇ ଦିଏ ଯେ, "ଜାଗା ଖାଲି ନାହିଁ" ।


ବେଙ୍ଗମୁହାଁ ମାଛ

ଆଗନ୍ତୁକ ମାଛଟି ଯଦି ତା'ର କଥା ନମାନେ, ତେବେ ସେ ଦସ୍ୟୁ ଭଳି ଖୁବ୍ ଜୋରରେ ସୁସୁରି ଶବ୍ଦ କରେ, ଏହା ଫଳରେ ଅନାହୂତ ଅତିଥି କାଇ ପାଲଟିଯାଏ । ଏହି ଦସ୍ୟୁ ବେଙ୍ଗମୁହାଁ ମାଛର ସୁସୁରି ଶବ୍ଦ ଏତେ କର୍କଶ ଯେ, ମଣିଷର ଅବସ୍ଥା ମଧ୍ୟ କାଇଲ୍ ହୋଇଯାଏ । ଦସ୍ୟୁମାଛ ମଣିଷର କାନ ପାଖରେ ସୁସୁରି ବଜାଇ ଦେଲେ, ମଣିଷର କାନ ପରଦା ନିଶ୍ଚୟ ଫାଟିଯିବ ।

ମାଛମାନଙ୍କ ଲାଗି ସେମାନଙ୍କର ସ୍ୱର ନିତାନ୍ତ ଦରକାର । ଏହା ଦ୍ୱାରା ସେମାନେ ଦଳବଦ୍ଧ ହୋଇ ରହି ପାରନ୍ତି ଏବଂ ବିପଦ ସଂପର୍କରେ ଦଳକୁ ସତର୍କ କରାଇ ପାରନ୍ତି । ଶବ୍ଦ ଉଚ୍ଚାରଣ କରି ମାଛମାନେ ମନର ଅସନ୍ତୋଷ ପ୍ରକାଶ କରନ୍ତି ଏବଂ ଲଢ଼ିବାକୁ ପ୍ରସ୍ତୁତ ବୋଲି ଜଣାଇ ଦିଅନ୍ତି ।

# "ପ୍ରକୃତ କଥାର" ଅପ୍ରକୃତ ଅର୍ଥ

ସ୍ପେନ୍‌ର ଗ୍ରାନାଡା ସହରର ବାସିନ୍ଦାମାନେ ସାରି ଦିନ ଧରି ଘଟଣା କ'ଣ ବୁଝି ପାରୁ ନଥାନ୍ତି । ବିଭିନ୍ନ ଗଳିରେ ଓ ରାସ୍ତାରେ କାରଣ ନଥାଇ ପୁଲିସ୍ ହୁଇସିଲ୍‌ର ଶବ୍ଦ ଶୁଣାଯାଉଥାଏ । ମାତ୍ର ପୁଲିସ୍ କିମ୍ବା ନିୟମ ଲଂଘନ କରୁଥିବା କୌଣସି ଲୋକ ଦେଖିବାକୁ ମିଳୁ ନଥାନ୍ତି ।



ଶୁଆମାନେ

ଗାଡ଼ି ଚାଳକମାନେ ବଡ଼ ଅସୁବିଧାରେ ପଡ଼ୁ ଥାଆନ୍ତି । କୌଣସି ଭୁଲ ନକରି ମଧ୍ୟ ହୁଇସିଲ୍ ଶବ୍ଦ ଶୁଣି ସେମାନଙ୍କୁ ବାରମ୍ବାର ଗାଡ଼ି ଅଟକାଇବାକୁ ପଡ଼ୁଥାଏ ।

ଲୁଚି ରହିଥିବା ଏହି ପୁଲିସ୍, ଗାଡ଼ିଘୋଡ଼ା ଓ ପଦଯାତ୍ରୀମାନଙ୍କୁ ମଧ୍ୟ ଅସୁବିଧାରେ ପକାଉଥାଏ । ପ୍ରକୃତ କଥା ପଞ୍ଚମ ଦିନରେ ହିଁ ଜଣାପଡ଼ିଲା । ଲୁଚି ରହିଥିବା ଏହି ପୁଲିସ୍ ହେଉଛି ପିଞ୍ଜରାରୁ ଉଡ଼ି ଆସିଥିବା ଏବଂ ଉଚ୍ଚଭାବେ ପୁଲିସ୍ ପରି ହୁଇସିଲ୍ ମାରି ପାରୁଥିବା ଗୋଟିଏ ଶୁଆ ।

ଅନେକ ଦିନରୁ ମଣିଷ ଜାଣିଥିଲା ଯେ, ପିଞ୍ଜରାରେ ରଖି ଶିକ୍ଷା ଦେଲେ ଶୁଆ କଥାବାର୍ତ୍ତା କରି ପାରେ । ଏବେ ଜଣାପଡ଼ିଲା ଯେ, ଶୁଆ ପୁଲିସ୍‌ର ହୁଇସିଲ୍ ପରି ମଧ୍ୟ ଶବ୍ଦ କରି ପାରେ ।

ଏପରିକି ବେଳେବେଳେ ଶୁଆମାନେ ବିଲେଇ ଓ କୁକୁର ଇତ୍ୟାଦିଙ୍କର ଶବ୍ଦ ମଧ୍ୟ ଅନୁକରଣ କରି ଥାଆନ୍ତି । ସେମାନେ କବାଟର କଟକଟ ଶବ୍ଦକୁ ମଧ୍ୟ ଅନୁକରଣ କରି ପାରନ୍ତି । ମାତ୍ର ସବୁଠୁ ଆଶ୍ଚର୍ଯ୍ୟର ବିଷୟ ହେଲା, ଶୁଆର ମଣିଷ ଭଳି କଥାବାର୍ତ୍ତା କରିବାର ଶକ୍ତି । ଶୁଆ ମଣିଷକୁ ସ୍ୱାଗତ କରିପାରେ, ବିଦାୟ ଦେଇ ପାରେ, କିଛି ପ୍ରଶ୍ନ ପଚାରି ପାରେ, ନିଜର ନାମ କହିପାରେ, ଅଭିଯୋଗ କରିପାରେ ଏବଂ ଗାଳି ବି ଦେଇପାରେ । ଜୀବ ବିଜ୍ଞାନୀ ଓ ପକ୍ଷୀ ପ୍ରେମୀମାନେ ଶୁଆ ବିଷୟରେ ଅନେକ କଥା ଜାଣନ୍ତି । ଶୁଆମାନେ କେବଳ ଶବ୍ଦ ନୁହେଁ, ବାକ୍ୟ ଗଠନ କରି ପାରନ୍ତି, ପ୍ରଶ୍ନର ଉତ୍ତର ଦେଇପାରନ୍ତି ଓ ପ୍ରଶ୍ନ ପଚାରିଥାନ୍ତି । ବେଳେବେଳେ ଶୁଆ ପଚାରୁଥିବା ପ୍ରଶ୍ନ ଓ ଶୁଆ ଅନୁକରଣ କରୁଥିବା ପ୍ରଶ୍ନର ଉତ୍ତର ଖୁବ୍ ସଠିକ୍ ଓ ସମୟୋଚିତ ମନେହୁଏ ।

ଯେଉଁମାନେ ଶୁଆର କଥା ଶୁଣିଛନ୍ତି, ସେମାନେ ନିଶ୍ଚୟ ମନେ ମନେ ଭାବିଥିବେ : କି ଆଶ୍ଚର୍ଯ୍ୟ ବିଷୟ, ଚଢ଼େଇଟାଏ ହୋଇ କଥା କହୁଛି ! ନବୁଝି ନଶୁଝି ତୁଚ୍ଛା ଶବ୍ଦ କରୁ ନାହିଁ, ସତେ ଯେପରି ସେ ଭାବିଚିନ୍ତି କଥା କହୁଛି । ତେଣୁ ଭାବିବାକୁ ହୁଏ, ସତେ କ'ଣ ଶୁଆ ମଣିଷ ପରି କଥାବାର୍ତ୍ତା କରିବାକୁ ସମର୍ଥ ?

ସବୁ ଶୁଆ କଥା କହିପାରନ୍ତି ନାହିଁ । କେବଳ ଶୁଆ ନୁହେଁ, ଅନ୍ୟ କେତେକ ପକ୍ଷୀ ମଧ୍ୟ କଥା କହି ପାରନ୍ତି ।

ମୋ ଘରେ ଗୋଟିଏ ଷ୍ଟାରଲିଂ ପକ୍ଷୀ ଥିଲା । ତା'ର ନାମ କ'ଣ ପଚାରିଲେ, ସେ ସ୍ପଷ୍ଟ ଭାବେ କହୁଥିଲା "ଯାଶ୍‌କା" । ତା'ର ଭାଇ ମଧ୍ୟ ସ୍ପଷ୍ଟ ରୂପେ କହୁଥିଲା, "ମୁଁ ଗୋଟିଏ ଷ୍ଟାରଲିଂ ପକ୍ଷୀ ।" (କୌଣସି ଆକସ୍ମିକ ଦୁର୍ଘଟଣା ଫଳରେ ମାତୃହରା ହୋଇ ପଡ଼ିଥିବା ଏହି ଚଢ଼େଇକୁ ଆଣି ମୁଁ ଖାଇବାକୁ ଦେଉଥିଲି ।) ଏହି ଚଢ଼େଇଟି ଉତ୍ତର ଦେଲା ବେଳେ "ଷ" ଅକ୍ଷରଟିର ଉଚ୍ଚାରଣ ଉପରେ ବିଶେଷ ଗୁରୁତ୍ୱ ଦେଉଥିଲା ।



ଏହାଛଡ଼ା କୁଆ, ପାତି କୁଆ ଓ ମାଗ୍‌ପାଇ ମଧ୍ୟ କଥାବାର୍ତ୍ତା କରି ପାରନ୍ତି ।

ଥରେ ମସ୍କୋ ନଗରୀର ଗୋଟିଏ ଥାନାକୁ ହାତ ଭାଙ୍ଗି ଯାଇଥିବା ଗୋଟିଏ ଲୋକକୁ ଧରି ଅଣାଗଲା । ଏହି ଲୋକ ଜଣକ ଘରୁ ଚୋରୀ କରିବାକୁ ଯାଇ ପୋର୍ଟିକୋ ବାଟ ଦେଇ ଦ୍ୱିତୀୟ ମହଲାରେ ଥିବା ଗୋଟିଏ ଘର ଭିତରକୁ ପଶିବାକୁ ଚେଷ୍ଟା କରୁଥିଲା । ସେ ଯେତେବେଳେ ପୋର୍ଟିକୋ ଉପରକୁ ଚଢ଼ିଲା, ଶୁଣି ପାରିଲା ଯେ, ଘର ଭିତରୁ କିଏ ଜଣେ ଖୁବ୍ ଉଚ୍ଚ ସ୍ୱରରେ ପଚାରୁଛି, "କିଏ ସେଠି ? ଖରାପ କଥା !" । ମାଗ୍‌ପାଇ ଚଢ଼େଇଟି ଏ ଭଳି କଥା କହୁଛି ନଜାଣି, ଚୋର ଭୟରେ ହଠାତ୍ ପୋର୍ଟିକୋରୁ ତଳକୁ ଖସିପଡ଼ିଲା । ମାଗ୍‌ପାଇ ଚଢ଼େଇଟି କେବଳ ଏହି ଅଳ୍ପ କେତୋଟି ଶବ୍ଦ ଶିଖିଥିଲା ।

ମଣିଷର ଶବ୍ଦକୁ ମଇନାମାନେ ଖୁବ୍ ଉତ୍ତମ ରୂପେ ଅନୁକରଣ କରି ପାରନ୍ତି । ମଇନା ପକ୍ଷୀ ହେଉଛି ଷ୍ଟାରଲିଂ ଜାତୀୟ ଗୋଟିଏ ପକ୍ଷୀ । ଥରେ ଜଣେ ଇଂରେଜ ଲୋକର ଦୁଇଟି ମଇନା ପକ୍ଷୀ ଉଡ଼ି ଚାଲିଗଲେ । ପକ୍ଷୀ ପ୍ରେମୀ ସାହେବ ଜଣକ ଖୁବ୍ ମନଦୁଃଖ କଲେ । ସେ ଭାବିଥିଲେ ଯେ, ଏତେ ବଡ଼ ସହରଟାରେ ପକ୍ଷୀ ଦୁଇଟିକୁ ଖୋଜି ପାଇବା ଅସମ୍ଭବ । କିନ୍ତୁ ଅଳ୍ପଦିନ ପରେ ଚଢ଼େଇ ଦୁଇଟି ଆପେଆପେ ଆସି ଘରେ ପହଞ୍ଚିଲେ । ସେମାନଙ୍କ ଭିତରୁ ଗୋଟିଏ ଚଢ଼େଇ ସହରରେ ଉଡ଼ୁଥିବା ବେଳେ ଖୁବ୍ ଆସ୍ତେ ଯାଇ ଜଣେ ପଦଯାତ୍ରୀର କାନ୍ଧ ଉପରେ ବସିପଡ଼ି ତା'ର କାନରେ ଟେଲିଫୋନ୍ ନମ୍ବର କହିଦେଲା । ସେହି ଟେଲିଫୋନ୍ ନମ୍ବରରେ ପଦଯାତ୍ରୀ ଜଣକ କଥାବାର୍ତ୍ତା କରିବାରୁ ଜଣା ପଡ଼ିଲା ଯେ, ତାହା ହେଉଛି ଚଢ଼େଇ ଦୁଇଟିର ମାଲିକ, ସେଇ ଇଂରେଜ ଲୋକର ଘର ।

ଏହି ଭଳି ଦ୍ୱିତୀୟ ଚଢ଼େଇଟି ମଧ୍ୟ ସେହିପରି ଘରକୁ ଫେରିଥିଲା ।

ମଣିଷ ପରି ଜେ ପକ୍ଷୀ, ଥ୍ରାସ୍ ଓ କ୍ୟାନେରୀ ପକ୍ଷୀ ମଧ୍ୟ କଥାବାର୍ତ୍ତା କରି ପାରନ୍ତି । ଥରେ ଏକ କ୍ୟାନେରୀ ପକ୍ଷୀ ନିଜର ନାମ କହି ଶିଖିବା ସଙ୍ଗେ ସଙ୍ଗେ ଗୋଟିଏ ବାକ୍ୟ ମଧ୍ୟ ଉଚ୍ଚାରଣ କରି ଶିଖିଥିଲା । ବାକ୍ୟଟି ହେଲା "କେଡ଼େ ସୁନ୍ଦର ଛୋଟ ଛୋଟ ପକ୍ଷୀ, କି ସୁନ୍ଦର ମନୋରମ ପକ୍ଷୀ, କି ସୁନ୍ଦର ମନ ଲାଖି ପକ୍ଷୀ" ।

କଥା କହୁଥିବା ଚଢ଼େଇଙ୍କ ବିଷୟରେ ଅନେକ ଆଶ୍ଚର୍ଯ୍ୟଜନକ ମର୍ମସ୍ପର୍ଶୀ, ମଜା କଥା କୁହାଯାଇ ପାରେ ।

ବେଳେବେଳେ ଏହି ଗଳ୍ପ ଏତେ ଅସାଧାରଣ ମନେହୁଏ ଯେ, ବିଶ୍ୱାସ କରିବା ମଧ୍ୟ କଷ୍ଟକର ହୋଇ ପଡ଼େ, ସତେ ଯେପରି ଚଢ଼େଇ ନଜାଣି ନଶୁଣି, ଘୋଷି ପକାଇ କେତୋଟି ଶବ୍ଦ ମନେରଖି ତାହାକୁ ବାରମ୍ବାର କହିବାରେ ଲାଗିଛି ।

ଏକଥା ସତ ।

ବିଚାର କରି ଦେଖିଲେ ଜଣାଯାଏ ଯେ, ସବୁ ପକ୍ଷୀ କଥା କହି ପାରନ୍ତି ନାହିଁ । ଯେଉଁ ଚଢ଼େଇସବୁ କଥା କହନ୍ତି ବା କଥା କହିବାକୁ ସମର୍ଥ, ସେମାନେ କେବଳ ଦୀର୍ଘ ଦିନର ଅଭ୍ୟାସ ପରେ କଥାବାର୍ତ୍ତା କରନ୍ତି । ସଂକ୍ଷିପ୍ତରେ କହିଲେ ସେମାନଙ୍କୁ ଶିଖାଇବା ଦରକାର । ଏକଥା ସତ ଯେ, ବେଳେବେଳେ ଶୁଆ ଯଦି ଗୋଟିଏ ନିର୍ଦ୍ଦିଷ୍ଟ କଥାକୁ ବାରମ୍ବାର (ନିଶ୍ଚୟ ବାରମ୍ବାର) ଶୁଣେ, ତେବେ ସେ ଆପେଆପେ କଥା କହିବାକୁ ଆରମ୍ଭ କରେ । ଶୁଣୁଥିବା କଥାକୁ ଶୁଆ ମନେରଖେ । ନିଜର ବାକ୍‌ତନ୍ତୁ ହେତୁ ଶୁଆ ନିଜର ପକ୍ଷୀ ସ୍ୱର ଉଚ୍ଚାରଣ କରି ପାରିବା ସଙ୍ଗେ ସଙ୍ଗେ, ଅନ୍ୟର ଶବ୍ଦକୁ ଅନୁକରଣ କରିଥାଏ । ଉଚ୍ଚାରଣ କରି ପାରୁଥିବାରୁ, ଦିନେ ନା ଦିନେ ସେ ମନେ ରଖିଥିବା କଥାର ପୁନରାବୃତ୍ତି ପୁଣି କରେ ।

ମୋର ଜଣେ ଜଣାଶୁଣା ବନ୍ଧୁଙ୍କ ପାଖରେ ଗୋଟିଏ ଶୁଆ ଥିଲା । ସେ ପ୍ରତିଦିନ ସକାଳେ ରେଡିଓରେ ପ୍ରଚାର ହେଉଥିବା ବ୍ୟାୟାମ କାର୍ଯ୍ୟକ୍ରମକୁ ଶୁଣି ଶୁଣି ମନେ ରଖି ଦେଇଥିଲା । ଏହି କାର୍ଯ୍ୟକ୍ରମର ଶବ୍ଦାବଳୀ ଛଡ଼ା ଉଚ୍ଚାରଣକୁ ମଧ୍ୟ ସେ

ଥ୍ରାସ୍ ପକ୍ଷୀ



ଭଲଭାବେ ମନେ ରଖିଥିଲ, ସଠିକ୍ ଭାବେ ପରିବେଷକଙ୍କ କଣ୍ଠସ୍ୱରକୁ ମଧ୍ୟ ଅନୁକରଣ କରି ପାରୁଥିଲ । ଥରେ ଏହି ଶୁଆଟି ଅଧ ରାତିରେ ତା'ର ନିଦ ଭାଙ୍ଗି ଯିବାରୁ ଘର ସାରା ପାଟିକରି କହାଇଲ, "ସୁପ୍ରଭାତ ବନ୍ଧୁଗଣ! ଏବେ ବ୍ୟାୟାମ କାର୍ଯ୍ୟକ୍ରମ ଆରମ୍ଭ କରିବା! ଆପଣମାନେ ବ୍ୟାୟାମ କରିବାକୁ ପ୍ରସ୍ତୁତ ହୋଇ ଠିଆ ହୁଅନ୍ତୁ!"

ଅଧିକ ସମୟ ଶୋଇ ପଡ଼ିଥିବା କଥା ଭାବି, ମୋର ବନ୍ଧୁ ତରବର ହୋଇ ଉଠିପଡ଼ି କାମକୁ ଯିବାକୁ ପ୍ରସ୍ତୁତ ହେଲେ ।

ଏଭଳି ଅସମୟରେ ଅର୍ଥାତ୍ ଅଧ ରାତିରେ ଛୀଡ଼ା କାର୍ଯ୍ୟକ୍ରମ ଘୋଷଣା କରିବା କଥା କାହିକି ଯେ ଶୁଆ ମୁଣ୍ଡରେ ଢୁକିଲ – ମୁଁ ଜାଣେ ନାହିଁ । ଶୁଆମାନେ ପ୍ରାୟ ଅସମୟରେ କଥା କହନ୍ତି ଏବଂ ଏହି କଥା ଶୁଣି କେହି କେବେ ଆଶ୍ଚର୍ଯ୍ୟ ହୁଅନ୍ତି ନାହିଁ । କାରଣ ଅସମୟରେ କୁହା ଯାଇଥିବା କଥା ଖୁବ୍ ଶୀଘ୍ର ମଣିଷ ଭୁଲି ଯାଏ । ମାତ୍ର ସମୟୋଚିତ ଭାବେ ଚଢ଼େଇ ଯଦି କୌଣସି କଥା କହେ, ତେବେ ତାହା ସମସ୍ତଙ୍କୁ ଆଚମ୍ବିତ କରିଥାଏ ।

ଭଲ ପୋଷା ମାନିଥିବା ଗୋଟିଏ କୁକୁର ଯେତେବେଳେ ତା'ର ପ୍ରଭୁର ନିର୍ଦ୍ଦେଶ ମାନି ବସେ, ଶୁଏ ବା ପାଖେପାଖେ ରହେ କିମ୍ବା ଆଦେଶ ପାଇ ଭୁକିବାକୁ ଲଗେ, ତାକୁ ଦେଖି ଆମେ ଆଶ୍ଚର୍ଯ୍ୟ ହେଉ ନାହିଁ । ସମସ୍ତେ ଜାଣନ୍ତି ଯେ, କୁକୁରଟି ଭଲ ପୋଷା ମାନିଛି । ମାତ୍ର କୁକୁରକୁ ପୋଷା ମନାଇବା ଏତେ ସହଜ କଥା ନୁହେଁ – ତା'ଠାରୁ ମଣିଷ କ'ଣ ଆଶା କରୁଛି, ହଠାତ୍ କୁକୁର ତାହା ବୁଝି ପାରେ ନାହିଁ । କିନ୍ତୁ ବାରମ୍ବାର ନିଜର ପ୍ରଭୁ ମୁହଁରୁ ଗୋଟିଏ କଥା ଶୁଣିଲ ପରେ, କୁକୁର ତାହା ବୁଝିବାକୁ ଚେଷ୍ଟା କରେ ଓ ନିର୍ଦ୍ଦେଶ କାର୍ଯ୍ୟକାରୀ କରେ । ନିଜ କାର୍ଯ୍ୟର ପ୍ରତିଦାନ ସ୍ୱରୂପ କୁକୁର କୌଣସି ସୁସ୍ୱାଦୁ ଖାଦ୍ୟ ପୁରସ୍କାର ପାଏ । ଏହିଭଳି ବୋଲ ମାନିବାରୁ କୁକୁରକୁ ବାରମ୍ବାର ପୁରସ୍କାର ମିଳେ । ଶେଷରେ ଏହା କୁକୁରର ଅଭ୍ୟାସଗତ ହୋଇଯାଏ । ଉଦାହରଣ ସ୍ୱରୂପ "ବସ" ବୋଲି କହିଲେ କୁକୁର ସେହି ଶବ୍ଦର ଅର୍ଥ ବୁଝି ପାରେ ନାହିଁ, ସେ କେବଳ ଶବ୍ଦର ନିର୍ଦ୍ଦିଷ୍ଟ ଉଚ୍ଚାରଣ ଶୁଣି ବସି ପଡ଼େ ଓ ପୁରସ୍କାର ପାଏ । ତେଣୁ ସେ ଖୁସି ମନରେ ପ୍ରଭୁର ଆଦେଶ ମାନେ । ତା'ପରେ ପୁରସ୍କାର ନପାଇଲେ ମଧ୍ୟ ନିଜର ଅଭ୍ୟାସରେ ପରିଣତ ହୋଇ ଯାଇଥିବାରୁ ସେ ବୋଲ ମାନେ । କୌଣସି ନିର୍ଦ୍ଦିଷ୍ଟ ଆଦେଶର ଶବ୍ଦ ଶୁଣିବାକୁ ପାଇଲେ, ସେ ସେହି ଆଦେଶ ପାଳନ କରେ ।



ମଇନା ପକ୍ଷୀ

ଶୁଆ ସମ୍ବନ୍ଧରେ ମଧ୍ୟ ଠିକ୍ ସେହିପରି କୁହା ଯାଇପାରେ । ଉଦାହରଣ ସ୍ୱରୂପ, ଶୁଆକୁ ନିଜର ନାମ କହିବାକୁ ଶିଖାଯାଏ । ଏହି ନାମଟିକୁ ବାରମ୍ବାର ତା ଆଗରେ କୁହାଯାଏ । ଶୁଆର ସ୍ମରଣଶକ୍ତି ଖୁବ୍ ଭଲ ହୋଇଥିବାରୁ, ଥରକୁ ଥର ଗୋଟିଏ କଥା ଶୁଣିଲେ, ସେ ତାହା ମନେ ରଖିନିଏ । ତା'ପରେ ଯଦି କେବେ ଦରକାର ପଡ଼େ, କିମ୍ବା ତା'ର ମନହୁଏ, ତେବେ ନିଜ ମନର ଭାବ ବର୍ଣ୍ଣନା କରିବାକୁ ଯାଇ



ଜେ ପକ୍ଷୀ



ଛୋଟ ଜାତୀୟ ଶୁଆମାନେ

ସେ ମନେ ରଖିଥିବା କଥାକୁ କହି ପକାଏ । ଫଳରେ ତାକୁ ପୁରସ୍କାର ମିଳେ । (ମନେକର ତାକୁ ମିଶ୍ରି ଭଲ ଲାଗେ, ତେବେ ମିଶ୍ରି ଖଣ୍ଡେ ତାକୁ ମିଳେ ।) ଶୁଆ ଏହି ପରି ଅଭ୍ୟାସଗତ ହୋଇଯାଏ ଯେ, ସେ ମନେ ରଖିଥିବା କଥାକୁ ପୁଣିଥରେ କହିଲେ ନିଶ୍ଚୟ ପୁରସ୍କାର ପାଇବ । ତେଣୁ ପୁଣି ଉଚ୍ଚାରଣ କଲେ – ପୁଣି ଥରେ ମିଶ୍ରି ପାଏ ।

ଅଳ୍ପଦିନ [illegible] କେହି ନପଚାରିଲେ ମଧ୍ୟ ସେ ନିଜର ନାମ କହେ । ମନରେ ଆଶା କରୁଥାଏ ଯେ, ତାକୁ ପୁରସ୍କାର ମିଳିବ । ପରେ ଏହା ତା'ର ଅଭ୍ୟାସରେ ପରିଣତ ହୋଇଗଲେ ସେ କୌଣସି ପୁରସ୍କାର ନପାଇ ମଧ୍ୟ କଥା କହିଚାଲେ ।

ଅନ୍ୟ ଏକ ଘଟଣା ଏଥର ଦେଖିବା । କେହି କବାଟ ଠକ୍ ଠକ୍ କଲେ, ଘର ମାଲିକ "ଆସନ୍ତୁ" ବୋଲି କହି ଥାଆନ୍ତି । ଶୁଆ ଏହି ଶବ୍ଦଟିକୁ ମନେରଖେ ଏବଂ କ୍ରମଶଃ ଏହା ତା'ର ଅଭ୍ୟାସଗତ ହୋଇଯାଏ । କାରଣ ସେ ସର୍ବଦା ଶୁଣେ ଯେ କବାଟରେ ଠକ୍ ଠକ୍ ଶବ୍ଦ ପରେ "ଆସନ୍ତୁ" ଶବ୍ଦ ଶୁଣା ଯାଉଛି । କିଛି ଦିନ ପରେ ଯଦି କବାଟରେ ଠକ୍ ଠକ୍ ଶବ୍ଦ ଶୁଣେ, ତେବେ ସେ ଆପେଆପେ "ଆସନ୍ତୁ" ବୋଲି କହେ । ଏହି "ଆସନ୍ତୁ" ଶବ୍ଦଟି ଲୋକମାନଙ୍କୁ ସର୍ବଦା ଆଶ୍ଚର୍ଯ୍ୟ କରିଥାଏ । କେହି ଯଦି ଟେବୁଲ ଉପରେ ବା କାଛ ଉପରେ ଠକ୍ ଠକ୍ ଶବ୍ଦ କରେ ତେବେ ମଧ୍ୟ ଶୁଆ କହେ "ଆସନ୍ତୁ" । ଶୁଆ ଜାଣିବାକୁ ଚାହେଁନି, କେଉଁଠି କାହିଁକି ଠକ୍ ଠକ୍ ଶବ୍ଦ ଶୁଭୁଛି । ତା ପାଇଁ ଶବ୍ଦ ହିଁ ସବୁଠାରୁ ଦରକାରୀ ହୋଇଥାଏ ।

ଏପରି କେତେକ ପକ୍ଷୀ ଅଛନ୍ତି, ଯେଉଁମାନେ କି ଶବ୍ଦ ଓ ତାହାର ଉଚ୍ଚାରଣ ଖୁବ ଶୀଘ୍ର ମନେ ରଖି ପାରନ୍ତି । ଶୁଆଟିକୁ ଘରେ ରଖିଥିବା ଜଣେ ମାଲିକାଣୀ, "କି କଦର୍ଯ୍ୟ କଥା !" "କି କଦର୍ଯ୍ୟ !" ଏହି ଭଳି ଶବ୍ଦ କହିବାକୁ ଭଲ ପାଉଥିଲ । ଅଳ୍ପ ଦିନ ପରେ ଶୁଆଟି ମଧ୍ୟ "କି କଦର୍ଯ୍ୟ !" କହି ଶିଖିଲ ଏବଂ ଅଧିକାଂଶ ସମୟରେ ତାହାକୁ ଦୋହରାଇବାକୁ ଲାଗିଲ । ଥରେ ମାଲିକାଣୀଙ୍କ ଘରେ ବନ୍ଧୁମାନେ ଠୁଳ ହୋଇଥାନ୍ତି । ଅଳ୍ପ ଜଣାଶୁଣା ଜଣେ ମହିଳା ତାଙ୍କ ଘରକୁ ଆସିଲେ । ସେହି ମହିଳା ଜଣକ ଘର ଭିତରକୁ ପ୍ରବେଶ କଲ ମାତ୍ରେ ଶୁଣିବାକୁ ପାଇଲେ "କି କଦର୍ଯ୍ୟ !" ଆମନ୍ତ୍ରିତା ମହିଳା ଠିଆ ହୋଇ ଚିନ୍ତା କରିବାକୁ ଲାଗିଲେ ଏହି ଉକ୍ତିର କାରଣ କ'ଣ – ସେ କ'ଣ ନିଜେ କଦର୍ଯ୍ୟ ଦିଶୁଛନ୍ତି, ନା ଆମନ୍ତ୍ରିତ ହୋଇ ଆସିଥିବାରୁ ଚଢ଼େଇଟି ଏଭଳି କହିଲ ? ପୁଣି ଥରେ ସେ ଶୁଣିବାକୁ ପାଇଲେ "କଦର୍ଯ୍ୟ !" ମହିଳା ଜଣକ ବହୁତ ବିବ୍ରତ ହୋଇ ପଡ଼ିଲେ । ତରବର ହୋଇ ମାଲିକାଣୀ ଯେତେବେଳେ ଅତିଥିଙ୍କୁ ପାଛୋଟି ନେବାକୁ ଆସିଲେ ଓ ସବୁକଥା କହିଲେ, ମହିଳା ଜଣକ ସାମାନ୍ୟ ଭାବେ ପ୍ରକୃତିସ୍ଥ ହେବାକୁ ଲାଗିଲେ । ସନ୍ଧ୍ୟା ସାରା ସେ ସନ୍ଦେହ ଦୃଷ୍ଟିରେ, ଶୁଆ ବସିଥିବା ପିଞ୍ଜରା ଆଡ଼କୁ ଜଣେଇ ଜଣେଇ ଚାହୁଁ ଥାଆନ୍ତି । ମାତ୍ର ଶୁଆଟି ଟିକିଏ ହେଲେ ବିଚଳିତ ନହୋଇ ପୁଣି ସେହିପରି କହି ଚାଲିଥାଏ, "କି କଦର୍ଯ୍ୟ !" କହିଲ ବେଳେ ଶୁଆର କଣ୍ଠ ଠିକ୍ ମାଲିକାଣୀଙ୍କ କଣ୍ଠ ଭଳି ଶୁଭୁଥାଏ ।



କୁକୁର

ପକ୍ଷୀମାନେ ଅବଶ୍ୟ ବୁଝି ଶୁଝି କୌଣସି କଥା କହନ୍ତି ବୋଲି କେବେ କୁହାଯାଇ ନପାରେ । ଉଦାହରଣ ସ୍ୱରୂପ ଶୁଆକୁ ଯଦି ତୁମେ ବଡ଼ ପାଟିରେ "ନିଆଁ, ନିଆଁ" ଡାକିବାକୁ ଶିଖାଅ, ତେବେ ଦିନଟି ସାରା ସେ "ନିଆଁ, ନିଆଁ" ଚିତ୍କାର କରୁଥିବ । ହୁଇସିଲ୍ ମାରିବା ଶିଖାଇ ତୁମେ ତାକୁ ରାସ୍ତାକୁ ଛାଡ଼ି ଦେଲେ, ଗ୍ରାନାଦା ସହରରେ ପୁଲିସ୍ ହୁଇସିଲ୍ ଘଟଣା ଭଳି ଘଟିବ । ଶୁଆ ଯଦି କେବେ ଲକ୍ଷ୍ୟ ରଖି କଥା

କହୁଥାଏ, ତାହା ଆକସ୍ମିକ କଥା, କିମ୍ବା କେତେକ ନିର୍ଦ୍ଦିଷ୍ଟ ପ୍ରଶ୍ନର ଉତ୍ତର ଦେବାକୁ ତାକୁ ତାଲିମ୍ ଦିଆ ଯାଇଛି ।

ଅନ୍ୟ ଘଟଣା ଭଳି ମଧ୍ୟ ହୋଇ ପାରେ, ଯେପରି କବାଟରେ ଠକ୍ ଠକ୍ ଶବ୍ଦ ଶୁଣି ଶୁଆ "ଆସନ୍ତୁ" ବୋଲି କହୁଥିଲା । ଏହି କ୍ଷେତ୍ରରେ ଶୁଆଟିକୁ କେହି ତାଲିମ୍ ଦେଇ ନାହାନ୍ତି, ମାତ୍ର ସେ ନିଜେ ନିଜକୁ ତାଲିମ୍ ଦେଇଛି ।

ଆମେ ଏପର୍ଯ୍ୟନ୍ତ ଯାହା ସବୁ କହିଲେ, ମଣିଷର ଭାଷାରେ କଥାବାର୍ତ୍ତା କରି ପାରୁଥିବା ଅନ୍ୟାନ୍ୟ ପକ୍ଷୀଙ୍କ କ୍ଷେତ୍ରରେ ମଧ୍ୟ ତାହା ସମାନ ।


ଷ୍ଟାରଲିଂ ପକ୍ଷୀ

ମାତ୍ର କାହିଁକି ଏପରି ଘଟିଥାଏ ? କେତେକ ପକ୍ଷୀ କଥା କହି ପାରନ୍ତି, ଅନ୍ୟମାନେ କାହିଁକି କହି ପାରନ୍ତି ନାହିଁ ?

ଏହି ପ୍ରଶ୍ନର ଉତ୍ତର ଦେବା ପୂର୍ବରୁ ମୁଁ ତୁମମାନଙ୍କୁ ଗୋଟିଏ ଘଟଣା କହିବି । ଜଣେ ପକ୍ଷୀପ୍ରେମୀ ଅନ୍ୟ ଜଣେ ପକ୍ଷୀପ୍ରେମୀଠାରୁ ଗୋଟିଏ ଷ୍ଟାରଲିଂ ପକ୍ଷୀ କିଣିଥିଲେ । କିଛି ଦିନ ଅତିବାହିତ ହୋଇଗଲା ପରେ ହଠାତ୍ ଦିନେ ମାଲିକ ଶୁଣିବାକୁ ପାଇଲେ, ପାଖ କୋଠରୀରୁ ସିସ୍କିନ୍ (ଏକ ଜାତୀୟ ୟୁରୋପୀୟ ପକ୍ଷୀ) ଚଢ଼େଇର ଶବ୍ଦ ଶୁଣାଯାଉଛି । ଘଟଣା କ'ଣ ? ସିସ୍କିନ୍ ଚଢ଼େଇ ଆସିଲା କେଉଁଠୁ ? ଅପ୍ରତ୍ୟାଶିତ ଭାବେ ଏହି ଶବ୍ଦ ବନ୍ଦ ହୋଇ ପୁଣି ଶୁଣାଗଲା କୁଆର କା-କା ଶବ୍ଦ । ଶବ୍ଦ ଆସୁଥିବା କୋଠରୀଟି ଆଡ଼କୁ ଧାଇଁ ଯାଇ ମାଲିକ ଷ୍ଟାରଲିଂ ଚଢ଼େଇଟି ବ୍ୟତୀତ ଆଉ କାହାରିକୁ ଦେଖିବାକୁ ପାଇଲେ ନାହିଁ । ଷ୍ଟାରଲିଂ ଚଢ଼େଇଟି ଅବିଚଳିତ ଭାବେ ମୁଣ୍ଡ ଉପରକୁ କରି ବୁଲ୍‌ଫିନସ୍ ଚଢ଼େଇ ପରି ଶବ୍ଦ କରି ଗାଉଥାଏ "ଚୁଇଁ, ଚୁଇଁ, ଚୁଇଁ" ।

ମାଲିକଙ୍କର ପକ୍ଷୀମାନଙ୍କ ବିଷୟରେ ଭଲ ଧାରଣା ଥିଲା । ସେ ପକ୍ଷୀମାନଙ୍କର ବ୍ୟବହାର ଭଲ ରୂପେ ଜାଣିଥିବାରୁ ସବୁ କଥା ବୁଝି ପାରିଲେ । ପୂର୍ବରୁ ଯେଉଁ ମାଲିକ ପାଖରେ ଷ୍ଟାରଲିଂ ଚଢ଼େଇଟି ଥିଲା ସମ୍ଭବତଃ ସେହି ମାଲିକର ଘରେ ସିସ୍କିନ୍ ଚଢ଼େଇ, ବୁଲ୍‌ଫିନସ୍ ଓ କୁଆ ରହୁଥିଲେ । ଏ ସବୁ ପକ୍ଷୀ ଗୋଟିଏ କୋଠରୀରେ ରହୁଥିଲେ । ଷ୍ଟାରଲିଂ ଚଢ଼େଇଟି ଖୁବ୍ ଚଞ୍ଚଳ ଅନ୍ୟ ସବୁ ଚଢ଼େଇଙ୍କର ସ୍ୱର ଅନୁକରଣ କରି ନିଜେ ସେପରି ବୋବାଇ ପାରିଲା ।

ଯଦି ତୁମେ ଚଢ଼େଇ ସ୍ୱରରେ ପାର୍ଥକ୍ୟ ଲକ୍ଷ୍ୟ କରିପାର, ତେବେ ବସନ୍ତ ଋତୁରେ ଷ୍ଟାରଲିଂ ପକ୍ଷୀ ବୋବାଇଲା ବେଳେ ଟିକିଏ ମନ ଦେଇ ଶୁଣ । ସୁମଧୁର କଣ୍ଠରେ ସେ ଗୀତ ଗାଏ, କିନ୍ତୁ ଗାଏ ଅନ୍ୟର ଗୀତ । ତୁମେମାନେ ଗ୍ରତକ ପକ୍ଷୀ କିମ୍ବା ଓରିଓଲ୍ (କଳା ଓ ହଳଦିଆ ପରଥିବା କାକ ଜାତୀୟ ପକ୍ଷୀ) ଚଢ଼େଇର ଗୀତ ଶୁଣିଥିବ । ମିନିଟକ ପରେ ରେଡ୍‌ଷ୍ଟାର୍ଟ କିମ୍ବା ଚ୍ୟାଫିନସ୍ (କ୍ଷୁଦ୍ର ଗାୟକ ପକ୍ଷୀ) ଚଢ଼େଇର ଗୀତ ଶୁଣିଥିବ । ବେଳେବେଳେ ଖୁବ୍ ମଧୁର ସ୍ୱର ସାଙ୍ଗକୁ ଭାସିଆସେ


ଗୋଲ୍ଡଫିନସ୍ ପକ୍ଷୀ

ଚ୍ୟାଫିନସ୍ ପକ୍ଷୀ

କେତେକ ଚଢ଼େଇଙ୍କର ଅମଧୁର କା-କା, କ୍ୱାକ୍-କ୍ୱାକ୍ ଓ କଅ କଅ ଡାକ । ଷ୍ଟାରଲିଂ ଚଢ଼େଇ ଅନ୍ୟସବୁ ପକ୍ଷୀଙ୍କର କଣ୍ଠ ସ୍ୱର ଶୁଣି, ମନେରଖି ତାହାକୁ ନିଜସ୍ୱ ରୂପ ଦେଇ ପାରେ । କଥା ହେଲା ଷ୍ଟାରଲିଂ ଚଢ଼େଇର ଶ୍ରବଣ ଓ ସ୍ମରଣ ଶକ୍ତି ଖୁବ୍ ତୀକ୍ଷ୍ଣ । ମାତ୍ର ତାହାର ନିଜର ଗୀତ ନାହିଁ । ତେଣୁ ଅନ୍ୟଠାରୁ "ଧାର କରି" ସେ ଗୀତ ବୋଲେ । କେବଳ ଗୀତ କାହିଁକି, ଚେଷ୍ଟାରେ ପାଣି ବୁହାଇଲେ ଯେଉଁ କଟ୍ କଟ୍ ଶବ୍ଦ ହୁଏ ତାକୁ ସେ ଅନୁକରଣ କରିପାରେ । ଯଦି ନିକଟରେ କୌଣସି ଜାଗାରେ ସାରସ ଚଢ଼େଇ ବସା ବାନ୍ଧିଥାଏ ତେବେ ଅନେକ ସମୟରେ ଏହି ଶବ୍ଦ ଶୁଣି ତାହାକୁ ସେ ଅନୁକରଣ କରେ । ସେ ବିଲେଇ ପରି ମଧ୍ୟ ମିଆଉଁ ମିଆଉଁ ବୋବାଇ ପାରେ ଏବଂ କୌଣସି ଯନ୍ତ୍ର ଗ୍ରହିଲେ ଯେଉଁ ଘଡ଼ ଘଡ଼ ଶବ୍ଦ ହୁଏ, ସେପରି ମଧ୍ୟ କରିଥାଏ । ଯଦି ଏସବୁ କଥା ଷ୍ଟାରଲିଂ ଚଢ଼େଇ କରି ପାରୁଛି, ତେବେ ମଣିଷର ଭାଷାକୁ ସେ କାହିଁକି ମନେରଖି ଅନୁକରଣ ନକରି ପାରିବ ? ବିଶେଷତଃ, ଏ ବିଷୟରେ ତାଲିମ୍ ଯଦି ଦିଆ ହୁଏ ।



ଇକ୍ଟେରିନ୍ ଓୟାର୍‌ବ୍ଲେର୍

ତୁମେ ଯଦି କେବେ କ୍ୟାନେରୀ ଚଢ଼େଇକୁ ଜଂଗଲ ଭିତରେ ତା'ର ବସା ପାଖରେ ଦେଖିବ, ତେବେ କଳ୍ପନା କରି ପାରିବ ନାହିଁ ଯେ, ତୁମ ଆଗରେ ପ୍ରସିଦ୍ଧ ଗାୟକ ପକ୍ଷୀଟିଏ ବସିଛି ବୋଲି ।

ଅନ୍ୟର ଶବ୍ଦକୁ ମନେ ରଖି ତା'ର ପୁନରାବୃତ୍ତି ଅନେକ ପକ୍ଷୀ କରି ପାରନ୍ତି ।

ଥରେ ଜଣେ ବୈଜ୍ଞାନିକ ଲକ୍ଷ୍ୟ କଲେ ଯେ, ଗୋଟିଏ ଜଂଗଲରେ ଚ୍ୟାଫିନସ୍ ଚଢ଼େଇଟିଏ ସ୍ୱତନ୍ତ୍ର ଗୀତଟିଏ ଗାଉଛି ।

ଅଳ୍ପ ସମୟ ପରେ ସେହି ବଣରେ ଥିବା ଅନ୍ୟାନ୍ୟ ଚ୍ୟାଫିନସ୍ ଚଢ଼େଇ ମଧ୍ୟ ସେହି ଗୀତ ଗାଇବାକୁ ଲଗିଲେ—ଠିକ ସେହିପରି ସ୍ୱତନ୍ତ୍ର ଭାବେ ।

ଅନ୍ୟ ଜଣେ ପ୍ରାଣୀ ବିଜ୍ଞାନୀ ଘରଚଟିଆକୁ ଲକ୍ଷ୍ୟ କରୁଥିଲେ । ଏହି ଘରଚଟିଆ ଗୋଲଡ୍‌ଫିନସ୍ (ଏକ ପ୍ରକାର ଗାୟକ ପକ୍ଷୀ) ଚଢ଼େଇଙ୍କ ସଙ୍ଗରେ ଏକାଠି ରହୁଥିଲ । ଘରଚଟିଆଟି କିଛି ଦିନ ପରେ ଗୋଲଡ୍‌ଫିନସ୍ ଚଢ଼େଇଙ୍କ ପରି ଶବ୍ଦ କରିବାକୁ ଲଗିଲ ।

ଯେଉଁ ସବୁ ଚଢ଼େଇ ଅନ୍ୟକୁ ଶବ୍ଦ ନକଲ କରନ୍ତି, ସେମାନଙ୍କୁ ଅନୁକରଣକାରୀ ଚଢ଼େଇ କୁହାଯାଏ । ଇକ୍ଟେରିନ୍ ଓୟାର୍‌ବ୍ଲେର (କୋଇଲି ଜାତୀୟ ଗାୟକ ପକ୍ଷୀ) ନାମକ ଏକ ପକ୍ଷୀ ଅଛି । ଏହି ପକ୍ଷୀ ପ୍ରାୟ ୩୦ ପ୍ରକାର ବିଭିନ୍ନ ଶବ୍ଦ ଅନୁକରଣ କରିପାରେ । ପକ୍ଷୀଗୀତ ପ୍ରେମୀମାନେ ଅନେକ ସମୟରେ ଗୋଟିଏ ଅଭିଜ୍ଞ ଗୀତବୋଲ ଚଢ଼େଇ ପାଖରେ ଅନ୍ୟ ଅନଭିଜ୍ଞ କ୍ୟାନେରୀମାନଙ୍କୁ ଏକା କୋଠରୀ ଭିତରେ ରଖି ଦିଅନ୍ତି । ଧୀରେ ଧୀରେ ଅନଭିଜ୍ଞ ଛୋଟ ଚଢ଼େଇଗୁଡ଼ିକ ସବୁ ପ୍ରକାରର ଶବ୍ଦ ଓ ସ୍ୱର—ସଂକ୍ଷିପ୍ତରେ କହିଲେ ନିଜର ଗୁରୁ ଗାଉଥିବା ଗୀତକୁ ଶିଖି ପକାନ୍ତି ।

ପକ୍ଷୀ ବ୍ୟବସାୟୀମାନେ ସ୍ୱତନ୍ତ୍ର ସ୍କୁଲ ତିଆରି କରି ଚଢ଼େଇଙ୍କୁ ଗୀତ ଶିଖାନ୍ତି ଓ ସ୍ୱତନ୍ତ୍ର ଗୀତ ଶିଖିଥିବା ଚଢ଼େଇଗୁଡ଼ିକୁ ପକ୍ଷୀ ପ୍ରେମୀମାନଙ୍କୁ ବିକ୍ରୟ କରନ୍ତି ।

ଏହି ବ୍ୟବସାୟୀମାନେ କ୍ୟାନେରୀ ଚଢ଼େଇକୁ ଭଲ ଓ ପ୍ରସିଦ୍ଧ ଗାୟକ ପକ୍ଷୀରେ ପରିଣତ କରି ପାରିଥିଲେ ।

ତା'ର କଣ୍ଠ ଏବଂ ବାହ୍ୟଗଢ଼ଣ ଆଦୌ କ୍ୟାନେରୀ ଭଳି ମନେ ହେଉ ନଥିବ, ସିସ୍କିନ୍ ଚଢ଼େଇ ଭଳି କିମ୍ବା ଅନ୍ୟ ଏକ ପାର୍ଚ ଜାତୀୟ ସବୁଜ ଚଢ଼େଇ ପରି ସେ ଦିଶୁଥିବ । ୪୦୦ ବର୍ଷ ପୂର୍ବେ ଏହି ଚଢ଼େଇ ଯେତେବେଳେ ୟୁରୋପକୁ ଆସିଲ, ତା'ର ରଙ୍ଗ ଓ ଗଢ଼ଣ ଏହିଭଳି ଥିଲ ।

ବୋଧହୁଏ ଦରିଆପାରିରୁ ଆସିଥିବାରୁ ପକ୍ଷୀଟିର ଚାହିଦା ଖୁବ୍ ବେଶି ଥିଲ । କିମ୍ବା ଲୋକମାନେ କ୍ୟାନେରୀର କର୍ମ ନିପୁଣତା ଜାଣି ଖୁବ୍ ଶୀଘ୍ର ତାହାକୁ ନିଜର ପ୍ରିୟ ଗୃହ ପାଳିତ ପକ୍ଷୀ ରୂପେ ପାଳନ କରିବାକୁ ଲଗିଲେ । ତା ପରେ କ୍ୟାନେରୀ ପକ୍ଷୀ ରକ୍ଷ ବରାଗଲ ପ୍ରଥମେ ସ୍ପେନ୍, ତା'ପରେ ଇଟାଲି ଓ ପରେ ଜର୍ମାନୀରେ । ଜର୍ମାନ୍‌ମାନେ ଏହି ପକ୍ଷୀ ଉପରେ ବିଶେଷ ମନଯୋଗ ଦେଇ ଅନୁଧ୍ୟାନ କଲେ: ସେମାନେ ଏହି କ୍ୟାନେରୀ ଚଢ଼େଇ ସହିତ ଅନ୍ୟ ଏକ ଚଢ଼େଇର ପ୍ରଜନନ ଦ୍ୱାରା ନୂଆ ଜାତିର ଚଢ଼େଇ ପାଇଲେ । ତା ପରେ ସେ ସବୁ କ୍ୟାନେରୀଙ୍କୁ ଗୀତ ଶିଖାଇଲେ । ଗୀତ ଶିକ୍ଷା ଦେବାର ପଦ୍ଧତି ସେମାନେ ଅନ୍ୟମାନଙ୍କୁ ଜଣାଇଲେ ନାହିଁ । ଜର୍ମାନୀରେ ବଢ଼ିଥିବା କ୍ୟାନେରୀ ପକ୍ଷୀ ଅନ୍ୟାନ୍ୟ ସେହି ଜାତୀୟ ପକ୍ଷୀଙ୍କଠାରୁ ଭିନ୍ନ ଥିଲ । କାରଣ ସ୍ୱତନ୍ତ୍ର ବଂଶୀ ବଜାଇ ତାକୁ ଗୀତ ଶିକ୍ଷା ଯାଉଥିଲ । ଜଣା ଗଲ ଯେ, କ୍ୟାନେରୀ ଗାଉଥିବା ଗୀତର ସ୍ୱର ଜର୍ମାନ୍ ଓ ଟିରୋଲିୟାନ୍ ଲୋକ ଗୀତର ସ୍ୱର ସହିତ ମିଳି ଯାଉଛି ।

ରୁଷିୟାରେ ମଧ୍ୟ କ୍ୟାନେରୀ ଚଢ଼େଇ ପାଳନ ଆରମ୍ଭ କରାଯାଇଥିଲ । ଜର୍ମାନ୍ ପକ୍ଷୀପ୍ରେମୀ ଶିକ୍ଷକମାନଙ୍କ ଅପେକ୍ଷା ରୁଷୀୟ ପକ୍ଷୀଗୀତ ପ୍ରେମୀମାନେ କ୍ୟାନେରୀ ଚଢ଼େଇକୁ ସ୍ୱତନ୍ତ୍ର ରୂପେ ଗୀତ ଶିଖାଉଥିଲେ । ସେଥିରେ ଟିଟ୍‌ମାଉସ୍ ଚଢ଼େଇ (ଗାୟକ ପକ୍ଷୀ) ବଣ୍ଟିଙ୍ଗ୍ (ୟୁରୋପୀୟ ପକ୍ଷୀ), ଜଳଚର ପକ୍ଷୀ ଓ ଚାତକ ପକ୍ଷୀମାନଙ୍କ ଗୀତର ସ୍ୱର ଶୁଣା ଯାଉଥିଲ ।

ଏହିପରି ଚଢ଼େଇମାନେ ଅନ୍ୟମାନଙ୍କଠାରୁ ଶବ୍ଦ ଅନୁକରଣ କରି ପାରନ୍ତି । ସବୁ ଚଢ଼େଇ ଏହା କରି ପାରନ୍ତି ନାହିଁ । କାରଣ ସମସ୍ତଙ୍କର ବାକ୍‌ତନ୍ତ୍ରର ଗଠନ ଏକ

ପ୍ରକାରର ନୁହେଁ । କେତେକ ପକ୍ଷୀ କେବଳ ସୁମଧୁର ସଂଗୀତ ଗାନ କରନ୍ତି ଓ ଆଉ କେତେକ ପକ୍ଷୀ ଗୀତ ବୋଲିବା ସଙ୍ଗେ ସଙ୍ଗେ କର୍କଶ ସ୍ୱରରେ ମଧ୍ୟ କହି ପାରନ୍ତି । ଅନ୍ୟ କେତେକ ପକ୍ଷୀ କେବଳ କର୍କଶ ଶବ୍ଦ ହିଁ କରି ଥାଆନ୍ତି । ତେଣୁ କେତେକ ପକ୍ଷୀଙ୍କୁ କେବଳ ଗୀତ ଶିଖା ଯାଇପାରେ ତ ଆଉ କେତେକଙ୍କୁ ମଣିଷ ଭାଷାରେ କଥାବାର୍ତ୍ତା କରିବା ମଧ୍ୟ ଶିଖା ଯାଇ ପାରେ । କିନ୍ତୁ ଏସବୁ ହେଉଛି ନକଲ, ଘୋଷି ଘୋଷି ମନେ ରଖିବା ଓ ଆକସ୍ମିକ ଭାବେ ତା'ର ପୁନରାବୃତ୍ତି କରିବା । ଶୁଆ କିମ୍ବା ଷ୍ଟାରଲିଂ, ଜେ କିମ୍ବା ମଇନା ପକ୍ଷୀ ଯେତେ ସ୍ପଷ୍ଟ ଓ ପରିଷ୍କାର ଭାବେ କହନ୍ତୁ ନା କାହିଁକି, ପ୍ରଶ୍ନର ଯେତେ ସଠିକ୍ ଉତ୍ତର ଦିଅନ୍ତୁ ନା କାହିଁକି, ଅଥବା ସେମାନଙ୍କର କଥା ଯେତେ ଅର୍ଥପୂର୍ଣ୍ଣ ମନେ ହେଉନା କାହିଁକି ସେସବୁ "ପ୍ରକୃତ କଥାବାର୍ତ୍ତା" ନୁହେଁ ।

## "ଅପ୍ରକୃତ କଥାର" ପ୍ରକୃତ ଅର୍ଥ

ସମୟ ଥିଲା, ଯେତେବେଳେ ମୋ ମନରେ ଜଣେ ଶିକାରୀ ହେବାକୁ ଅପାର ଆଗ୍ରହ ଥିଲା । ମୁଁ ସାଇବେରିଆର ଗୋଟିଏ ଛୋଟ ସହରରେ ରହୁଥାଏ । ସହରର ଘରିପଟେ ତାଇଗା ଜଂଗଲ । ମୋର ପଡ଼ୋଶୀମାନେ ଦକ୍ଷ ଶିକାରୀ ଥିଲେ । ଲଗାତର ଭାବେ ଅନେକ ଦିନ ଧରି ତାଇଗା ମଧ୍ୟକୁ ଶିକାର କରିବାକୁ ଯାଇ ସେମାନେ କେବେ ଶିକାର ବିନା ଫେରୁ ନଥିଲେ । ମୁଁ ଗୋଟିଏ ବନ୍ଧୁକ କିଣି ତାଇଗା ଭିତରକୁ ଯିବାକୁ ଲାଗିଲି । କିନ୍ତୁ ଅନ୍ୟମନସ୍କତା ଯୋଗୁଁ ହେଉ କିମ୍ବା ମୋର ଦୁର୍ଭାଗ୍ୟ ଯୋଗୁଁ ହେଉ, ଥରେ ହେଲେ ବନ୍ଧୁକରୁ ଗୁଳି ମାରିବାର ସୁଯୋଗ ମୋତେ ମିଳିଲା ନାହିଁ । ପ୍ରକୃତ କଥା କହିଲେ, ଏଥି ପାଇଁ ମୁଁ ଦୁଃଖିତ ନଥିଲି, କାରଣ ମୋତେ ଜଣାଥାଏ ଯେ, ମୋ ପିଠି ଉପରେ ବନ୍ଧୁକ ଝୁଲୁଛି ଓ ଯେ କୌଣସି ମୁହୂର୍ତ୍ତରେ ମୁଁ କୌଣସି ଜନ୍ତୁ ବା ଚଢ଼େଇକୁ ଗୁଳି କରି ପାରିବି । ଶିକାରର ଆକର୍ଷଣ ଅପେକ୍ଷା ମୋତେ ବେଶି ଭଲ ଲାଗୁଥାଏ ତାଇଗାର ଶବ୍ଦ, ଗଛ ପତ୍ରର ଗନ୍ଧ ଏବଂ ଗଛ ଡାଳରେ ବସିଥିବା ଚିପ୍‌ମୁକ୍ (ଗୁଣ୍ଡୁଚି ଜାତୀୟ ମୂଷା) ମାନଙ୍କର ମଧୁର ସୁସୁରି । ଦିନେ ତାଇଗା ଜଂଗଲରେ ବୁଲୁବୁଲୁ ମୁଁ ଗୁଳି ଫୁଟିବାର ଶବ୍ଦ ଶୁଣିବାକୁ ପାଇଲି ।



ଗୁଳି ଫୁଟିଥିବା ସ୍ଥାନ ଆଡ଼କୁ ଗତିକରି ମୁଁ ଅଳ୍ପ ସମୟ ପରେ ସେହି ଜାଗା ପାଖରେ ପହଞ୍ଚିଲି । ଦେଖିଲି ଅଳ୍ପ ଦୂରରେ ତାଇଗାରେ ଥିବା ଏକ ହ୍ରଦର ଶାନ୍ତ ଜଳରାଶି ଝଲସି ଉଠୁଛି । ହ୍ରଦ ପାଣିର ଠିକ୍ କୂଳରେ ଠିଆ ହୋଇ ମୋ ବୟସର ଜଣେ ବାଳକ ବିବ୍ରତ ଦୃଷ୍ଟିରେ ଭୂଇଁ ଉପରେ ପଡ଼ିଥିବା ଧଳା-କସରା ରଙ୍ଗର ହଂସ ଆଡ଼କୁ ଚାହିଁ ଥାଏ । ମୋତେ ଦେଖି ବାଳକଟି ଅଭିଜ୍ଞ ଶିକାରୀର ଭଙ୍ଗୀରେ କହିଲା :

"ହଂସଟିକୁ ଗୁଳିମାରି ଦେଇଛି ।"

"ସେ କ'ଣ ବଞ୍ଚିଛି ?" ମୁଁ ପ୍ରଶ୍ନ କଲି । ପକ୍ଷୀଟି ଆଡ଼କୁ ନଅନାଇବାକୁ ମୁଁ ଚେଷ୍ଟା କରୁଥାଏ ।

ସର୍ବଦା ଶିକାର ବିଷୟରେ ଚିନ୍ତା କରୁଥିଲେ ମଧ୍ୟ ହୃଦୟ ଖୋଲି ସ୍ୱୀକାର କରୁଛି, କୌଣସି ଜନ୍ତୁ କିମ୍ବା ପକ୍ଷୀକୁ କିପରି ଗୁଳି କରିବି, କିମ୍ବା ତା'ର ରକ୍ତାକ୍ତ ମୃତ ଶରୀରକୁ କିପରି ଛୁଇଁବି, ସେକଥା କଳ୍ପନା ମଧ୍ୟ କରି ନଥାଏ । କୌଣସି କୌଣସି ପଶୁ ବା ପକ୍ଷୀକୁ ଆହତ ଅବସ୍ଥାରେ ଦେଖିଲେ କ'ଣ କରିବାକୁ ହେବ ତାହା ମୋର କଳ୍ପନାର ବାହାରେ ଥିଲା ।



ବତକମାନେ





"ସେ କ'ଣ ଏ ପର୍ଯ୍ୟନ୍ତ ବଞ୍ଚିଛି ?" ମୁଁ ପୁନର୍ବାର ପ୍ରଶ୍ନ କଲି ।

"ହଁ, ବଞ୍ଚିଛି", ବେଖିଆଲୀ ଭାବେ ଚଢ଼େଇ ପାଖକୁ ଯାଇ ପିଲଟି ଉତ୍ତର ଦେଲା, "ଆହତ ହୋଇଛି !"

ତା'ପରେ ମୁଁ ବୁଝି ପାରିଲି ଯେ, ପିଲଟି ହେଉଛି ଜଣେ ଅନଭିଜ୍ଞ ଶିକାରୀ । ନଚେତ୍ ସେ ଆହତ ହଂସଟି ଆଡ଼କୁ ଯାଇ ନଥାନ୍ତା । ଡେଣାରେ ପିଟି ଓ ଥଣ୍ଟରେ ମାରି ହଂସ କୋକିଶିଆଳୀକୁ ହତ୍ୟାକରି ପାରେ ଏବଂ ହେଟାବାଘ କାଳ ହୋଇ ଯାଇପାରେ । କିନ୍ତୁ ପିଲଟି କେବଳ ଯେ ଆହତ ହଂସ ପାଖକୁ ଗଲା ତା' ନୁହେଁ – ସେ ହଂସଟିକୁ ଉପରକୁ ଟେକି ଧରିଲା । ତା' ହାତରେ ହଂସଟି ହଠାତ୍ ଚୁପ୍ ହୋଇଗଲା । ମୁଁ ଦେଖିଲି, ଗୁଳିଟା ହଂସର ଡେଣାରେ ବାଜିଛି ।

"ଥୋପ ହିସାବରେ ହଂସଟି ମୋତେ ସାହାଯ୍ୟ କରିବ । ଅନେକ ହଂସ ଏଠାକୁ ଆସନ୍ତି, ମାତ୍ର ସେମାନେ ବହୁ ଉଚ୍ଚରେ ଉଡ଼ନ୍ତି", ଶିକାରୀ କହିଲା ।

ଆହତ ହଂସଟିକୁ ମୋତେ ଧରାଇ ଦେଇ, ସେ ନିଜ ପକେଟ୍‌ରୁ ପତଳା ଦଉଡ଼ିଟିଏ କାଢ଼ିଲା । ପକ୍ଷୀର ଗୋଟିଏ ଗୋଡ଼ରେ ଦଉଡ଼ିର ଗୋଟିଏ ଅଂଶକୁ ବାନ୍ଧି ଦେଇ, ବାଡ଼ି ଖଣ୍ଡକରେ ଦଉଡ଼ିର ଅନ୍ୟ ପଟକୁ ବାନ୍ଧି ଦେଲା । ତା'ପରେ ନିଜ ଜୋତାରେ ବାଡ଼ିଖଣ୍ଡିକୁ ମାଟି ଉପରେ ଶକ୍ତ ଭାବେ ପୋତିଲା ଏବଂ ମୁଁ ଧରିଥିବା ହଂସଟିକୁ ଭୂଇଁ ଉପରେ ଛାଡ଼ି ଦେବାକୁ ମୋତେ କହିଲା ।

ସମ୍ଭବତଃ, ହଂସଟିର ଟିକିଏ ଚେତା ଆସି ଯାଇଥାଏ । ମାଟି ଉପରେ ପଡ଼ିଥିବାର ଜାଣିବାରୁ ସେ ଗୋଡ଼ଟେକି ଠିଆ ହେଲା । ଋରିପଟକୁ ଅନାଇ କିଛି ଉପାୟ ନଦେଖି ପରେ ଖୁବ୍ ଦ୍ରୁତ ଗତିରେ ପଡ଼ିଆ ଆଡ଼କୁ ଦୌଡ଼ିବାକୁ ଲାଗିଲା । ଆହତ ଡେଣାଟି ମାଟି ଉପରେ ଘୁଷୁରୁ ଥାଏ । ହଠାତ୍ ଦଉଡ଼ିଟି ଟାଣି ହୋଇ ଯିବାରୁ ପକ୍ଷୀଟି ଆଉ ପାଦେ ଆଗକୁ ଯାଇ ପଡ଼ିଗଲା । ପୁଣି ହଠାତ୍ ଠିଆ ହୋଇ ଦୌଡ଼ି ଯିବାକୁ ଚେଷ୍ଟା କଲା ଏବଂ ପୁଣି ପଡ଼ିଗଲା । କିଛି ସମୟ ପାଇଁ ହଂସଟି ନିଶ୍ଚଳ ହୋଇ ଆହତ ଡେଣାକୁ ମେଲାଇ ପଡ଼ି ରହିଲା ସେଇଠି । ତା'ପରେ ଠିଆ ହୋଇ କଡ଼ ଲେଉଟାଇବାରୁ ଦଉଡ଼ିଟି ଟାଣି ହୋଇଗଲା ଏବଂ ବିଫଳ ମନରେ ପୁଣି ପଡ଼ିଗଲା । ଏହି ପରି କେତେଥର ଚେଷ୍ଟାକଲା ପରେ ଶେଷକୁ ଥକି ଯାଇ କିମ୍ବା ନିଜର ଶକ୍ତିହୀନ ଅବସ୍ଥା ବୁଝିପାରି ନିଶ୍ଚଳ ଭାବେ ମାଟି କାମୁଡ଼ି ନିଜର ଲମ୍ବା ବେକକୁ ଆଗକୁ ମେଲେଇ ଶୋଇ ରହିଲା ।

"କିଛି ବ୍ୟସ୍ତ ହେବାର ନାହିଁ", ଦୃଢ଼ ମନରେ ପିଲଟି କହିଲା । "ବର୍ତ୍ତମାନ ଟିକିଏ ଶୋଇ ପଡ଼ୁ, ତା'ପରେ ମୋତେ ସାହାଯ୍ୟ କରିବ । ତୁମେ ଦେଖିବ ଆମେ କିପରି ଶିକାର କରିବା । ଉଡ଼ିବା ଅବସ୍ଥାରେ ତୁମେ ଭଲ ଗୁଳି ମାରି ପାର ?"



ମୁଁ ନିରବ ରହିଲି । ଆହତ ପକ୍ଷୀଟି କଥା ଭାବି ମନ ମୋର ଆଉଟି ପାଉଟି ହେଉଥାଏ ଚଢ଼େଇଟିକୁ ପାଇବା ପାଇଁ । ପିଲାଟି ଯାହା ମାଗିଲେ ମଧ୍ୟ ସବୁ ଦେଇ, ମୁଁ ଆହତ ପକ୍ଷୀଟିକୁ ନେବାକୁ ପ୍ରସ୍ତୁତ ଥାଏ ।

"ଲୁଚି ଯାଆ !" ଅଳ୍ପ ସମୟ ପୂର୍ବେ ପରିଚିତ ହୋଇଥିବା ପିଲାଟି ମୋର କାନ ପାଖରେ ଜୋରରେ କହିଲା । "ଏହି ପାଖ ବୁଦା ଉହାଡ଼ରେ ଲୁଚିଯାଆ ! ଶୁଣୁଛୁ ?"

ମୁଁ ତା'ର କଥାମାନି ଲୁଚି ଗଲି । ଶୁଣିବାକୁ ପାଇଲି ସିଵି ଶବ୍ଦ, ସତେ ଯେପରି କିଏ ଜଣେ ବଙ୍କା ସରୁ ବାଡ଼ି ଖଣ୍ଡେ ଧରି ଜୋରରେ ବିଞ୍ଚୁଛି । ଏହା ଥିଲା ହଂସ ଉଡ଼ିବାର ଶବ୍ଦ । ନିଜର ବଡ଼ ବଡ଼ ଡେଣା ହଲାଇ ସେମାନେ ବାୟୁ ମଣ୍ଡଳରେ ତରଙ୍ଗ ସୃଷ୍ଟି କରୁ ଥାଆନ୍ତି ।

ଏହି ଶବ୍ଦକୁ ଆହତ ପକ୍ଷୀଟି ମଧ୍ୟ ଶୁଣି ପାରୁଥାଏ । ତା'ପରେ ପକ୍ଷୀଟିର କ'ଣ ହେଲା ମୁଁ ଜୀବନରେ କଦାପି ଭୁଲିବି ନାହିଁ । ପ୍ରଥମେ ସେ ମୁଣ୍ଡ ଟିକିଏ ଉପରକୁ ଟେକିଲା, ତା'ପରେ ଗୋଡ଼ ହଲାଇଲା ଓ ବେକକୁ ପ୍ରସାରିତ କଲା । ହଂସମାନଙ୍କର ଉଡ଼ିବା ଶବ୍ଦ ପାଖେଇ ଆସିଥାଏ । ଆହତ ହଂସଟି ସତେ ଯେପରି ସେମାନଙ୍କୁ ଭେଟିବାକୁ ଯାଉଛି ଭାବି କ୍ରମଶଃ ଅଧିକରୁ ଅଧିକ ଉପରକୁ ବେକ ଟେକୁଥାଏ । ଗଛ ଉପରେ ଦଳେ ହଂସ ଦେଖା ଦେଲେ । ଏତିକି ବେଳେ ଆହତ ହଂସଟି ବଡ଼ ପାଟିରେ ରଡ଼ି ଛାଡ଼ିଲା ଏବଂ ଉଡ଼ୁଥିବା ହଂସ ଦଳ, ଏକ ଆକସ୍ମିକ ପ୍ରତିବନ୍ଧକର ସମ୍ମୁଖୀନ ହେଲା ଭଳି ଟିକେ ଆକାଶରେ ଅଟକି ଯାଇ ଖୁବ୍ ଶୀଘ୍ର ତଳକୁ ଖସିବାକୁ ଲାଗିଲେ । ବୁଦା ଉହାଡ଼ରୁ ମୋତେ ସବୁ କଥା ସ୍ପଷ୍ଟ ଦିଶୁଥାଏ – ପିଲାଟି ବନ୍ଧୁକ ଉପରକୁ ଉଠାଇ ଲକ୍ଷ ଧରିଲା । କ୍ଷଣକ ପାଇଁ ମୁଁ ଆହତ ହଂସଟି ଉପରକୁ ନଜର ଦେଲି । ସେ ହଠାତ୍ ବୁଲିପଡ଼ି ଗୋଟିଏ ଡେଣା ହଲାଇଲା, କାରଣ ଅନ୍ୟ ଡେଣାଟି ଜୋରରେ ଆଘାତ ପାଇଥିଲା ଓ ତାହା ସେହି ଭଳି ଆଶାହୀନ ହୋଇ ଝୁଲୁଥିଲା । ହଂସଟି ଥରେ ଉପରକୁ ଡେଇଁ ପଡ଼ି ଦୁଲ୍‌କରି ଭୂଇଁ ଉପରେ କଚଡ଼ି ହୋଇ ପଡ଼ିଲା । କିନ୍ତୁ ହଂସ ଦଳ ତେଣେ ଉଡ଼ିଉଡ଼ି ତଳକୁ ଖସିବାକୁ ଲାଗି ଥାଆନ୍ତି । ହେଇ, ହେଇ ଗୁଳି ଫୁଟିବ ...! ତତ୍‌କ୍ଷଣାତ୍ ହଂସଟି କିଛି ବୁଝି ପାରିଲା ଭଳି ମୁଣ୍ଡ ଉପରକୁ ଟେକି ଉଚ୍ଚ ସ୍ୱରରେ ରଡ଼ି ଛାଡ଼ିଲା । କିନ୍ତୁ ଥରେ ମାତ୍ର ରଡ଼ି ଛାଡ଼ି ବେକଟିକୁ ପ୍ରସାରିତ କରି ଓ ଆଖିକୁ ବନ୍ଦ କରି–ସେ ଭୂଇଁ ଉପରେ ଛାଟି ହୋଇ ପଡ଼ିଲା । ମୁଁ ଉପରକୁ ଅନାଇଲି । ଉଡ଼ି ଉଡ଼ି ତଳକୁ ଖସୁଥିବା ହଂସ ଦଳ ପୁଣି କୌଣସି ଅଜଣା ବିପଦର ଆଶଙ୍କାରେ କିଛି କ୍ଷଣ ସ୍ଥିର ଗତିରେ ଉଡ଼ି ବୁଲିଲେ । ତା'ପରେ ଅଳ୍ପ କେଇ ମିନିଟ୍ ପରେ ହ୍ରଦ ଉପରେ ଖୁବ୍ ଦୂରକୁ ଉଡ଼ି ଚାଲିଗଲେ ।

ବୁଦା ଉହାଡ଼ରୁ ମୁଁ ବାହାରି ଆସିଲି ।

"ସେ ନିଜ ବନ୍ଧୁମାନଙ୍କୁ ସତର୍କ କରିଦେଲା", ଫୁସ୍ ଫୁସ୍ ହୋଇ ନୂଆ ପରିଚିତ ପିଲାଟି ମୋ କାନ ପାଖରେ କହିଲା । "ହଁ, ସତର୍କ କରି ଦେଲା", ଆଉଥରେ ଦୋହରେଇଲା ପିଲାଟି । "ହଂସମାନଙ୍କୁ ଡାକିଥିଲା ସତ, ମାତ୍ର ଯେତେବେଳେ ବୁଝି ପାରିଲା ଯେ, ସେମାନଙ୍କ ପାଖକୁ ଉଡ଼ି ଯାଇ ପାରିବ ନାହିଁ, ସେତେବେଳେ ବିପଦ ସଙ୍କେତ ଦେଲା । ତୁମ ମତରେ ପ୍ରକୃତ କଥା କ'ଣ ?" ପିଲାଟି ମୋତେ ପଚାରିଲା ।

କିଛି ଉତ୍ତର ନଦେଇ, ଭୂଇଁରେ ପୋତା ଯାଇଥିବା ବାଡ଼ିଟିକୁ ଉପାଡ଼ି ମୁଁ ଆହତ ହଂସଟିକୁ ହାତକୁ ଆଣିଲି ଓ ଦୃଢ଼ମନରେ ସହର ଆଡ଼କୁ ଆଗେଇଲି । ପିଲାଟି ଗୁଳି କରିଥିବା ହଂସଟିକୁ ନେଇ ଯିବା ମୋ ପକ୍ଷରେ ଯୁକ୍ତିଯୁକ୍ତ ନଥିଲା । ତଥାପି ମୁଁ ସେତେବେଳେ କିଛି ମନରେ ଭାବି ନଥିଲି । କେବଳ ଇଚ୍ଛା ହେଉଥାଏ, କୌଣସିମତେ ପକ୍ଷୀଟିକୁ ରକ୍ଷା କରନ୍ତି କି ।

ସହରରେ ପହଞ୍ଚିଲା ବେଳକୁ ପିଲାଟି ମୋର ପଛେ ପଛେ ଆସି, ମୋ ପାଖରେ ପହଞ୍ଚି ଯାଇଥାଏ । ଆମେ ପାଖାପାଖି ଚାଲୁଥାଉ । ମୁଁ ଭାବିଲି ପିଲାଟି ସେଠାରୁ ହଂସକୁ ଛଡ଼ାଇ ନେବାକୁ ଚାହୁଁଛି । କିନ୍ତୁ ସେ କେବଳ କହିଲା :

"ଯଦି ବଞ୍ଚିଯାଏ, ତେବେ ତାକୁ ଛାଡ଼ିଦେବୁ । ବୁଝିଲୁ ?"

ମୁଁ ମୁଣ୍ଡ ହଲାଇ ସମ୍ମତି ଜଣାଇଲି ।

ହଂସଟି ସତରେ ବଞ୍ଚିଗଲା, ଦିନକୁ ଦିନ ଆରୋଗ୍ୟ ହେବାକୁ ଲାଗିଲା ଓ ପାଟି

ଖୋଲିଲି । ବିଭିନ୍ନ ପ୍ରକାର ଶବ୍ଦ ସେ କରୁଥାଏ : ରାଗି ଗଲେ ଗୋଟିଏ ପ୍ରକାରର ତ, ମନ ଖୁସିରେ ଅନ୍ୟ ପ୍ରକାରର । ମୋତେ ଦେଖିଲେ କିମ୍ବା ଭୋକ ଲାଗିଲେ ସେ କ'ଣ ସବୁ କହି ଯାଉଥାଏ । ଖାଦ୍ୟ ପାଇବା ପରେ ମଧ୍ୟ କ'ଣ ଗୁଡ଼ାଏ ବକ୍ ବକ୍ ହୋଇ କହୁଥାଏ – ସତେ ଯେପରି ଧନ୍ୟବାଦ ଜଣାଉଛି । ତା'ର ପ୍ରତ୍ୟେକ ଶବ୍ଦର ଉଚ୍ଚାରଣ ପ୍ରାୟ ଏକା ଭଳି – "ଗା-ଗା" । ମାତ୍ର ପ୍ରତିଥର ସେ ଏହି ଶବ୍ଦଟିର ପୁନରାବୃତ୍ତି ଭିନ୍ନ ଭିନ୍ନ ଢଙ୍ଗରେ କରୁଥାଏ । କେତେବେଳେ ଜୋରରେ ତ କେତେବେଳେ ଆସ୍ତେ ଆସ୍ତେ, କିମ୍ବା କେବେ ଦୁଇଥର "ଗା-ଗା" ତ ଆଉ କେବେ ବାରମ୍ବାର କହିଗଲେ ।

ପ୍ରଥମ ଥର ପାଇଁ ମୁଁ ଏହିପରି ଚଢ଼େଇଙ୍କର ଭାଷା ସହିତ ପରିଚିତ ହୋଇଥିଲି । ଅବଶ୍ୟ ମୋର ମନର କଥା ଓ ଅନୁଭୂତି ମୁଁ କାହାରିକୁ କହି ନଥିଲି । କାରଣ ମୁଁ ଜାଣେ, କେହି ମୋତେ ବିଶ୍ୱାସ କରିବେ ନାହିଁ, ହସି ଉଡ଼ାଇ ଦେବେ ! ମାତ୍ର ମୋ ମନରେ ଦୃଢ଼ ଧାରଣା ହେଲା ଯେ, ପକ୍ଷୀମାନେ କଥାବାର୍ତ୍ତା କରନ୍ତି । ହୋଇପାରେ, ସବୁ ପକ୍ଷୀ କଥାବାର୍ତ୍ତା କରନ୍ତି ନାହିଁ, କିନ୍ତୁ ମୋର ହଂସଟି ନିଶ୍ଚୟ କଥା କହୁଛି । ମୁଁ ଯେଉଁଦିନ ହଂସଟିକୁ ମୁକ୍ତ ଆକାଶକୁ ଛାଡ଼ି ଦେଲି, ସେ ଦିନ ଏହି ଧାରଣା ମୋ ମନରେ ବଳବତ୍ତର ହେଲା ।

ହେମନ୍ତ ଋତୁ ଆସିଯାଇଥାଏ । ଦଳ ଦଳ ପକ୍ଷୀ ଦକ୍ଷିଣକୁ ଉଡ଼ି ଯାଉ ଥାଆନ୍ତି । ମୋ ହଂସଟି ବ୍ୟସ୍ତ ହୋଇ ପଡ଼ୁଥାଏ । ହଂସ ଭାଷାରେ ସେ ମୋତେ କ'ଣ ସବୁ କହିଗଲା । ମୁଁ ବୁଝି ପାରିଲି : ସେ ମୋ ପାଖରେ ରହିଲେ ଥଣ୍ଡା କିମ୍ବା ଭୋକରେ


ତିତିର ପକ୍ଷୀମାନେ

ମରିଯିବ ବୋଲି ଭାବୁଛି । ତା ପରେ ମୁଁ ତାକୁ ଛାଡ଼ିଦେଲି । ହଂସଟି ଘର ଉପରେ ଥରେ ଚକ୍କର ମାରିଲା, ଆଉ ଟିକିଏ ଉପରକୁ ଉଠି ପୁଣି ଦ୍ୱିତୀୟ ଥର ଚକ୍କର କାଟି ଖୁବ୍ ଶୀଘ୍ର ଅତି ଉଚ୍ଚକୁ ଉଡ଼ିଗଲା । ହଠାତ୍ ପୁଣି ଅତି କ୍ଷିପ୍ର ଗତିରେ ତଳକୁ


ବାଜପକ୍ଷୀ

ଖସିଲା, ଅତି ଅଳ୍ପ ଉପରେ ଘର ଘୂରିପଟେ ଥରେ ଉଡ଼ି ଉଚ୍ଚ ସ୍ୱରରେ ଡାକଦେଲା । ଏହି ଡାକରେ ଥିଲା ସବୁ କଥାର ସଙ୍କେତ – ବିଦାୟ ଓ ଧନ୍ୟବାଦ, ଭଗ୍ନ ସ୍ୱାସ୍ଥ୍ୟରୁ ଆରୋଗ୍ୟ ଲାଭ କରିବାର ଆନନ୍ଦ ଓ ଚଢ଼େଇର ମୁକ୍ତି... !

ଅନେକ ବର୍ଷ ବିତି ଗଲା । ଥରେ ମୁଁ ଜଙ୍ଗଲ ଭିତରେ ହାତରେ ଗୋଟିଏ ଛୋଟ ଟେପ୍ ରେକର୍ଡର ଧରିଥିବା ବ୍ୟକ୍ତିଙ୍କୁ ଭେଟିଲି । ଦୂରରୁ ମୁଁ ଏହି ଲୋକ ଜଣକୁ ଲକ୍ଷ୍ୟ କରୁଥାଏ, ସେ କିପରି ପ୍ରତ୍ୟେକ ବୁଦା ପାଖକୁ ସତର୍କତାର ସହ ଯାଇ ଯାଇ ଅନେକ ସମୟ ପର୍ଯ୍ୟନ୍ତ ଧୈର୍ଯ୍ୟର ସହ ଅପେକ୍ଷା କରୁଥାଏ । ଶେଷରେ ମୁଁ ବୁଝି ପାରିଲି ଯେ, ଲୋକଟି ଚଢ଼େଇଙ୍କର କଣ୍ଠ ସ୍ୱର ରେକର୍ଡ କରୁଛି । ସେହି ଲୋକଟି ଯେତେବେଳେ ବିଶ୍ରାମ ନେବାକୁ ଟିକିଏ ବସିଲା, ମୁଁ ତା ପାଖକୁ ଗଲି । ଅନେକ ବର୍ଷ ଅତିବାହିତ ହୋଇ ଯାଇଥିଲେ ମଧ୍ୟ, ମୁଁ ତାକୁ ଚିହ୍ନି ପାରିଲି ।

"ହଂସ ! ତୁମର ହଂସ କଥା ମନେ ଅଛି ?" ମୁଁ ପ୍ରଶ୍ନ କଲି । "ସେହି ହଂସଟି ଯିଏକି କଥାବାର୍ତ୍ତା କରୁଥିଲା ?"

କରମର୍ଦ୍ଦନ ପାଇଁ ମୋ ଆଡ଼କୁ ହାତ ବଢ଼ାଇ ସେ କହିଲା, "ହଁ । ସେଇ ଯେଉଁ ହଂସ ତା'ର ବନ୍ଧୁମାନଙ୍କୁ ବିପଦ ସମ୍ବନ୍ଧରେ ସତର୍କ କରି ଦେଇଥିଲା ।"

ତାପରେ ମୋର ସେହି ବନ୍ଧୁଟିର ଜୀବନରେ ଘଟିଥିବା ଘଟଣା ସବୁ ମୁଁ ଜାଣିପାରିଲି । ଯେଉଁ ଦିନ ଆମେ ତାଇଗା ଭିତରେ ପରସ୍ପରକୁ ଭେଟି ଥିଲୁ, ମୋ

ବନ୍ଧୁର ଜୀବନରେ ତାହା ଥିଲା ଶିକାର କରିବାର ପ୍ରଥମ ଦିନ । ସେ ପ୍ରଥମ ଥର ଗୁଳି ମାରି ହଂସଟିକୁ ଆହତ କରିଥିଲା ଓ ତା ପରଠୁ ଆଉ ବନ୍ଧୁକ ସେ ଛୁଇଁ ନାହିଁ । ସେହି ଶିକାର ଘଟଣାଟି ତା'ର ଭାଗ୍ୟ ନିର୍ଦ୍ଧାରଣ କରିଥିଲା । ସେ ଜଣେ ଜୀବବିଜ୍ଞାନୀ ହୋଇ ପକ୍ଷୀମାନଙ୍କ ଉପରେ ଗବେଷଣା କରିବାକୁ ଲାଗିଲା । ଏବେ ସେ ପକ୍ଷୀମାନଙ୍କର କଥାବାର୍ତ୍ତା ସଂପର୍କରେ ଆଗ୍ରହୀ ।

ସେ ମୋତେ ତାଙ୍କ ରେକର୍ଡକରା ଲମ୍ବ ଟେପ୍‌ଗୁଡ଼ିକୁ ଦେଖାଇଲେ । ସେଥିରେ ଅଙ୍କାବଙ୍କା ଗାରଗୁଡ଼ିଏ ପଡ଼ିଥାଏ । କେତେକ ଗାର ଉପରକୁ ଟାଣି ହୋଇ ଯାଇ ପୁଣି ଖୁବ୍ ତଳକୁ ଖସି ପୁଣି ଉପରକୁ ଉଠି ଥାଏ । ବେଳେବେଳେ ସିଧା ତ ଆଉ ବେଳେବେଳେ ଅଙ୍କାବଙ୍କା ତ ଆଉ କେତେବେଳେ ଗୁଡ଼େଇ ହୋଇଯାଇଥାଏ । ବେଳେ ବେଳେ ଗାରଗୁଡ଼ିକ ଛିଣ୍ଡି ଯାଇଥାନ୍ତି । ଏହି ଗାରଗୁଡ଼ିକ ହେଉଛି ପକ୍ଷୀଙ୍କ କଣ୍ଠ ସ୍ୱରର ଟେପ୍ । ସ୍ୱତନ୍ତ୍ର ଯନ୍ତ୍ର ସାହାଯ୍ୟରେ ବୈଜ୍ଞାନିକମାନେ ପକ୍ଷୀଙ୍କର କଣ୍ଠ ସ୍ୱର ରେକର୍ଡ କରିଥାଆନ୍ତି । ରେକର୍ଡ ହୋଇଥିବା ଏହି ଟେପ୍‌କୁ ସୋନୋଗ୍ରାମ୍ ବା ସ୍ୱରଲିପି କୁହାଯାଏ । ଏହି ଟେପ୍‌କୁ ବଜାଇ ଅବଶ୍ୟ ପକ୍ଷୀର କଣ୍ଠ ସ୍ୱର ଶୁଣି ହୁଏ ନାହିଁ । ମାତ୍ର କେଉଁଠି କ୍ଷୀଣ କଣ୍ଠରେ ଓ କେଉଁଠି ଉଚ୍ଚ କଣ୍ଠରେ ପକ୍ଷୀଟି ଗୀତ ଗାଇଛି, କିମ୍ବା କେଉଁଠି ଗୀତ ବନ୍ଦ ଅଛି ତାହା ସହଜରେ ଜାଣିହୁଏ । ଏହା ମଧ୍ୟ ଅତ୍ୟନ୍ତ ଦରକାରୀ ...।

"ଏହାର ଅର୍ଥ ହେଲା : ପକ୍ଷୀମାନେ ତାହେଲେ ସତରେ କଥା କହନ୍ତି ?" ଭାବି ମନ ମୋର ପୁଲକିତ ହୋଇ ଉଠିଲା ।


କୁକୁଡ଼ାଛୁଆ

ମୋର ସାଥୀ ଟିକିଏ ହସି ଦେଲେ, କିନ୍ତୁ କିଛି ଉତ୍ତର ଦେଲେ ନାହିଁ । ପରେ ମୁଁ ବୁଝି ପାରିଲି, ତାଙ୍କର ନିରବତାର କାରଣ ।

ଯେବେଠୁଁ ଏ ପୃଥିବୀ ପୃଷ୍ଠରେ ମଣିଷ ବସବାସ କରି ଆସୁଛି, ସେବେଠୁଁ ସେ ଚଢ଼େଇଙ୍କର କଣ୍ଠସ୍ୱର ଶୁଣି ଆସୁଛି । ପ୍ରଥମେ ମଣିଷ ବନ୍ୟ ପକ୍ଷୀଙ୍କର କଳରବ ଶୁଣୁଥିଲା ଏବଂ ପରେ ଯେତେବେଳେ ସେମାନେ ଗୃହ ପାଳିତ ହେବାକୁ ଲାଗିଲେ, ସେମାନଙ୍କର ମଧ୍ୟ କଣ୍ଠ ଶୁଣି ପାରିଲା । କିନ୍ତୁ, କେହି କେବେ ଚଢ଼େଇଙ୍କ କଣ୍ଠସ୍ୱରର ଅର୍ଥ ବୁଝିବାକୁ ଚେଷ୍ଟା କରି ନଥିଲେ । କିମ୍ବା କାହାରି ମନରେ ଭାବନା ଜନ୍ମି ନଥିଲା ଯେ, ପକ୍ଷୀଙ୍କର କଣ୍ଠ ସ୍ୱରରେ କୌଣସି ଅର୍ଥ ଥାଇ ପାରେ ବୋଲି ।

ଅଳ୍ପଦିନ ପୂର୍ବେ ବୈଜ୍ଞାନିକମାନେ ଚଢ଼େଇଙ୍କ କଥାବାର୍ତ୍ତା ଉପରେ ଗବେଷଣା ଆରମ୍ଭ କଲେ ଏବଂ ହଠାତ୍ ଅନେକ କୌତୂହଳଜନକ ବିଷୟ ଆବିଷ୍କାର କରି ପାରିଲେ । ସବୁଠାରୁ ପ୍ରଧାନ ଥିଲା ହଜାର ହଜାର ବିସ୍ମୟଭରା ପ୍ରଶ୍ନ ଓ ଅନେକ ଆଶ୍ଚର୍ଯ୍ୟ କଥା । ବୈଜ୍ଞାନିକମାନଙ୍କର ଗବେଷଣା ପଥରେ ଅନେକ କାରିଗରୀ ପ୍ରତିବନ୍ଧକ ଦେଖା ଦେଲା । ଜଣାଗଲା, ଚଢ଼େଇଙ୍କର କଣ୍ଠ ସ୍ୱର ଶିଖିବା, ଏପରିକି ସେମାନଙ୍କର ବାସ୍ତବ ଗାୟନକୁ ଶୁଣିବା ସହଜ କଥା ନୁହେଁ । ଏବେ ଗୃତକ ପକ୍ଷୀ କଥା ଦେଖାଯାଉ । କେହି ଯଦି ଏହି ପକ୍ଷୀଟିକୁ ଦେଖି ନଥିବେ, ତେବେ ତାହାର ଗୀତ ମନେହୁଏ ଶୁଣିଥିବେ ନିଶ୍ଚୟ । ବସନ୍ତ ଋତୁରେ ଓ ଗ୍ରୀଷ୍ମ କାଳର ଆରମ୍ଭରେ ସହର ବାହାର ଥିବା ପଡ଼ିଆର ବାୟୁମଣ୍ଡଳରେ ଭାସିଆସେ ଗୃତକ ପକ୍ଷୀମାନଙ୍କର କଣ୍ଠ ସ୍ୱର । ଗୃତକ ପକ୍ଷୀକୁ ଦେଖିବା ସହଜ ନୁହେଁ । କାରଣ ଏହି ଚଢ଼େଇଟି ଖୁବ୍ ବେଶି ବଡ଼ ନୁହେଁ, ଦେଖିବାକୁ ମାଟି ଭଳି ଧୂସରିଆ । ଉପରେ ଉଡ଼ିଲାବେଳେ ମଧ୍ୟ ଆଖିପିଛୁଳାକେ ଉଭେଇ ଯାଏ, କାରଣ ଉଡ଼ିଲା ବେଳେ ଗୃତକ ପକ୍ଷୀ ପ୍ରାୟ


କୁକୁଡ଼ା

୧୦୦ରୁ ୧୨୦ ମିଟର ଉଚ୍ଚରେ ଉଡ଼େ । ଏତେ ଦୂରରୁ ତାହାକୁ ଦେଖିବା କଷ୍ଟକର ବ୍ୟାପାର । ତା'ର କଣ୍ଠ ସ୍ୱର ଓ ଗୀତ ଶିଖିବା ଆହୁରି କଷ୍ଟକର କଥା । କେବଳ

ଶୁଣିବା କଥା ନୁହେଁ ଶିଖିବା ମଧ୍ୟ – ହେଲେ ପକ୍ଷୀଟି ଯେ ପ୍ରତିସେକେଣ୍ଡରେ ପ୍ରାୟ ୧୩୦ଟି ଶବ୍ଦ କରି ପାରେ !

ଏ ଦିଗରେ କାରିଗରୀ କୌଶଳର ବିକାଶ ବିଶେଷ ସାହାଯ୍ୟ କଲା । ସ୍ୱତନ୍ତ୍ର ଯନ୍ତ୍ର, ଟେପ୍ ରେକର୍ଡର ଏବଂ ବୈଜ୍ଞାନିକମାନଙ୍କର କଠିଣ ପରିଶ୍ରମ ଓ ଅନୁସନ୍ଧିତ୍ସୁ ମନ ଫଳରେ ଏହା ସମ୍ଭବ ହେଲା ।

ଏବେ ସମସ୍ତେ ଜାଣନ୍ତି ଯେ, ପ୍ରତ୍ୟେକ ଚଢ଼େଇର ଅନେକ ସଙ୍କେତ ଅଛି । ଜୀବନର ବିଭିନ୍ନ ଅବସ୍ଥା ପାଇଁ ଏହି ସଙ୍କେତମାନ ଉଦ୍ଦିଷ୍ଟ । ଉଦାହରଣ ସ୍ୱରୂପ, ଚ୍ୟାଫିନସ୍ ଚଢ଼େଇ ପ୍ରାୟ ୩୦ ପ୍ରକାର ଶବ୍ଦ ଉଚ୍ଚାରଣ କରେ । "ପାରିବାରିକ କଥାବାର୍ତ୍ତା" ଓ "ଆଗନ୍ତୁକମାନଙ୍କ" ସହିତ କଥାବାର୍ତ୍ତାରେ ଫରକ୍ ଥାଏ । ହଂସ କୋଡ଼ିଏରୁ ଅଧିକ ପ୍ରକାର ଶବ୍ଦ ଉଚ୍ଚାରଣ କରିପାରେ । ପରଥିବା ଜୀବ – ପକ୍ଷୀମାନଙ୍କ ଜୀବନରେ ସେମାନଙ୍କର କଣ୍ଠର ଭୂମିକା ଅସୀମ । କାରଣ ପକ୍ଷୀଙ୍କର ଘ୍ରାଣଶକ୍ତି ଅତି ଦୁର୍ବଳ । ସେମାନେ ଗନ୍ଧ ବାରି କୌଣସି କଥା ଜାଣି ପାରନ୍ତି ନାହିଁ । ଏହି ଗନ୍ଧ କେତେକ ଜନ୍ତୁଙ୍କ କ୍ଷେତ୍ରରେ ଆଖି ଓ କାନ କାର୍ଯ୍ୟ କରେ କିମ୍ବା ଯାହା ହେଲେ ବି, ଶ୍ରବଣଶକ୍ତି ଓ ଦୃଷ୍ଟିଶକ୍ତିକୁ ସାହାଯ୍ୟ କରେ । ପକ୍ଷୀ ଲାଗି ଶବ୍ଦର ମହତ୍ତ୍ୱ ଖୁବ୍ ଅଧିକ । ପକ୍ଷୀମାନେ ଦେଖୁଥିବା କଥା ଅପେକ୍ଷା ଶୁଣୁଥିବା କଥାକୁ ଅଧିକ ବିଶ୍ୱାସ କରନ୍ତି । ଥରେ ଜଣେ ଶିକାରୀ ସ୍ୱତନ୍ତ୍ର ସୁସୁରି ବଜାଇ ତିତିର ପକ୍ଷୀଙ୍କୁ ଡାକୁଥିଲେ । ଏହି ସୁସୁରି ଶବ୍ଦ ମାଈ ତିତିର ପକ୍ଷୀର ଶବ୍ଦଭଳି, ତେଣୁ ଅଣ୍ଡିରା ତିତିର ପକ୍ଷୀମାନେ ଆସିଲେ । ହଠାତ୍ ଶିକାରୀ ଜଣକ ନିଜର ମୁଣ୍ଡ ଉପରେ ଶକ୍ତ ଆଘାତ ପାଇଲେ । ସେ ଯଦି ଗୋଟାଏ ମୋଟା ଟୋପି ପିନ୍ଧି ନଥାନ୍ତେ, ତେବେ ସେ ହଠାତ୍ ଜାଣି ପାରି ନଥାନ୍ତେ ତାଙ୍କ ଉପରେ କିଏ ଆକ୍ରମଣ କଲା ଏବଂ ହୁଏତ ତାଙ୍କର ଚେତା ବୁଡ଼ି ଯାଇଥାଆନ୍ତା । ମାତ୍ର ଟୋପିଟି ତାଙ୍କୁ ବିପଦ ମୁଖରୁ ରକ୍ଷା କରିଦେଲା ଏବଂ ଶିକାରୀ ଆକ୍ରମଣକାରୀକୁ ଦେଖି ପାରିଲେ । ଏହା ଥିଲା ଗୋଟିଏ ଆକ୍ରମଣକାରୀ ବାଜ ପକ୍ଷୀ । ଆକ୍ରମଣକାରୀ ପକ୍ଷୀଟି ଦେଖିଲା ଯେ, ତା ସମ୍ମୁଖରେ ମାଈ ତିତିର ପକ୍ଷୀ ନାହିଁ, ମାତ୍ର ସେ ତା'ର କଣ୍ଠ ସ୍ୱର ଶୁଣି ପାରିଥିଲା । ତେଣୁ ସେ ନିଜର ଦୃଷ୍ଟିଶକ୍ତି ଅପେକ୍ଷା ଶ୍ରବଣଶକ୍ତିକୁ ଅଧିକ ବିଶ୍ୱାସ କରିଥିଲା ।

ଦୃଷ୍ଟିଶକ୍ତି ଅପେକ୍ଷା ଶ୍ରବଣଶକ୍ତି ଉପରେ କେବଳ ଯେ ବନ୍ୟ ପକ୍ଷୀମାନେ



ଚିଲ ପକ୍ଷୀ

ବିଶ୍ୱାସ କରନ୍ତି, ତା ନୁହେଁ ।

କୁକୁଡ଼ା ହେଉଛି ଗୋଟିଏ ଉତ୍ତମ ମା' – କୁକୁଡ଼ାଛୁଆଗୁଡ଼ିକ ତା'ର ସୁନା ପିଲା । କୁକୁଡ଼ା ତା'ର ପିଲାମାନଙ୍କୁ କେବେ ହେଲେ ଦୃଷ୍ଟିରୁ ଅନ୍ତର କରେ ନାହିଁ । ଛୁଆଗୁଡ଼ିକ ମଧ୍ୟ ମା'ର ଥରଟିଏ ଡାକରେ ତା ପାଖକୁ ଦୌଡ଼ି ଆସନ୍ତି । ମାତ୍ର ପ୍ରଶ୍ନଟି ହେଲା – ଛୁଆମାନଙ୍କ ପାଇଁ କ'ଣ ଗୁରୁତ୍ୱପୂର୍ଣ୍ଣ, ମା'କୁ ଦେଖିବା ବା ତା'ର କଣ୍ଠସ୍ୱର ଶୁଣିବା ?

ପ୍ରକୃତ କଥା କ'ଣ ଜାଣିବାକୁ ସ୍ଥିର କରାଗଲା । ମା କୁକୁଡ଼ାଟିକୁ ଗୋଟିଏ ଘରେ ଓ ତା'ର ପିଲାଗୁଡ଼ିକୁ ଅନ୍ୟ ଗୋଟିଏ ଘରେ ରଖି ଦିଆଗଲା । ସେମାନେ ପରସ୍ପରକୁ ଦେଖି ପାରୁ ନଥିଲେ, ମାତ୍ର ଶୁଣି ପାରୁଥିଲେ । କାରଣ ମା' କୁକୁଡ଼ା ପାଖରେ ଗୋଟିଏ ମାଇକ୍ରୋଫୋନ୍ ରଖିଦେଇ, ସେଥିରୁ ଅନ୍ୟ କୋଠରୀକୁ ଏକ ପ୍ରତିଶବ୍ଦକାରୀ ଯନ୍ତ୍ର ଖଞ୍ଜି ଦିଆଗଲା । ମାଇକ୍ରୋଫୋନ୍ ଆଗରେ ମା' କୁକୁଡ଼ା ଏଣେ ତେଣେ ଦୌଡ଼ି, ତା'ର ପିଲାମାନଙ୍କୁ ଡାକିବାକୁ ଲାଗିଲା (ଅବଶ୍ୟ ସେ ବୁଝି ପାରୁ ନଥିଲା ଯେ, ତା'ର ଡାକ ରେଡିଓ ମାଧ୍ୟମରେ ଅନ୍ୟ କୋଠରୀକୁ ଶୁଣା ଯାଉଛି) । କୁକୁଡ଼ାଛୁଆଗୁଡ଼ିକ ମା'ର କଣ୍ଠସ୍ୱର ଶୁଣି ପ୍ରତିଶବ୍ଦକାରୀ ଯନ୍ତ୍ରଟି ଆଡ଼କୁ ଦୌଡ଼ିଲେ । ସେମାନେ ମା'କୁ ଦେଖିବାକୁ ପାଇଲେ ନାହିଁ । କିନ୍ତୁ ପ୍ରକୃତରେ ମା' ଡାକିଲେ ଯେପରି ତା ପାଖକୁ ଧାଇଁ ଯାଆନ୍ତି, ସେହିପରି ଦୌଡ଼ିବାକୁ ଲାଗିଲେ । ଏହାର ଅର୍ଥ ହେଲା ନିଜର ଦୃଷ୍ଟିଶକ୍ତି ଅପେକ୍ଷା ଶ୍ରବଣଶକ୍ତିକୁ ସେମାନେ ଅଧିକ ବିଶ୍ୱାସ କରନ୍ତି ।

ଅନ୍ୟ ଏକ ପରୀକ୍ଷା ଏହି ସତ୍ୟକୁ ଦୃଢ଼ୀଭୂତ କରିଥିଲା । ଏକ ସ୍ୱଳ୍ପ, ଶବ୍ଦ

ଅଜେବୀ ପରଦାର ଅପର ପଟେ ଢୁଢୁଢ଼ାଛୁଆଟିକୁ ରଖି ଦିଆଗଲା । ମା ଢୁଢୁଢ଼ା ପରିଷ୍କାର ଭାବେ ତାକୁ ଦେଖି ପାରୁଥାଏ ; କିନ୍ତୁ ତା'ର କଣ୍ଠସ୍ୱର ଶୁଣି ପାରୁନଥିବାରୁ ସେ ଧ୍ୟାନ ଦେଉ ନଥାଏ ।

ଚଢ଼େଇମାନେ କରୁଥିବା ଶବ୍ଦ ହେଉଛି ଏକ ପ୍ରକାର ନିର୍ଦ୍ଦିଷ୍ଟ ସଙ୍କେତ – ଏବେ ଏଥିରେ କାହାରି ସନ୍ଦେହ ନାହିଁ । ବର୍ତ୍ତମାନ ବଡ଼ କଥା ହେଲା, ଏହି ଶବ୍ଦ ସଙ୍କେତକୁ ଶିଖିବା ଓ ସଙ୍କେତର ଅର୍ଥ ବୁଝିବା ।

ପକ୍ଷୀମାନଙ୍କର ଭାଷା ସମ୍ବନ୍ଧରେ ଆମେ ଅଳ୍ପ କିଛି ଜାଣିଛେ । ଉଦାହରଣ ସ୍ୱରୂପ, ଆମେ ଜାଣିଛେ ଯେ ବିପଦ ପଡ଼ିଲେ, ପକ୍ଷୀମାନେ ପରସ୍ପରକୁ ସତର୍କ କରାଇ ଦିଅନ୍ତି । ସେମାନେ ସତର୍କବାଣୀ ଦିଅନ୍ତି । ଯେଉଁ ପକ୍ଷୀ ପ୍ରଥମେ ବିପଦ ଦେଖେ, ତତ୍କ୍ଷଣାତ୍ ସ୍ୱତନ୍ତ୍ର ସଙ୍କେତ ଦେଇ ଅନ୍ୟମାନଙ୍କୁ ସତର୍କ କରାଇ ଦିଏ । ଅନ୍ୟମାନେ ହଠାତ୍ ପତ୍ର ତଳେ କିମ୍ବା ଘାସବୁଦା ତଳେ ଛପି ଯାଆନ୍ତି ।

ଘାସବୁଦା ତଳେ ଛପି ଯିବା ଭଲ କଥା । ଏହା ନିରାପଦ ସ୍ଥାନ ଯଦି ଛଞ୍ଚାଣ କିମ୍ବା ଚିଲ ପକ୍ଷୀ ଉପରୁ ଆକ୍ରମଣ କରନ୍ତି । ମାତ୍ର ପକ୍ଷୀମାନଙ୍କ ବିପଦ କେବଳ ଉପରେ ନଥାଏ, ଭୂଇଁ ଉପରେ ମଧ୍ୟ ସେମାନଙ୍କ ଶତ୍ରୁଙ୍କ ସଂଖ୍ୟା କମ୍ ନୁହେଁ । ଉଦାହରଣ ସ୍ୱରୂପ, କୋକିଶିଆଳୀ ଆକ୍ରମଣରୁ ରକ୍ଷା ପାଇବା ପାଇଁ ଚଢ଼େଇ ଯଦି ଘାସ ତଳେ ଛପି ଯିବାକୁ ଚେଷ୍ଟା କରେ, ତେବେ ସିଧାସଳଖ ସେ ଶିକାରୀ ମୁହଁରେ ପଡ଼ିବ । ମାତ୍ର ଏହା କେବେହେଲେ ଘଟେ ନାହିଁ । କାରଣ କୋକିଶିଆଳୀ ଆକ୍ରମଣ କଲେ, ଭୂଇଁ ଉପରେ ବସିଥିବା ପକ୍ଷୀ ଗଛ ଉପରକୁ ଉଡ଼ି ପଳାନ୍ତି । ଏପରିକି ସେମାନେ ଘାସବୁଦା ତଳେ ଛପିବାକୁ ଚେଷ୍ଟା ମଧ୍ୟ କରନ୍ତି ନାହିଁ । କିନ୍ତୁ ଯଦି ଛଞ୍ଚାଣ ଆକ୍ରମଣ କରେ, ତେବେ ଘାସବୁଦା ତଳେ ଛପି ଯାଆନ୍ତି ।

ଜଣାଗଲା ଯେ, ପକ୍ଷୀମାନେ କେବଳ ସାଧାରଣ ସତର୍କ ସଙ୍କେତ ଦେଉ ନଥାନ୍ତି । ସେମାନଙ୍କର ସଙ୍କେତ ସଠିକ୍ – "ବିପଦ ଉପରୁ !" ନା "ବିପଦ ତଳେ !" ଉଦାହରଣ ସ୍ୱରୂପ, ଥ୍ରାସ୍ ପକ୍ଷୀ ଉପରେ ଆକ୍ରମଣ କଲେ ବିପଦର ଶବ୍ଦ "ସିସିସି" ଭଳି ଶୁଣାଯାଏ । ଭୂଇଁ ଉପରେ ବିପଦ ଘଟିଲେ "ଟିକ୍‌ସ ଟିକ୍‌ସ ଟିକ୍‌ସ" ଶବ୍ଦ ହୁଏ ।


ଷ୍ଟାରଲିଂ ପକ୍ଷୀ

ବିନା ବ୍ୟତିକ୍ରମରେ ଏହି ଜାତୀର ସବୁ ଚଢ଼େଇ ବିପଦ ସଙ୍କେତ ପାଇ ନିଶ୍ଚିତ ଭାବେ କାର୍ଯ୍ୟ କରିଥାଆନ୍ତି । ଏପରିକି ପକ୍ଷୀ ଶାବକ ମଧ୍ୟ ବିପଦ ସଙ୍କେତ ଶୁଣିଲେ, ହଠାତ୍ ଚୁପ୍ ହୋଇ ଯାଆନ୍ତି ଓ ମୁଣ୍ଡ ତଳକୁ କରି ଏକାଠି ଜାକିଜୁକି ହୋଇ ବସନ୍ତି । ଏକଥା ଭାବିବା ଠିକ୍ ନୁହେଁ ଯେ, ଏହି ସତର୍କ ସଙ୍କେତ ପକ୍ଷୀମାନେ ସଚେତନ ଭାବେ ଦେଇଥାଆନ୍ତି । ଥ୍ରାସ୍‌ମାନେ ଓ ଅନ୍ୟାନ୍ୟ ପକ୍ଷୀମାନେ ମଧ୍ୟ କାହାରିକୁ ସଚେତନ ଭାବେ ସଙ୍କେତ ଦିଅନ୍ତି ନାହିଁ । ବିପଦ ବେଳେ ସେମାନେ ନିଜର ଅନ୍ୟ ଭାଇମାନଙ୍କ କଥା ଚିନ୍ତା ମଧ୍ୟ କରନ୍ତି ନାହିଁ । ସେମାନେ ଏକୁଟିଆ


ବିଲେଇ

ଥିଲେ ବି ଏହିଭଳି ବିପଦ ସଙ୍କେତ ଦେଇ ଥାଆନ୍ତେ ଏବଂ ଦିଅନ୍ତି ମଧ୍ୟ । ତୁମେ କୌଣସି ଆଶ୍ଚର୍ଯ୍ୟ କଥା ଦେଖିଲେ କିମ୍ବା ଡରି ଗଲେ, ଯେପରି ଅଜାଣତରେ ଆପେଆପେ ଓଃ ! ଶବ୍ଦ ଉଚ୍ଚାରଣ କର, ପଶୁପକ୍ଷୀ ମଧ୍ୟ ଠିକ୍ ସେହିଭଳି କରନ୍ତି । ଅନ୍ୟ ସବୁ ସଙ୍କେତ ପକ୍ଷୀମାନଙ୍କ ଜୀବନରେ ବଡ଼ ଭୂମିକା ଗ୍ରହଣ କଲେ ମଧ୍ୟ ତାହା ସଚେତନ ସଙ୍କେତ ନୁହେଁ । ପକ୍ଷୀମାନଙ୍କର ଶବ୍ଦ, ମଣିଷର ସୁସ୍ପଷ୍ଟ ଭାଷା



"ସିଲ୍‌ବୋ" ପରି ନୁହେଁ । (ଏହି ଭାଷା ବିଷୟରେ ବହିର ଆରମ୍ଭରେ ଆମେ କହିଛୁ ।)

ପକ୍ଷୀମାନେ କେବଳ ଯେ ବିପଦ ସଙ୍କେତ ଦିଅନ୍ତି ତା ନୁହେଁ । ନିଜର ବସା



ଘରଚଟିଆମାନେ

ସ୍ଥାନାନ୍ତରିତ କରୁଥିବା ଚଢ଼େଇଙ୍କ ମଧ୍ୟରୁ ଅଣ୍ଡିରା ଚଢ଼େଇ ମାଈ ଚଢ଼େଇ ଆଗରୁ ଦକ୍ଷିଣ ଦିଗରୁ ଉଡ଼ି ଆସି ଥାଆନ୍ତି ଏବଂ ଭବିଷ୍ୟତ୍ ପରିବାର ଲାଗି ତିଆରି କରିବା କାର୍ଯ୍ୟରେ ଲାଗି ପଡ଼ନ୍ତି । ହେଇ ଗୋଟିଏ ଚଢ଼େଇ ଗଛ ଖୋଲରେ ବସା ବାନ୍ଧିବା ପାଇଁ ଉପଯୁକ୍ତ ସ୍ଥାନଟିଏ ପାଇଗଲା ଏବଂ ହଠାତ୍ ଗୀତ ବୋଲିବାକୁ ଲାଗିଲା । ଅବଶ୍ୟ ଆମେ ଭାବିବା ଯେ, ସେ ଆନନ୍ଦ ମନରେ ଗୀତ ଗାଉଛି : ତା'ର ନୂଆ ଘର ଅଛି, ସବୁଠୁ କଷ୍ଟ କାମ ସରି ଯାଇଛି, ଏବେ ସେ ବିଶ୍ରାମ ନେଇ, ଅବସର ସମୟରେ ଗୀତ ବୋଲୁଛି । ମାତ୍ର ମାଈ ଚଢ଼େଇଙ୍କ ପାଇଁ ଏହା ହେଉଛି ଏକ ନିର୍ଦ୍ଦିଷ୍ଟ ସଙ୍କେତ : ଘର ଥିବା ଜଣେ ବର ଅନାଇ ବସିଛି । ଏହି କଣ୍ଠ ସ୍ୱର ଶୁଣି ମାଈ ଚଢ଼େଇ ଉଡ଼ି ଆସନ୍ତି । ଯଦି କେବେ ଅଣ୍ଡିରା ଓ ମାଈ ଉଭୟ ପକ୍ଷୀଙ୍କୁ ଏକାଠି ଘର ତିଆରି କରିବାକୁ ପଡ଼େ, ତେବେ ସେମାନେ ନିର୍ଦ୍ଦିଷ୍ଟ ସଙ୍କେତ ସାହାଯ୍ୟରେ ପରସ୍ପରକୁ ଭେଟନ୍ତି ।

ଏବେ ଦେଖିବା ଆଉ ଗୋଟିଏ କଥା । ଗୋଟିଏ ଅଣ୍ଡିରା ଷ୍ଟାରଲିଂ ପକ୍ଷୀ ତା'ର ବସାଠାରୁ ଅଳ୍ପ ଦୂରରେ ବସି ବଡ଼ ପାଟିରେ ଗୀତ ବୋଲୁଛି । ତୁମେ ତାକୁ ଟିକିଏ ଲକ୍ଷ୍ୟ କର । ଜାଣିବ ଯେ, ସେ ବସିଛି ଏବଂ ଗାଉଛି । ନିଜର ଗୀତ ହେଉ ବା ଅନ୍ୟର ଗୀତ ହେଉ, ସେଥିରେ କିଛି ଯାଏ ଆସେ ନାହିଁ । କିନ୍ତୁ କାହିଁକି ଗୀତ ବୋଲୁଛି ? ସେ ତ ବସା ପାଇ ଗଲଣି, ମାଈପକ୍ଷୀଟି ତା'ର ଅଣ୍ଡା ଉଷୁମୋଉଛି । କିନ୍ତୁ ଯେତେହେଲେ ବି ଷ୍ଟାରଲିଂ ପକ୍ଷୀଟି ବିନା କାରଣରେ ଗୀତ ବୋଲୁ ନାହିଁ । ସେ ପାଟିକରି ସମସ୍ତଙ୍କୁ କହୁଛି, ଏଠି ଜାଗା ଖାଲି ନାହିଁ ! ଆଗନ୍ତୁକ ପକ୍ଷୀଙ୍କ ଲାଗି ସେଠାକୁ ପ୍ରବେଶ ନିଷେଧ !

ଏହା ସତ୍ତ୍ୱେ ଯଦି କୌଣସି ଆଗନ୍ତୁକ ସେଠାକୁ ଉଡ଼ି ଆସେ, ତେବେ ଏହି ଷ୍ଟାରଲିଂ ପକ୍ଷୀଟିର କଣ୍ଠସ୍ୱରରେ ପରିବର୍ତ୍ତନ ତୁମେମାନେ ଲକ୍ଷ୍ୟ କରି ପାରିବ । ତା'ର ଗୀତ ବୋଲ କଣ୍ଠ ବଦଳି ଯାଇ ଭୟଙ୍କର ହୋଇଉଠି ସେ ବେସରମ ଆଗନ୍ତୁକକୁ ସତର୍କ କରିଦିଏ । ସତର୍କ କରି ସାରିଲା ପରେ ଷ୍ଟାରଲିଂ ଚଢ଼େଇଟି ଅନାହୂତ ଅତିଥି ଉପରେ ଚଢ଼ାଉ କରି, ତାକୁ ସେ ସ୍ଥାନରୁ ଘଉଡ଼ାଇ ଦିଏ । ଏପରିକି ଯଦି ଆଗନ୍ତୁକ ପକ୍ଷୀଟି ତା'ଠାରୁ ବଳୁଆ ହୋଇ ଥାଏ, ତେବେ ମଧ୍ୟ ଏହା ଘଟେ । ହଠାତ୍ ଷ୍ଟାରଲିଂ ପକ୍ଷୀଟି ତୁମକୁ ଦେଖିଲେ ତା'ର କଣ୍ଠସ୍ୱର ବଦଳି ଯାଏ । ମାତ୍ର ଏହା ଅନ୍ୟ ଏକ ଗୀତ । ଯଦି ବିଲେଇଟିଏ ଆସିଥାଏ, ତେବେ ମଧ୍ୟ ଷ୍ଟାରଲିଂ ପକ୍ଷୀର କଣ୍ଠରେ ଭିନ୍ନ ରକମର ଶବ୍ଦ ଶୁଣାଯାଏ । ବିପଦ ପଡ଼ିଲେ ଷ୍ଟାରଲିଂ ପକ୍ଷୀ ବିପଦର ସଙ୍କେତ ଦିଏ କିମ୍ବା ଭୟରେ ଚିତ୍କାର କରିଉଠେ । ତତ୍‌କ୍ଷଣାତ୍ ନିକଟରେ ଥିବା ଦଳଟି ନିଜ ବାସସ୍ଥାନରୁ ଅନ୍ୟ ଦୂର ଜାଗାକୁ ଉଡ଼ି ପଳାନ୍ତି । ଯାହାହେଲେ ବି ଷ୍ଟାରଲିଂ କିମ୍ବା ଅନ୍ୟ କୌଣସି ପକ୍ଷୀ କାହାରିକୁ ସତର୍କ କରିବାକୁ ଚାହୁଁନଥିଲେ ବି ପ୍ରାଣ ଭୟରେ ଡରି ଚିତ୍କାର କରି ଉଠେ ।

ମାତ୍ର ଘଣ୍ଟାଏ – ଅଧ ଘଣ୍ଟାଏ ଷ୍ଟାରଲିଂ ପକ୍ଷୀକୁ ଲକ୍ଷ୍ୟ କଲେ ତୁମେମାନେ ଅନେକ ଶବ୍ଦ ଶୁଣି ପାରିବ । ସେଥି ମଧ୍ୟରେ ଥିବ ସତର୍କବାଣୀ – "ଏଇଟା ମୋ ଜାଗା" ଏବଂ ଧମକ – "ଏଠୁ ଚାଲିଯାଆ, ନଚେତ୍, ପିଟିବି !" ତାହାରି ମଧ୍ୟରେ ଥିବା ବିପଦ ସଙ୍କେତ, ସଠିକ୍ ସଙ୍କେତ : "ସନ୍ଦେହଜନକ ଦୁଇଗୋଡ଼ିଆ ଜ'ଣ ଗୋଟାଏ ଭୂଇଁ ଉପରେ ଚାଲୁଛି" (ଯଦି ସେ ତୋତେ ଦେଖିବ) କିମ୍ବା "ଚାରିଗୋଡ଼ିଆ ହିଂସ୍ର ଜନ୍ତୁଟାଏ ଗଛରେ ଚଢ଼ି ବସା ପାଖକୁ ଆସୁଛି" (ଯଦି ସେ ବିଲେଇକୁ ଦେଖିବ) । ହୋଇ ପାରେ ତିମେମାନେ "ଯିଏ ପାରିବ ଜୀବନ ରକ୍ଷାକର" ସଙ୍କେତ ଶୁଣିବାକୁ ପାଇବ (ଯଦି ଷ୍ଟାରଲିଂ ପକ୍ଷୀ ବିପଦରେ ପଡ଼ିଛି) । କେବଳ ଯେ ଷ୍ଟାରଲିଂ ପକ୍ଷୀକୁ ଲକ୍ଷ୍ୟ କଲେ, ତୁମେ ଏସବୁ ଜାଣି ପାରିବ ଓ ସଙ୍କେତ ଶୁଣି ପାରିବ, ତା

ନୁହେଁ, ଏପରିକି ସାଧାରଣ ଘରଚଟିଆ ତା ନିଜ ବିଷୟରେ ତୁମମାନଙ୍କୁ ଅନେକ କଥା କହିପାରେ ।

ଉଦାହରଣ ସ୍ୱରୂପ, ଅଳ୍ପ ଲୋକଙ୍କୁ ଜଣାଥିବ ଯେ, ନିଜର ଶତ୍ରୁକୁ ସତର୍କ କରି ଦେବାକୁ ଯାଇ ଘରଚଟିଆ ଚଢ଼େଇ ଗଳା ଫଟାଇ ଭୟଙ୍କର ଚିତ୍କାର କରେ । (ଏହି ଶବ୍ଦ କୁକୁର ଭୁକିବା ଶବ୍ଦ ପରି, ମାତ୍ର କ୍ଷୀଣ ସ୍ୱରରେ ।) କିମ୍ବା ଘରଚଟିଆ ଯଦି ରୁଟି ଖଣ୍ଡେ କେଉଁଠୁ ପାଇଯାଏ, ତେବେ ତତ୍‌କ୍ଷଣାତ୍ ଚିଁ ଚିଁ ଶବ୍ଦ କରି ଉଠେ, ସତେ ଯେପରି ଦଳର ସବୁ ଚଢ଼େଇଙ୍କୁ ସେ ଡାକିବାକୁ ଚାହୁଁଛି । ପକ୍ଷୀଦଳ ସତରେ ଉଡ଼ି ଆସନ୍ତି ଏବଂ ଅନେକ ସମୟରେ ଖାଦ୍ୟ ପାଇଛି ବୋଲି ଡାକ ଛାଡ଼ିଥିବା ଚଢ଼େଇଟି ଭୋକରେ ରହେ । ତା'ଠାରୁ ବଳୁଆ ଚଢ଼େଇଟି ରୁଟି ଟିକକ ନେଇଯାଏ ।

ଅନେକ ଦିନ ଧରି ମଣିଷ ବୁଝି ପାରୁ ନଥିଲା – ଖାଦ୍ୟ ଟିକିଏ ପାଇଲେ କାହିଁକି ଘରଚଟିଆ ଏପରି ରାବ ଛାଡ଼େ । ବିପୁଳ ପରିମାଣରେ ଖାଦ୍ୟର ସନ୍ଧାନ ମିଳିଥିଲେ ଅନ୍ୟ କଥା, ମାତ୍ର ରୁଟି ଟିକିଏ ପାଇଲେ ମଧ୍ୟ ଚଢ଼େଇଟି ଚିତ୍କାର କରେ !

ମଧୁ ସନ୍ଧାନୀ ପକ୍ଷୀ

କୁକୁଡ଼ା କ୍ଷେତ୍ରରେ ମଧ୍ୟ ତୁମେମାନେ ଠିକ୍ ସେହିକଥା ଲକ୍ଷ୍ୟ କରି ପାର । କୌଣସି ଖାଦ୍ୟ ପଦାର୍ଥ ପାଇଲେ, କୁକୁଡ଼ା "କଅ-କଅ" ରାବ ଦିଏ, ସତେ ଯେପରି ନିଜର ବନ୍ଧୁମାନଙ୍କୁ ଡାକୁଛି ଏବଂ ଏହି ଡାକ ଶୁଣି ଅନ୍ୟ କୁକୁଡ଼ା ମଧ୍ୟ ଦୌଡ଼ି ଆସନ୍ତି । ସନ୍ଧାନ ମିଳିଥିବା ଖାଦ୍ୟ ଖୁବ୍ କମ୍ – ଗୋଟିଏ କୁକୁଡ଼ାକୁ ତାହା ନଅଣ୍ଟ – କିନ୍ତୁ ତା ସତ୍ତ୍ୱେ କୁକୁଡ଼ା ବୋବାଏ କାହିଁକି ?

ଅନ୍ୟ କୌଣସି କଥା ଚିନ୍ତା ନକରି ଭାବିଲେ କୁକୁଡ଼ା ଓ ଘରଚଟିଆଙ୍କର ବ୍ୟବହାର ନିର୍ବୁଦ୍ଧିଆ କାର୍ଯ୍ୟ ପରି ମନେ ହୁଏ : ନିଜ ପାଇଁ ଖାଇବାକୁ ନାହିଁ, ଅନ୍ୟମାନଙ୍କୁ ରାବ ଦେଇ ଡାକୁଛି ।

ଚଢ଼େଇମାନେ ସତରେ ନିର୍ବୁଦ୍ଧିଆ କାର୍ଯ୍ୟ କରନ୍ତି । ମାତ୍ର ସେମାନେ ଏକ ପରମ୍ପରା ଭଳି ଆଦିମ ଯୁଗରୁ ଏପରି କରି ଆସୁଛନ୍ତି । ସମ୍ଭବତଃ ସେମାନେ ଏଇଥି ପାଇଁ ହିଁ ଏହି ପୃଥିବୀରେ ବଞ୍ଚିଛନ୍ତି ।

ଖାଦ୍ୟ ଅନ୍ୱେଷଣ ଚଢ଼େଇମାନଙ୍କ ଲାଗି ଏକ ବଡ଼ ସମସ୍ୟା । ସେମାନଙ୍କୁ ଖୁବ୍ ଭୋକ ଲାଗେ ଏବଂ ଶୀତ ଦିନେ, ଗ୍ରୀଷ୍ମଋତୁରେ ବରଫ ପଡ଼ିଥିବା ବେଳେ ସେମାନଙ୍କ ଖାଦ୍ୟ କମ୍ । ଛୋଟ ଛୋଟ ଚଢ଼େଇଙ୍କ ମଧ୍ୟରୁ ଶତକଡ଼ା ନବେଟି ଚଢ଼େଇ ଥଣ୍ଡାରୁ ଓ ଖାଦ୍ୟ ଅଭାବରୁ ମରି ଯାଆନ୍ତି ! ଖାଦ୍ୟର ସନ୍ଧାନ ପାଇ ସେମାନେ ଯଦି ପରସ୍ପର ସହିତ କଥାବାର୍ତ୍ତା କରୁ ନଥାଆନ୍ତେ, ତେବେ ହୁଏତ ଅଧିକ ଚଢ଼େଇ ମରି ଯାଇ ଥାଆନ୍ତେ । ଦିନସାରା ସେମାନେ ଖାଦ୍ୟ ଅନ୍ୱେଷଣରେ ଉଡ଼ି ବୁଲନ୍ତି । ଶୀତ ଦିନେ ବରଫ ପଡ଼ିଲା ପରେ, ତୁମେ ବୁଝି ପାରୁଥିବ, ପୋକ ଜୋକ, ଘାସପତ୍ର କିମ୍ବା ମଞ୍ଜିଟିଏ ବା କୋଳିଟିଏ କିଛି ନଥାଏ । ତା ସାଙ୍ଗକୁ ଶୀତଋତୁରେ ଦିନ ଖୁବ୍ ଛୋଟ । ମନେକର ଗୋଟିଏ ଚଢ଼େଇକୁ ସୌଭାଗ୍ୟ ବଶତଃ ଖାଦ୍ୟ ମିଳିଗଲା । ଯଦି ସେ ଏକୁଟିଆ ଏହି ଖାଦ୍ୟକୁ ଖାଇଦିଏ ତେବେ ଅନ୍ୟମାନେ ଉପବାସ ରହିବେ । ହୋଇ ପାରେ, ଅନ୍ୟ ପକ୍ଷୀ ସବୁ ଥଣ୍ଡା ସହି ନପାରି ପର ଦିନ ଭିତରେ ମରିଯିବେ । (ଭୋକିଲା ପକ୍ଷୀ ଅଳ୍ପ ଥଣ୍ଡାରେ ଖୁବ୍ ଶୀଘ୍ର ମରିଯାଏ, ମାତ୍ର



ଓଧ

ପେଟପୂରା ଖାଇଲେ ଅତ୍ୟଧିକ ଥଣ୍ଡା ସତ୍ତ୍ୱେ ମଧ୍ୟ ସେ ବଞ୍ଚିପାରେ !) ଏହି ଛଡ଼ା ପକ୍ଷୀଟି ଯଦି ଖାଦ୍ୟ ପାଇ ଏକୁଟିଆ ଖାଇଦିଏ, ସମୟ ଆସିବ ତାକୁ କେବେ କେହି ସାହାଯ୍ୟ କରିବେ ନାହିଁ, ଫଳରେ ସେ ଭୋକରେ ମରିଯିବ । ଚଢ଼େଇଙ୍କ ମଧ୍ୟରେ "ହାମ୍‌ବଡ଼ା" ହୋଇ କେହି ନାହାନ୍ତି । ତେଣୁ ଖାଦ୍ୟ ପାଇଲା ମାତ୍ରେ ସଙ୍ଗେ ସଙ୍ଗେ ଅନ୍ୟମାନଙ୍କୁ ଜଣାଇ ଦିଅନ୍ତି । ଖାଦ୍ୟର ପରିମାଣ କମ୍ ହୋଇଥିଲେ ବି, ଚଢ଼େଇମାନେ ଅନ୍ୟକୁ ଡାକନ୍ତି, କାରଣ ସେମାନେ ବୁଝି ପାରନ୍ତି ନାହିଁ ଯେ, ମିଳିଥିବା ଖାଦ୍ୟ ସମସ୍ତଙ୍କୁ ଅଣ୍ଟିବ କି ନାହିଁ ।

ଖାଦ୍ୟ ପାଇଁ ଆହ୍ୱାନ ଦେଲ ଭଳି କିମ୍ବା ସେହିଭଳି ଅନେକ ପକ୍ଷୀଙ୍କର ଶବ୍ଦ ଥାଏ । ଆମ ଅଞ୍ଚଳରେ ଅଣ୍ଡା ଦିନେ ବାସ କରୁଥିବା ପକ୍ଷୀଙ୍କ ବ୍ୟତୀତ ଅନ୍ୟ ପକ୍ଷୀ ମଧ୍ୟ ଠିକ୍ ଏଭଳି କରନ୍ତି ।


ବଣ କୁକୁଡ଼ା ଛୁଆମାନେ

ଏପରି କେତେକ ପକ୍ଷୀ ଅଛନ୍ତି, ଯେଉଁମାନଙ୍କର ଖାଦ୍ୟ ଲାଗି ଆହ୍ୱାନ ସ୍ୱତନ୍ତ୍ର । ଏହି ଚଢ଼େଇମାନେ ମହୁ ଖାଇବାକୁ ଖୁବ୍ ଭଲ ପାଆନ୍ତି । ବଣ ଭିତରେ ସେମାନେ ମହୁଫେଣାର ସନ୍ଧାନ ସହଜରେ ପାଇ ପାରନ୍ତି । ମାତ୍ର ମହୁମାଛିଙ୍କୁ ପକ୍ଷୀଙ୍କର ପ୍ରାଣରେ ଭୟ । ଏଥିପାଇଁ ପକ୍ଷୀ ଅନ୍ୟ ଏକ ସାଥୀର ଦରକାର ପଡ଼େ । ମଣିଷ, ଭାଲୁ କିମ୍ବା ଓଧ ଦେଖିଲେ ଚଢ଼େଇ ଏଭଳି ଭାବେ ବୋବାଏ ଓ ଏପରି ଭାବେ ତା ସହିତ ଯିବାକୁ ଡାକେ ଯେ, ତା କଥା ନିଶ୍ଚିତ ରୂପେ ବୁଝିହୁଏ । ଚଢ଼େଇଟି ମହୁଫେଣା ନିକଟକୁ ମଣିଷକୁ କିମ୍ବା କୌଣସି ପଶୁକୁ ବାଟ କଢ଼ାଇ ନିଏ । କାରଣ ସେ ଗ୍ଚହେଁ ଯେ, ସେମାନେ ମହୁଫେଣା ଭାଙ୍ଗି ମହୁକୁ ନେଇଯାଆନ୍ତୁ । ମାତ୍ର ସେ ସେଥିରୁ କ'ଣ ପାଏ ? ତାକୁ ତ ମହୁ ମିଳିବ ନାହିଁ । ନା, ଜଣା ଯାଉଛି, ସେ ମଧ୍ୟ କିଛି ମହୁ ପାଇବ । ମଣିଷ ବା ପଶୁ ଛାଡ଼ି ଯାଇଥିବା ମହୁ ଓ ସିଠା ସେ ଖାଇବାକୁ ପାଏ ।

ତା'ର ଏହିକାର୍ଯ୍ୟ ଯୋଗୁ ଚଢ଼େଇକୁ ମଧୁ ସନ୍ଧାନୀ ବୋଲି ନାମ ଦିଆଯାଇଛି ।

ଚଢ଼େଇଙ୍କର ଭାଷା ସମ୍ବନ୍ଧରେ ଅନେକ ସ୍ୱତନ୍ତ୍ର କଥା ଅଛି । ପିଲାମାନଙ୍କ ସହିତ ଏହା ବ୍ୟବହାର କରି ବାବା ମାଆମାନେ ଗପ କହି କଥାବାର୍ତ୍ତା ହୋଇ ପାରନ୍ତି । ବେଳେ ବେଳେ ପକ୍ଷୀର ସଙ୍କେତ ପ୍ରଦାନ କାର୍ଯ୍ୟ ସେ ଅଣ୍ଡାରୁ ଜାତ ନହେବା ପୂର୍ବରୁ ମଧ୍ୟ ଆରମ୍ଭ ହୋଇ ଯାଏ । ଉଦାହରଣ ସ୍ୱରୂପ ଅଣ୍ଡା ଭିତରେ ରହି କୁକୁଡ଼ାଛୁଆ ସଙ୍କେତ ଦେବା କାର୍ଯ୍ୟ ଆରମ୍ଭ କରିଦିଏ । ବୋଧହୁଏ ଏହି ସଙ୍କେତ ବଳରେ ସେମାନେ ମାକୁ କହିବାକୁ ଚ୍ଚହାନ୍ତି ଯେ, ଆମକୁ ସ୍ୱାଗତ କରିବାକୁ ପ୍ରସ୍ତୁତ ରହ । କଥାବାର୍ତ୍ତା ହେବାର ତାଙ୍କୁ କେହି ଶିଖାଏ ନାହିଁ, ଜନ୍ମ ହେବା ପୂର୍ବରୁ ସେମାନେ ସଙ୍କେତ ଦେବାକୁ ଶିଖି ଥାଆନ୍ତି ଓ ତାହା ବୁଝି ପାରନ୍ତି ।

ଅଣ୍ଡା ଭିତରୁ ବାହାରିବା ମାତ୍ରେ କୁକୁଡ଼ାଛୁଆଟି ତା'ର ମା ପଛରେ ଦୌଡ଼ିବାକୁ ଆରମ୍ଭ କରେ । ଆସ୍ତେ ଆସ୍ତେ ଚିଁ ଚିଁ ଶବ୍ଦ କରୁଥାଏ । ସତେ ଯେପରି ମାକୁ ସେ କହେ – ଆମର ସବୁ ଠିକ୍ ଅଛି ! ହଠାତ୍ ଗୋଟିଏ ଛୁଆ ଟିକିଏ ଜୋରରେ


ବଣ କୁକୁଡ଼ା

ଚିଲେଇଲା ଏବଂ କୁକୁଡ଼ାଟି ବିବ୍ରତ ହୋଇ ପଡ଼ିଲା – ତା'ର କ'ଣ ବୋଧହୁଏ ହୋଇ ଯାଇଛି । ବେଳେ ବେଳେ ପେଟ ତଳେ ଛପାଇ ରଖିବା ବେଳେ କିମ୍ବା ଚ୍ଚଲିବା ସମୟରେ କୁକୁଡ଼ା ତା'ର ଛୁଆକୁ ମାଡ଼ି ପକାଏ କିମ୍ବା ଚ୍ଚପି ଦିଏ ଏବଂ ପିଲାଟିର ଅଭିଯୋଗ ଡାକ ଶୁଣିଲେ ଭୟରେ ଏଣେ ତେଣେ ଚ୍ଚହେଁ ।

କେତେକ ମା ସ୍ୱତନ୍ତ୍ର ସଙ୍କେତ ଦେଇ ନିଜର ପିଲାମାନଙ୍କୁ ପାଣି ଭିତରକୁ ପଶିବା ପାଇଁ କିମ୍ବା ବସାରୁ ପଦାକୁ ଯିବା ଲାଗି ଉତ୍ସାହିତ କରନ୍ତି । ଘାସରେ ବାଟବଣା ହୋଇ ପଡ଼ିଥିବା ଡାଉକ ଛୁଆ କିମ୍ବା ବଣ କୁକୁଡ଼ା ଛୁଆ ପାଟି କରି ଡାକନ୍ତି, ସେମାନଙ୍କୁ ସେହି "ଜଙ୍ଗଲରୁ" ଉଦ୍ଧାର କରିବାକୁ ।

ଭୋକିଲା ଚଢ଼େଇ ଛୁଆମାନେ ବଡ଼ ପାଟିରେ ବୋବାଇ ନିଜର ମା'ଠାରୁ ଖାଦ୍ୟ ମାଗନ୍ତି, ମାତ୍ର ତା'ର ଏହି ଖାଦ୍ୟଭିକ୍ଷାର ଶବ୍ଦ ଭିନ୍ନ ।

ବସନ୍ତ ଋତୁରେ ଆମ ଆଡ଼କୁ ଚଢ଼େଇ ଉଡ଼ି ଆସନ୍ତି । ଛୋଟ ପକ୍ଷୀମାନଙ୍କ ଉଡ଼ିବା ଆଖିରେ ପଡ଼େ ନାହିଁ । ବଡ଼ ବଡ଼ ପକ୍ଷୀସବୁ ପ୍ରାୟ ରାତିରେ ଉଡ଼ୁଥିଲେ ମଧ୍ୟ ଖୁବ୍ ଜୋରରେ ଶବ୍ଦକରି ଉଡ଼ନ୍ତି । ଏହା ହେଉଛି ପକ୍ଷୀ ଦଳପତିର ସଙ୍କେତ, ଯାହାର ଅର୍ଥ ହେଲା : ବିଳମ୍ବ ନକରି ମୋର ପଛେ ପଛେ ଉଡ଼ି ଆସ ।

ପକ୍ଷୀଙ୍କର ଅନ୍ୟାନ୍ୟ ସଙ୍କେତ ସବୁ ଅଛି, ଯାହାକି ଲୋକମାନଙ୍କୁ ଜଣା ।



କୁମ୍ଭୀର

ମାତ୍ର ଏହା ହେଉଛି ପକ୍ଷୀମାନଙ୍କ କଥାବାର୍ତ୍ତାର ଅଳ୍ପ କିଛି ଅଂଶ । ପଶୁ ପକ୍ଷୀଙ୍କର ଭାଷାରେ ବିଭିନ୍ନ ଦେଶରେ ଶହେ ପର୍ଯ୍ୟନ୍ତ ଶବ୍ଦ ରହିଛି । (ଉଦାହରଣ ସ୍ୱରୂପ ଦକ୍ଷିଣ ଆମେରିକାରେ ବାସ କରୁଥିବା ଆମ ଦେଶର ସାରସ ସଦୃଶ "କାରିଆମା" ପକ୍ଷୀ ମଣିଷର କାନକୁ ଶୁଭିଲା ଭଳି ପ୍ରାୟ ଦୁଇ ଶହ ପର୍ଯ୍ୟନ୍ତ ଶବ୍ଦ ସୃଷ୍ଟି କରିଥାଏ) । ସେସବୁ ସଙ୍କେତର ମିଶ୍ରଣ ପ୍ରାୟ ହଜାର ହେବ ।

ମାତ୍ର ଏତିକିରେ କଥା ସରିନି । ପକ୍ଷୀମାନେ ସୃଷ୍ଟି କରୁଥିବା ସହସ୍ରାଧିକ ଶବ୍ଦ ଆମେ ଶୁଣିଥାଉ । ପକ୍ଷୀମାନେ ଆମଠାରୁ ଅଧିକ ସଂଖ୍ୟକ ଶବ୍ଦ ଶୁଣି ପାରନ୍ତି : ଅନେକ ପକ୍ଷୀ ଏଭଳି ଶବ୍ଦ ଉଚ୍ଚାରଣ କରନ୍ତି, ଯାହାକି ମଣିଷର କାନକୁ ଶୁଣା ଯାଏ ନାହିଁ ।

ପକ୍ଷୀମାନଙ୍କର କଥାବାର୍ତ୍ତା ଉପରେ ଗବେଷଣା କରି ବୈଜ୍ଞାନିକମାନେ ଅନେକ ପ୍ରଶ୍ନର ସମ୍ମୁଖୀନ ହୋଇ ଥିଲେ । ସେଥି ମଧ୍ୟରୁ ଗୋଟିକୁ ଉଦାହରଣ ସ୍ୱରୂପ ଦେଖିବା ।

ଶିକାରୀମାନେ ମାଗ୍‌ପାଇ ଚଢ଼େଇକୁ ଭଲ ପାଆନ୍ତି ନାହିଁ । ସେମାନଙ୍କ ମତରେ ଏହି ଚଢ଼େଇଟି ନିଜର ଉଚ୍ଚ କର୍କଶ ରାବ ଦ୍ୱାରା ଶିକାରକୁ ବିଗିଡ଼ାଇ ଦିଏ, କାରଣ ମାଗ୍‌ପାଇ ଚଢ଼େଇ ଶିକାରୀର ପଛେ ପଛେ ଉଡ଼ି ବୁଲି ରାବ କରେ ।

ମଣିଷ ଏକଥା ମଧ୍ୟ ଲକ୍ଷ୍ୟ କରିଛି ଯେ, ଶିକାର ଉଦ୍ଦେଶ୍ୟରେ ବାହାରିଥିବା ହିଂସ୍ର ଜନ୍ତୁ ପଛେ ପଛେ ମଧ୍ୟ ମାଗ୍‌ପାଇ ଚଢ଼େଇ ସେହିପରି ରାବ ଛାଡ଼ିଥାଏ । ମାଗ୍‌ପାଇ କରୁଥିବା ଶବ୍ଦ ଓ ଚିତ୍କାର ଫଳରେ ସେ ପଶୁପକ୍ଷୀଙ୍କୁ ଭୟଭୀତ କରେ ବୋଲି ଯେଉଁ ଧାରଣା ରହିଛି, ତାହାକୁ ବିଶ୍ୱାସ କରିବା କଷ୍ଟ । ତା ମାନେ, ଏହି ଚଢ଼େଇଟି ବିପଦର ସଙ୍କେତ ଦିଏ ଏବଂ ଏହି ସଙ୍କେତକୁ କେବଳ ମାଗ୍‌ପାଇ ନୁହେଁ ଅନ୍ୟମାନେ ମଧ୍ୟ ଗ୍ରହଣ କରନ୍ତି । ଅନ୍ୟାନ୍ୟ ପକ୍ଷୀ ଓ ପଶୁମାନେ ମଧ୍ୟ ମାଗ୍‌ପାଇର ଭାଷା ବୁଝି ପାରନ୍ତି ।

ପ୍ରକୃତି ବକ୍ଷରେ ଏହି ଭଳି ଅନେକ ଦୃଷ୍ଟାନ୍ତ ରହିଛି ।

ଏଭଳି ଗୋଟିଏ ଚଢ଼େଇ ଅଛି ଯେ କି କୁମ୍ଭୀର ସହିତ ନିବିଡ଼ ବନ୍ଧୁତା ରଖେ । ଆକଣ୍ଠ ଭୋଜନ ପରେ, ଥରେ କୁମ୍ଭୀର ନଦୀ କୂଳର ବାଲି ଉପରେ ଆନନ୍ଦରେ ନିଜର ମୁହଁ ଖୋଲି ଡୋଳାଇ ପଡ଼ିଥିଲା । ପକ୍ଷୀଟି ଠିକ୍ ସେହି ସମୟରେ ଖୁବ୍ ଦମ୍ଭର ସହିତ ଭୟ ନକରି କୁମ୍ଭୀରର ଖୋଲା ମୁହଁ ଭିତରକୁ ପଶିଯାଇ କୁମ୍ଭୀରର ଦାନ୍ତ ମଝିରେ ଲାଗିଥିବା ଖାଦ୍ୟକୁ ଥଣ୍ଟରେ ଖୁମ୍ପିବାକୁ ଲାଗିଲା । ଶୋଇଥିବା କୁମ୍ଭୀର ଆଡ଼କୁ ସତର୍କତାର ସହ ଆସୁଥିବା ଜଣେ ଶିକାରୀକୁ ହଠାତ୍ ଚଢ଼େଇଟି ଦେଖି ପାରିଲା । ସେହି ସମୟରେ ଚଢ଼େଇ କଣ୍ଠରୁ ଶୁଣାଗଲା ଏକ କ୍ଷୀଣ କର୍କଶ ଶବ୍ଦ । ତଡ଼ିତ୍



ଲିପ୍ତପଦ ସାମୁଦ୍ରିକ ପକ୍ଷୀ

ବେଗରେ କୁମ୍ଭୀରଟି ଆଖି ଖୋଲିଲା ଏବଂ ମାତ୍ର ଗୋଟିଏ ସେକେଣ୍ଡ ପରେ ସେ ପାଣି ଭିତରକୁ ଲମ୍ଫ ମାରିଦେଲା । ଚଢ଼େଇ ତାକୁ ବିପଦର ସଙ୍କେତ ଦେଲା ଓ କୁମ୍ଭୀର ତାହା ଭଲ ଭାବେ ବୁଝି ପାରିଲା ।

ଏବେ ଆଉ ଗୋଟିଏ ଉଦାହରଣ ଦେବା । ଲିପ୍ତପଦ ସାମୁଦ୍ରିକ ପକ୍ଷୀ ପାଖରେ ଥିଲେ ସିଲ୍ ମାଛ ଭୟ ନକରି ଶାନ୍ତିରେ ଶୋଇ ଥାଏ । ହଠାତ୍ ଏହି

ପକ୍ଷୀ ବିପଦ ଲକ୍ଷ୍ୟ କରି ଖୁବ୍ ଜୋରରେ ଚିତ୍କାର କଲା । ଏକଥା ଜାଣି ସିଲ୍ ମାଛ ପାଣି ଭିତରକୁ ପଶିଗଲ । ଯଦିଓ ଏହି ଭିନ୍ନପଦ ପକ୍ଷୀ ଭାବି ନଥିଲ ଯେ, ସେ ସିଲ୍‌କୁ ସତର୍କ କରାଇ ଦେଉଛି ।

ଏହିପରି ଅନେକ ଉଦାହରଣ ଦିଆଯାଇ ପାରେ, ଯେତେବେଳେ ଏକ ଜାତୀୟ ପଶୁ ବା ପକ୍ଷୀଙ୍କର ବିପଦ ସଙ୍କେତ ପ୍ରତି ଅନ୍ୟ ଜାତୀୟ ପଶୁ ପକ୍ଷୀମାନେ ମଧ୍ୟ କର୍ଣ୍ଣପାତ କରନ୍ତି ଏବଂ ତାହାକୁ ଶୁଣି ସତର୍କ ହୋଇଯାଆନ୍ତି ।


ପେଚା

ଅଳ୍ପଦିନ ପୂର୍ବେ ଜଣା ପଡ଼ିଥିଲ ଯେ, କେତେକ କ୍ଷେତ୍ରରେ ବିଭିନ୍ନ ପକ୍ଷୀ ପରସ୍ପରକୁ କେବଳ ଯେ ବୁଝି ପାରନ୍ତି ତା ନୁହେଁ, ସେମାନେ ଏକା ଭାଷାରେ କଥା ହୁଅନ୍ତି । ପକ୍ଷୀଙ୍କର ସ୍ୱରଲିପି ଦର୍ଶାଇ ଦେଲ ଯେ, ପେଚାକୁ ଦେଖିଲେ ବିଭିନ୍ନ ଜାତୀୟ ଛୋଟ ଚଢ଼େଇ ଏକା ଭଳି ଶବ୍ଦ କରି ଉଠନ୍ତି ।

ବେଳେ ବେଳେ ଏହାର ଓଲଟା ହୁଏ, ଯେତେବେଳେ ଗୋଟିଏ ଜାତିର ପକ୍ଷୀ ପରସ୍ପରକୁ ବୁଝି ପାରନ୍ତି ନାହିଁ । ବିଭିନ୍ନ ଦେଶରେ କିମ୍ବା ବିଭିନ୍ନ ଇଲାକାରେ ଥିବା ପାତି କୁଆ, କୁଆ, ଚ୍ୟାଫିନସ୍, ଗାଙ୍ଗଚିଲ, ଷ୍ଟାରଲିଂ ପକ୍ଷୀ ଓ ଅନ୍ୟାନ୍ୟ ଚଢ଼େଇଙ୍କୁ ନେଇ ଅନେକ ପରୀକ୍ଷା କରାଯାଇଛି । ଏଥିରୁ ଅନେକ ଅଦ୍ଭୁତ କଥା ଜଣା ପଡ଼ିଛି : ଫ୍ରାନସ୍‌ରେ ରହୁଥିବା ପାତି କୁଆ, ବିଲତରେ ରହୁଥିବା ସେହି ଜାତିର ପାତି କୁଆ କଥା ବୁଝି ପାରେ ନାହିଁ । ସେହିପରି ମସୋ ଉପକଣ୍ଠର ଜଙ୍ଗଲରେ ରହୁଥିବା ଚ୍ୟାଫିନସ୍ ଚଢ଼େଇ ଉରାଲ ଅଞ୍ଚଳରେ ରହୁଥିବା ଚ୍ୟାଫିନସ୍‌ଙ୍କଠାରୁ ସଂପୂର୍ଣ୍ଣ ଭିନ୍ନ ପ୍ରକାରରେ କଥାବାର୍ତ୍ତା କରନ୍ତି । ଏକ ସମୁଦ୍ରର ଗୋଟିଏ କୂଳରେ ବାସ କରୁଥିବା ଗାଙ୍ଗଚିଲ ସେହି ସମୁଦ୍ରର ଅନ୍ୟ ଗୋଟିଏ କୂଳରେ ବାସ କରୁଥିବା ଗାଙ୍ଗଚିଲକୁ ବୁଝି ପାରନ୍ତି ନାହିଁ । ଶୀତ ବିତାଇବାକୁ ବିଭିନ୍ନ ଦେଶରୁ ଆସିଥିବା ଦଳଦଳ ଷ୍ଟାରଲିଂ ପକ୍ଷୀ ନିଜ ନିଜର "ସଂଘ" ଗଠନ କରନ୍ତି, କାରଣ ଗୋଟିଏ ଦେଶରୁ ଆସିଥିବା ଷ୍ଟାରଲିଂ ପକ୍ଷୀ ଅନ୍ୟଦେଶରୁ ଆସିଥିବା ଷ୍ଟାରଲିଂଙ୍କୁ ବୁଝନ୍ତି ନାହିଁ । ଏପରି କାହିଁକି ହେଉଛି, ଏପର୍ଯ୍ୟନ୍ତ କେହି ଜାଣି ନାହାନ୍ତି ।

ଆଉ ମଧ୍ୟ ଗୋଟିଏ କୌତୂହଳପୂର୍ଣ୍ଣ କଥା ଅଛି : ବିଭିନ୍ନ ପ୍ରକାର ପକ୍ଷୀଙ୍କର ଗୀତ ଏକାଭଳି ମଧ୍ୟ ହୋଇପାରେ, ମାତ୍ର ପାଖାପାଖି ରହୁଥିବା ଏକ ଜାତୀୟ ପକ୍ଷୀଙ୍କର କଣ୍ଠରେ ବେଳେବେଳେ ସାମଞ୍ଜସ୍ୟ ଦେଖିବାକୁ ମିଳେ ନାହିଁ । ଉଦାହରଣ ସ୍ୱରୂପ ଗାୟକ ଥ୍ରାସ୍ ପକ୍ଷୀ ଓ କଳା ଥ୍ରାସ୍ ଏବଂ ଉଡ୍ ଓ୍ୱାରବ୍ଲର୍ ଓ ମାର୍ଶ ଓ୍ୱାରବ୍ଲର୍ ପକ୍ଷୀର ଗୀତ ମଧ୍ୟରେ ପାର୍ଥକ୍ୟ ଦେଖିବାକୁ ମିଳେ । ଏହି ପକ୍ଷୀଗୁଡ଼ିକ ଏକା ପରି ଦିଶୁଥିଲେ ମଧ୍ୟ ସେମାନଙ୍କର କଣ୍ଠ ସ୍ୱରରେ ଓ୍ୱାରବ୍ଲର୍ ପକ୍ଷୀମାନଙ୍କ କଣ୍ଠରୁ ଶୁଣା ଯାଉଥିବା କମ୍ପିତ ଶବ୍ଦ ଛଡ଼ା ଟିକିଏ ହେଲେ ମେଳ ନଥାଏ । ପକ୍ଷୀମାନଙ୍କର କଣ୍ଠ ସ୍ୱରରେ ପାର୍ଥକ୍ୟ ରହିବା ନିହାତି ଦରକାର । କାରଣ ଏହା ଦ୍ୱାରା ସେମାନେ ଜାଣି ପାରନ୍ତି କିଏ ତାଙ୍କର ନିଜର ଓ ନିଜର ଭଳି ଦିଶୁଥିଲେ ମଧ୍ୟ କିଏ ପର । ଏହା ଫଳରେ ସେମାନେ କେବେହେଲେ ପରସ୍ପରକୁ ଚିହ୍ନିବାରେ ଭୁଲ କରନ୍ତି ନାହିଁ ।

# ମାଙ୍କଡ଼ କିପରି କଥା ହୁଅନ୍ତି

ମାଙ୍କଡ଼ ଅଜଣା ଗୋଲ ଜିନିଷଟି ଉପରକୁ ବିସ୍ମିତ ଦୃଷ୍ଟି ପକାଇ, ହୁସିଆରରେ ଧୀରେ ଧୀରେ ତାକୁ ହାତକୁ ଉଠାଇଲା, ତଳ ଉପର କରି ଦେଖିଲା, ଶୁଙ୍ଘିଲା ଏବଂ ଭୂଇଁ ଉପରକୁ ଫୋପାଡ଼ି ବଲ୍ ଭଳି ଖେଳିବାକୁ ଲାଗିଲା । କିନ୍ତୁ ହଠାତ୍ ଲାଲ ରଙ୍ଗର ଜିନିଷଟି ଫାଟି ମେଞ୍ଚାଟିଏ ହୋଇଗଲା । ଲେସି ହୋଇ ଯାଇଥିବା ନିଜର ହାତକୁ ମାଙ୍କଡ଼ଟି ଆଶ୍ଚର୍ଯ୍ୟ ଦୃଷ୍ଟିରେ ଅନାଇଲା ଏବଂ ଘୃଣାରେ ହାତ ପୋଛି ଦେଲା । ପରେ ନିରୀକ୍ଷଣ କରି ଦେଖିବାକୁ ପାଇଲା ଯେ, ପିଞ୍ଜରା ଭିତରେ ଠିକ୍ ସେହିପରି ଏକ ଅଜଣା ଜିନିଷ ପଡ଼ିଛି । ସେହି ଜିନିଷଟି ସହିତ ପୁଣି ସେ ଖେଳିବାକୁ ଲାଗିଲା ।

ପିଞ୍ଜରା ପାଖରେ ଠିଆ ହୋଇ ମାଙ୍କଡ଼ର ଏହି କାର୍ଯ୍ୟକୁ ଲକ୍ଷ୍ୟ କରୁଥିବା ଲୋକମାନେ ଆଶ୍ଚର୍ଯ୍ୟରେ ପରସ୍ପରକୁ ଅନାଇ ପ୍ରଶ୍ନ ପଚାରିଲେ : କ'ଣ କରିବା ? ମାଙ୍କଡ଼ଟି ଯଦି ବିଲାତି ବାଇଗଣ ଜୀବନରେ କେବେ ଦେଖି ନଥିବ କିମ୍ବା ଖାଇ ନଥିବ, ତେବେ କ'ଣ କଲେ ସେ ବିଲାତି ବାଇଗଣଟି ଖାଇବାକୁ ବାଧ୍ୟ ହେବ ? ମାଙ୍କଡ଼ ପାଇଁ ବିଲାତି ବାଇଗଣ ଅତ୍ୟନ୍ତ ଦରକାର, କାରଣ ସେଥିରେ ଥିବା ଭିଟାମିନ୍ ନପାଇଲେ ମାଙ୍କଡ଼ ରୋଗରେ ପଡ଼ିଯାଇ ପାରେ । ଏହା ସତ୍ତ୍ୱେ ମଧ୍ୟ ତା'ର ବିଲାତି ବାଇଗଣ ଖାଇବାକୁ ଇଚ୍ଛା ନାହିଁ । ହୋଇ ପାରେ, ସେ ଏହାକୁ ଖାଆନ୍ତା, କିନ୍ତୁ ସେ ଜାଣି ନାହିଁ ଯେ, ଏହି ଗୋଲ ଲାଲ ଫଳଟି ଖାଇବା ଯୋଗ୍ୟ...

ଏହି କଥା ମନରେ ବିଚାରି ଲୋକମାନେ ପିଞ୍ଜରା ଭିତରକୁ ଆଉ ଗୋଟିଏ ମାଙ୍କଡ଼କୁ ଛାଡ଼ି ଦେଲେ । ଏହି ମାଙ୍କଡ଼ଟି ବିଲାତି ବାଇଗଣକୁ ଦେଖିଲା ମାତ୍ରେ, ତାକୁ ଖାଇବାକୁ ଲାଗିଲା ଓ ବଡ଼ ପାଟିରେ ଚିତ୍କାରି ହୋଇ ଆନନ୍ଦର ଶବ୍ଦ ସୃଷ୍ଟି କଲା । ପ୍ରଥମ ମାଙ୍କଡ଼ଟି ଆଶ୍ଚର୍ଯ୍ୟର ସହିତ ନିଜର ସାଥୀ ଆଡ଼କୁ ଚାହିଁଲା ଏବଂ ଯେତେବେଳେ ଦ୍ୱିତୀୟ ମାଙ୍କଡ଼ଟି ଆଉ ଗୋଟିଏ ବିଲାତି ବାଇଗଣ ପାଇ, ତାହାକୁ ଆନନ୍ଦ ମନରେ ଖାଇ ଚିତ୍କାରି ହୋଇ ଶବ୍ଦ କରିବାକୁ ଲାଗିଲା, ପ୍ରଥମ ମାଙ୍କଡ଼ଟି ଫାଟି ଯାଇଥିବା ପ୍ରଥମ ବିଲାତି ବାଇଗଣଟି ପାଖକୁ ଯାଇ, ସତର୍କତାର ସହ ହାତକୁ ଉଠାଇ ଶେଷରେ ମୁହଁରେ ଛୁଇଁଲା । ବିଲାତି ବାଇଗଣ ପ୍ରିୟ ମାଙ୍କଡ଼ଟି ଯେତେ ଜୋରରେ ଚିତ୍କାରି ହେଉଥିଲା, ସେତେ ସାହସର ସହିତ ପ୍ରଥମ ମାଙ୍କଡ଼ଟି ବିଲାତି ବାଇଗଣଟିକୁ ଖାଇଲା । ପରେ ଏପରି ସମୟ ଆସିଲା, ଯେତେବେଳେ ଏହି ମାଙ୍କଡ଼ଟି ଏହି ଗୋଲ ଲାଲ ଫଳଟିକୁ ନେଇ ଆନନ୍ଦର ସହିତ ଖାଇଲା ।

ଲୋକମାନେ ପିଞ୍ଜରା ପାଖରୁ ଚାଲିଗଲେ । ସେମାନେ ଏବେ ଜାଣିଲେ ଯେ, ଏଣିକି ନୂଆ ମାଙ୍କଡ଼ଟି ବିଲାତି ବାଇଗଣ ଖାଇବ । ନିଜର ଆଃ ଆଃ ଶବ୍ଦ ଦ୍ୱାରା ମାଙ୍କଡ଼ଟି ଲୋକଙ୍କୁ ଏହା ଜଣାଇ ଦେଇଥିଲା ।

ବୈଜ୍ଞାନିକମାନେ ମାଙ୍କଡ଼ର ଏହି ଆଃ ଆଃ ଶବ୍ଦର ଅର୍ଥ ହଠାତ୍ ବୁଝି ପାରିଲେ





ନାହିଁ, ଏହି ଶବ୍ଦର କିଛି ଅର୍ଥ ଅଛି ନା ଏହା କୌଣସି ଆକସ୍ମିକ ଶବ୍ଦ ? ହେଲେ ପ୍ରକୃତିରେ ଆକସ୍ମିକ ଭାବେ କିଛି ଘଟେ ନାହିଁ । କିନ୍ତୁ ଏହାର ପରୀକ୍ଷା କିପରି କରାଯିବ ?



ଗରମ କ୍ଷୀରୀ ଖାଇବାକୁ ଅତି ଭଲ ପାଉଥିବା ଗୋଟିଏ ମାଙ୍କଡ଼କୁ ପ୍ରତିଦିନ କ୍ଷୀରୀ ଦିଆଗଲା । ସକାଳେ, ଦିନବେଳେ ଓ ସଂଧ୍ୟାରେ ତିନି ଥର ତାକୁ କେବଳ କ୍ଷୀରୀ ଦିଆଗଲା । ପ୍ରଥମେ ମାଙ୍କଡ଼ଟି ମନ ଆନନ୍ଦରେ କ୍ଷୀରୀ ଖାଇ ଆଃ ଆଃ ଶବ୍ଦ କଲା । ପରେ ଏହି ଆଃ ଆଃ ଶବ୍ଦ କ୍ରମଶଃ କମି ଯିବାକୁ ଲାଗିଲା ଓ ଶେଷରେ ବନ୍ଦ ହୋଇଗଲା । କ୍ଷୀରୀ ଦେଖିବାକୁ ମାଙ୍କଡ଼ ପସନ୍ଦ କଲା ନାହିଁ । ଏପରିକି ଦେଖିଲେ, ବୁଲି ପଡ଼ି କିମ୍ବା ହାତ ଆଗକୁ କରି ଜଣାଇଲା ଯେ, ତା'ର କ୍ଷୀରୀ ଦରକାର ନାହିଁ । ସତେ ଯେପରି ମନମାନିଯାଇଥିବା ଖାଦ୍ୟ ସମ୍ମୁଖରୁ ନିଜକୁ ରକ୍ଷା କରିବାକୁ ସେ ଚାହୁଁଛି । ତାକୁ କ୍ଷୀରୀ ଖାଇବାକୁ ବେଶି ବାଧ୍ୟ କଲେ, ସେ କେବଳ କଳରେ ରଖି, ଗିଳିଲା ନାହିଁ । ମାଙ୍କଡ଼ର ଅବସ୍ଥା ସହଜରେ ବୁଝିହୁଏ । ସବୁଦିନ ଗୋଟିଏ ପ୍ରକାର ଖାଦ୍ୟ ଖାଇ ଖାଇ ସେ ଥକି ଗଲାଣି । ଗୋଟିଏ ପ୍ରକାର ଖାଦ୍ୟ ଖାଇଲେ ନିଜର ସବୁଠୁ ପ୍ରିୟ ଖାଦ୍ୟ ମଧ୍ୟ ପିତା ଲାଗେ ! ମାତ୍ର ଗୋଟିଏ କଥା ବୁଝି ହୁଏ ନାହିଁ : କ୍ଷୀରୀ ଖାଇ ଖାଇ ଥକି ଯିବାର ଅବ୍ୟବହିତ ପୂର୍ବରୁ ସେ କାହିଁକି ଆଃ ଆଃ ଶବ୍ଦ ଉଚ୍ଚାରଣ କରିବା ବନ୍ଦ କରିଦେଲା ? ଖାଦ୍ୟ ଆଉ ଏହି ଶବ୍ଦ ଉଚ୍ଚାରଣ ମଧ୍ୟରେ କ'ଣ କିଛି ସଂପର୍କ ଅଛି ? ଏ କଥା ପରୀକ୍ଷା କରିବାକୁ ଯାଇ ଅନ୍ୟ ଗୋଟିଏ ପିଞ୍ଜରାରେ ଆଉ ଗୋଟିଏ ମାଙ୍କଡ଼କୁ ଛାଡ଼ି ଦିଆଗଲା । ସେହି ମାଙ୍କଡ଼ଟି ମଧ୍ୟ ଗରମ କ୍ଷୀରୀ ଖାଇବାକୁ ଖୁବ୍ ଭଲ ପାଉଥିଲା, ମାତ୍ର ତାକୁ ଏହା କ୍ୱଚିତ୍ ଦିଆ ଯାଉଥିଲା । ତେଣୁ ଖାଇଲା ବେଳେ ସେ ଆଃ ଆଃ ଶବ୍ଦ ଆରମ୍ଭ କଲା । ହଠାତ୍ ପ୍ରଥମ ମାଙ୍କଡ଼ଟିର ମନୋଭାବ ବଦଳି ଗଲା ଏବଂ ଟିକିଏ ଆଗରୁ ସେ କ୍ଷୀରୀ ଦେଖି ବିରକ୍ତ ହୋଇଥିଲେ ମଧ୍ୟ, ପଡ଼ୋଶୀର ଆଃ ଆଃ ଶବ୍ଦ ଶୁଣି ପୁଣି କ୍ଷୀରୀ ଖାଇବାକୁ ଆରମ୍ଭ କଲା ।

ଏବେ ଦୁଇଟି ପ୍ରଶ୍ନର ଉତ୍ତର ଦେବାକୁ ପଡ଼ିବ : ଏହି ଆଃ ଆଃ ଶବ୍ଦର ଅର୍ଥ କ'ଣ ଏବଂ ତାହା ଅନ୍ୟ ମାଙ୍କଡ଼ଙ୍କ ଉପରେ କାହିଁକି ଏପରି ପ୍ରଭାବ ପକାଉଛି ?

ଜଣା ପଡ଼ିଲା, ଖାଇବା ସମୟରେ ମାଙ୍କଡ଼ମାନେ ସର୍ବଦା ଆଃ ଆଃ ଶବ୍ଦ କରନ୍ତି ନାହିଁ । ସେମାନେ କେବଳ ସୁସ୍ୱାଦୁ ଖାଦ୍ୟ ପାଇଲେ ଏପରି ଶବ୍ଦ କରି ଥାଆନ୍ତି । ଅନେକ ଥର ଲକ୍ଷ୍ୟ କରି ଦେଖାଯାଇଛି ଯେ, ପିଞ୍ଜରା ଭିତରେ ଆକସ୍ମିକ ଭାବେ ମିଳିଥିବା ଜିନିଷକୁ ପାଇଲେ ମାଙ୍କଡ଼ଟି ତାହାକୁ ଶୁଙ୍ଘେ, ଚାଖିବାକୁ ଚେଷ୍ଟା କରେ ଏବଂ ଚୁପ୍‌ଚାପ୍ ଥୁ ଥୁ କରି ଦୂରକୁ ଫିଙ୍ଗି ଦିଏ – ଜିନିଷଟା ମୋଟେ ସୁଆଦିଆ ନୁହେଁ ! କିନ୍ତୁ ଯଦି ଗୋଟିଏ ସେଓ କିମ୍ବା ଚକୋଲେଟ୍ ତା'ର ହାତରେ ପଡ଼ିଯାଏ, ତେବେ ତୁମେମାନେ ଆଃ ଆଃ ଶବ୍ଦ ଶୁଣିବାକୁ ପାଇବ । ସତେ ଯେପରି ମାଙ୍କଡ଼ଟି କହୁଛି, "ଏହା ଭଲ କଥା, ଖୁବ୍ ଭଲ ଖାଦ୍ୟ !" ଏଥିରୁ ଜଣାଗଲା

ଯେ, ବୈଜ୍ଞାନିକମାନେ ମାଙ୍କଡ଼ର ଯେଉଁ ଶବ୍ଦକୁ "ଖାଇବା ଶବ୍ଦ" ଆଖ୍ୟା ଦେଉଛନ୍ତି, ତାହା କେବଳ ଖାଦ୍ୟ ଭଲ ଲାଗିଲେ ମାଙ୍କଡ଼ ଉଚ୍ଚାରଣ କରିଥାଏ । ଏହା କ'ଣ କେବଳ ଆନନ୍ଦ ମନର ପରିପ୍ରକାଶ ? ମାଙ୍କଡ଼ ଖାଏ ଓ ଖାଇଲାବେଳେ କ'ଣ ଗୁଡ଼ାଏ କହେ । କାହାରିକୁ ଲକ୍ଷ୍ୟ ନରଖି ମାଙ୍କଡ଼ ନିଜକୁ ନିଜେ ଏହି କଥା କହିଥାଏ । ଅନ୍ୟ ମାଙ୍କଡ଼ମାନେ ଏହି ଶବ୍ଦ ଶୁଣନ୍ତି । ସେମାନଙ୍କ ଲାଗି ଏହା ହେଉଛି ସଙ୍କେତ, ଯାହାର ଅର୍ଥ ହେଲା : "ସାବଧାନ ! ଏଠି ଖାଦ୍ୟ ଅଛି । ଚଞ୍ଚଳ ଯିବାକୁ ପଡ଼ିବ !" ଏବଂ ସତରେ ସେମାନେ ଚଞ୍ଚଳ ସେଠାକୁ ଚାଲି ଯାଆନ୍ତି । ବେଳେ ବେଳେ ଅଯଥାରେ ମଧ୍ୟ ଯାଇଥାନ୍ତି । ହୋଇ ପାରେ, ମାଙ୍କଡ଼ଟିଏ ଲଜେନ୍ସଟିଏ ପାଇ ଆନନ୍ଦ ମନରେ ଆଃ ଆଃ କରୁଛି । ଅନ୍ୟମାନେ ତା'ର ଏହି ଆନନ୍ଦ ଶବ୍ଦ ଶୁଣି, ତା ପାଖକୁ ଦୌଡ଼ି ଆସନ୍ତି କିନ୍ତୁ ସେଠି ଯେ ଖାଦ୍ୟ ନଥାଏ ! ପିଞ୍ଜରା ଭିତରେ ଥିବା ସମୟରେ ମାଙ୍କଡ଼ ଲାଗି ଏହି ଶବ୍ଦର କିଛି ଅର୍ଥ ନଥାଏ, କାରଣ ସବୁ ମାଙ୍କଡ଼ ନିଜ ଭାଗ ପାଇଥାନ୍ତି । କିନ୍ତୁ ଜଙ୍ଗଲରେ ସ୍ୱାଧୀନ ଥିଲା ବେଳେ ଅନ୍ୟକଥା । ଖାଦ୍ୟ ଅନ୍ୱେଷଣରେ ମାଙ୍କଡ଼ ଦଳ ଗୋଟିଏ ଗଛରୁ ଅନ୍ୟ ଗଛକୁ ଡେଇଁ ବୁଲନ୍ତି, କିନ୍ତୁ ଖାଦ୍ୟ ନଥାଏ । ହଠାତ୍ କୌଣସି ଗୋଟିଏ ମାଙ୍କଡ଼ର ଭାଗ୍ୟ ଫିଟିଲା : ସେ ସୁସ୍ୱାଦୁ ଫଳଟିଏ ପାଇଲେ ସଙ୍ଗେ ସଙ୍ଗେ ଖାଇବାକୁ ଆରମ୍ଭ କରିଦିଏ । ଅନ୍ୟ ମାଙ୍କଡ଼ମାନେ ତାକୁ ଦେଖି ପାରନ୍ତି ନାହିଁ । ସମ୍ଭବତଃ ସେମାନେ ବି ଭୋକରେ ରହିଥାନ୍ତି, କିନ୍ତୁ ମାଙ୍କଡ଼ ଆଃ ଆଃ ଶବ୍ଦ କରେ ଓ ମାଙ୍କଡ଼ ଦଳଟି ଗଛର ଏ ଡାଳରୁ ସେ ଡାଳକୁ ଡେଇଁ ବୁଲନ୍ତି, କେଉଁଠି ଫଳ ଅଛି ଜାଣିବାକୁ ।



ମାଙ୍କଡ଼ମାନଙ୍କ ଲାଗି ଖାଦ୍ୟର ସଙ୍କେତ ଅତି ଦରକାରୀ । ମାତ୍ର ଏହି ଗୋଟିଏ ସଙ୍କେତ ଦ୍ୱାରା ସେମାନେ ଜୀବନ ବିତାଇ ପାରନ୍ତି ନାହିଁ । ଆଃ ଆଃ ଶବ୍ଦ ସେମାନଙ୍କୁ ଭୋକ ଦାଉରୁ ରକ୍ଷାକଲେ ମଧ୍ୟ ପ୍ରତି ପାଦେ ପାଦେ ସେମାନଙ୍କ ପାଇଁ ଅନେକ ଅନ୍ୟ ବିପଦ ରହିଛି । ତେଣୁ ଦଳ ମଧ୍ୟରୁ କୌଣସି ମାଙ୍କଡ଼ ବିପଦର ଆଭାସ ପାଇଲା ମାତ୍ରେ ବଡ଼ ପାଟିରେ "ଖେଁ-ଖେଁ" ଚିତ୍କାର କରେ । ଅବଶ୍ୟ ମାଙ୍କଡ଼ଟି ଏହି ଶବ୍ଦ ମନକୁ ମନ କହି ଥାଏ, କିନ୍ତୁ ଅନ୍ୟମାନଙ୍କ ଲାଗି ବିଶେଷ ଆଉ କିଛି ଦରକାର ନାହିଁ । ତଡ଼ିତ୍ ବେଗରେ ସବୁ ମାଙ୍କଡ଼ କାନ ପାରି ଶୁଣନ୍ତି ଓ ସତର୍କ ହୋଇ ଯାଆନ୍ତି । ଯଦି ପୁଣି ଥରେ ଏହି "ଖେଁ-ଖେଁ" ଶବ୍ଦର



ପୁନରାବୃତ୍ତି ହୁଏ, କିମ୍ବା ଅନ୍ୟ କେହି ବିପଦ ଦେଖି "ଖେଁ-ଖେଁ" ଶବ୍ଦକରେ, ସେଥିରୁ ଜଣା ପଡ଼େ ଯେ, ବିପଦ ଅପସରି ଯାଇ ନାହିଁ – ପଦକ୍ଷେପ ନେବାକୁ ପଡ଼ିବ । ସବୁଠାରୁ ସାଧାରଣ କଥା ହେଲା – ଦୌଡ଼ି ପଳାଇବା । ମାଙ୍କଡ଼ମାନେ ସାଧାରଣତଃ ଏହାହିଁ କରି ଥାଆନ୍ତି । ଏପରି ମଧ୍ୟ ହୁଏ ଯେ, ବେଳେବେଳେ କୁଆଡ଼େ ଦୌଡ଼ି ଯିବାକୁ ବାଟ ନଥାଏ, କିମ୍ବା ବିଳମ୍ବ ହୋଇ ଯାଇଥାଏ । ଏ କ୍ଷେତ୍ରରେ ମାଙ୍କଡ଼ ନିଜକୁ ରକ୍ଷା କରିବାକୁ ଲାଗି ପଡ଼ନ୍ତି । ମାତ୍ର ସଂଗ୍ରାମ କରିବା ପୂର୍ବରୁ ସେମାନେ ଏ ବିଷୟରେ ଜଣାଇ ଦିଅନ୍ତି । ନିଜର ବାହ୍ୟରୂପ ଦ୍ୱାରା, ଉଦାହରଣ ସ୍ୱରୂପ, ଲୋମକୁ ଫୁଲାଇ, ଆଖି କଟମଟ କରି, ଦାନ୍ତ କାମୁଡ଼ି, ହାତକୁ ମୁଠାକରି କେବଳ ଯେ ସେମାନେ ସତର୍କ କରନ୍ତି ତା ନୁହେଁ, ପଛ ଗୋଡ଼ ଦୁଇଟିରେ ଠିଆ ହୋଇ "ଉ-ଉ-ଉ" କିମ୍ବା "ଆଗ୍-ଆଗ୍" ଶବ୍ଦ କରି ମାଙ୍କଡ଼ମାନେ ନିଜର ଶତ୍ରୁ ସହିତ ଲଢ଼ିବାକୁ ଯାଆନ୍ତି । ମାଙ୍କଡ଼ ଅବଶ୍ୟ ଏହା ଦ୍ୱାରା ନିଜର ଶତ୍ରୁକୁ ଭୟଭୀତ କରିବାକୁ କିମ୍ବା ସତର୍କ କରିବାକୁ ଯାଇ କୁହେ ନାହିଁ ଯେ, "ପଳିଯା, ନଚେତ୍ ଅବସ୍ଥା ଖରାପ ହେବ" । ମାଙ୍କଡ଼ ଏହା ନ କହିଲେ ମଧ୍ୟ ସତରେ ଏହିପରି ଘଟେ : ଏହି ଶବ୍ଦ ଶୁଣି (ବୈଜ୍ଞାନିକମାନେ ଏହି ଶବ୍ଦକୁ "ସକ୍ରିୟ ପ୍ରତିରକ୍ଷାମୂଳକ ଶବ୍ଦ" ବୋଲି କହିଥାଆନ୍ତି) ଶତ୍ରୁ ଭୟ ପାଇ ପାରେ । ମାଙ୍କଡ଼ମାନଙ୍କ ଲାଗି ମଧ୍ୟ ଏହି ଶବ୍ଦର ଅର୍ଥ ରହିଛି – ଏହା ଶୁଣି ସେମାନେ ଏକତ୍ରିତ ହୁଅନ୍ତି । ସଂକ୍ଷିପ୍ତରେ କହିଲେ, ମାଙ୍କଡ଼ଙ୍କ ଲାଗି ଶବ୍ଦ ସଙ୍କେତ ହେଉଛି ମୋଟାମୋଟି ପ୍ରଧାନ ସମ୍ବଳ ।

ଥରେ ଏକ ଗବେଷଣାଗାରରେ ଶିମ୍ପାଞ୍ଜି ଦେହରୁ ପରୀକ୍ଷା କରିବା ପାଇଁ ରକ୍ତ ନିଆ ଗଲା । ଯେତେବେଳେ ରକ୍ତ ନେଉଥିବା ବ୍ୟକ୍ତି ଶିମ୍ପାଞ୍ଜିର ଆଙ୍ଗୁଠିରେ ଛୁଞ୍ଚି ଫୋଡ଼ି ଦେଲା, କଷ୍ଟରେ ମାଙ୍କଡ଼ଟି ପାଟି କରି ଉଠିଲା ଓ ତା'ର ଲୋମ ଟାଙ୍କୁରି ଉଠିଲା । ସଙ୍ଗେ ସଙ୍ଗେ ଜଣା ଗଲା ଯେ, ତାକୁ କଷ୍ଟ ଦେଉଥିବା ବ୍ୟକ୍ତିକୁ ସେ ଦଣ୍ଡ ଦେବାକୁ ଚାହୁଁଛି । ଆଉ ଏକ ସେକେଣ୍ଡ ବା ଦୁଇ ସେକେଣ୍ଡ ପରେ ପ୍ରଳୟ ସୃଷ୍ଟି ହେବ, କାରଣ ଗୋଟିଏ ବୟସ୍କ ଶିମ୍ପାଞ୍ଜି ଯେକୌଣସି ମଣିଷ ଅପେକ୍ଷା ଅଧିକ ବଳବାନ୍ । ମାତ୍ର ଠିକ୍ ଏତିକି ବେଳେ ପାଖରେ ଠିଆ ହୋଇଥିବା ବୈଜ୍ଞାନିକ ରକ୍ତ ନେଉଥିବା ଲୋକଟି ପଟୁ ବୁଲି ପଡ଼ି ୨୦ ଥର "ଉ-ଉ-ଉ" ବିପଦର ସଙ୍କେତ ଦେଲେ । ସଙ୍ଗେ ସଙ୍ଗେ ଶିମ୍ପାଞ୍ଜି ମଧ୍ୟ ସେହି ପରି ଶବ୍ଦ କରିବାକୁ ଲାଗିଲା ଓ ଅଦେଖା ଶତ୍ରୁ ଆଡ଼କୁ ବୁଲି ପଡ଼ିଲା । ତା'ପରେ ଛୁଞ୍ଚି ଫୋଡ଼ି କଷ୍ଟ ଦେଇଥିବା ବ୍ୟକ୍ତିକୁ ସେ ପୂରାପୂରି ଭୁଲିଗଲା ।

ଦେଖ ! ଏହା ଖୁବ୍ କୌତୂହଳପୂର୍ଣ୍ଣ କଥା : ଶିମ୍ପାଞ୍ଜିଟିକୁ କଷ୍ଟ ହୋଇଥିଲା ଏବଂ ସେ ଦେଖିଥିଲା, କିଏ ତାକୁ କଷ୍ଟ ଦେଉଛି । ଏହା ସତ୍ତ୍ୱେ ମଧ୍ୟ ବିପଦର ସଙ୍କେତ ପାଇଲା ମାତ୍ରେ ସେ ସବୁ କଥା ଭୁଲି ଗଲା । (ଯେଉଁ ବୈଜ୍ଞାନିକ ଏହି ବିପଦ ସଙ୍କେତର ଶବ୍ଦ ଉଚ୍ଚାରଣ କରିଥିଲେ ତାଙ୍କୁ ମାଙ୍କଡ଼ଙ୍କ ଭାଷା ଭଲଭାବେ ଜଣାଥିଲା ଓ ସେ ଏହି ଶବ୍ଦର ସଦ୍‌ବ୍ୟବହାର କରି ପାରିଥିଲେ ।)

କିନ୍ତୁ ମାଙ୍କଡ଼ମାନେ କେବଳ ଖାଇବା ଓ ନିଜକୁ ଶତ୍ରୁଠାରୁ ରକ୍ଷା କରିବା କାର୍ଯ୍ୟ ସର୍ବଦା କରନ୍ତି ନାହିଁ । ମାଙ୍କଡ଼ ଦଳ ମଧ୍ୟରେ ସବୁବେଳେ ବଳବାନ୍ ଓ ଦୁର୍ବଳ ମାଙ୍କଡ଼ ଥାଆନ୍ତି । ମନେକର ମାଙ୍କଡ଼ ଦଳ ଭୂଆଡ଼େ ବାହାରିଲେ । ସେମାନଙ୍କର ଲକ୍ଷସ୍ଥଳ ଖୁବ୍ ନିକଟରେ ହୋଇ ନପାରେ – ବେଳେବେଳେ ଗୋଟିଏ ଗଛରୁ ଅନ୍ୟ ଗଛକୁ କିମ୍ବା ଗୋଟିଏ ଡାଳରୁ ଅନ୍ୟ ଡାଳକୁ ଡେଇଁ ଡେଇଁ, ଏବଂ ବେଶି ସମୟ ଭୂଇଁ ଉପରେ ଚାଲି ଚାଲି ଅନ୍ୟ ସ୍ଥାନକୁ ଯାଆନ୍ତି, ସେତେବେଳେ ସେମାନେ ଦଶ କିଲୋମିଟରରୁ ଆହୁରି ଅଧିକ ଦୂର ଯାତ୍ରା କରନ୍ତି । ସେମାନଙ୍କ ଦଳରେ ଅନ୍ୟ ଯେ କୌଣସି ଦଳଭଳି ବଳବାନ୍ ଓ ଦୁର୍ବଳ ମାଙ୍କଡ଼ ଥାଇ ପାରନ୍ତି । ଗଛର ଘଞ୍ଚ ଡାଳରେ କିମ୍ବା ଗଛ ପତ୍ରର ଉହାଡ଼ରେ ଚଞ୍ଚଳ ଗତିରେ ଯିବା ସମୟରେ ମାଙ୍କଡ଼ମାନେ ପରସ୍ପରକୁ ଭଲ ରୂପେ ଦେଖି ପାରନ୍ତି ନାହିଁ । ତେଣୁ ବଳ ନପାଇବାରୁ ପଛରେ ପଡ଼ି ଯାଇଥିବା ମାଙ୍କଡ଼ଟିକୁ ହୁଏତ ଦେଖି ନପାରନ୍ତି । ଦୁର୍ବଳ ମାଙ୍କଡ଼ଟି ଦଳର ପଛରେ ପଡ଼ିଗଲେ ତା'ର ମୃତ୍ୟୁ ସୁନିଶ୍ଚିତ । ଏପରି ହେଲେ ମାଙ୍କଡ଼ଟି କ୍ଷୀଣ କଣ୍ଠରେ ଅଭିଯୋଗମିଶା ଶବ୍ଦ କରି ସାହାଯ୍ୟ ଭିକ୍ଷା କରେ । ଅବଶ୍ୟ ଏହା ସଚେତନ ଅବସ୍ଥାର ଡାକ ନୁହେଁ । ଏହା ଠିକ୍ ଭୟ ଓ କଷ୍ଟରୁ ମାଙ୍କଡ଼ମାନେ ଉଚ୍ଚାରଣ କରୁଥିବା ଶବ୍ଦ ପରି । ମାତ୍ର ଅନ୍ୟ ମାଙ୍କଡ଼ଙ୍କ ବୁଝିବା ଲାଗି ଏହି ଶବ୍ଦ ଯଥେଷ୍ଟ – ମାଙ୍କଡ଼ ଦଳ ଆଗକୁ ନଯାଇ ହଠାତ୍ ରହି ଯାଆନ୍ତି ।

ଥରେ ଗୋଟିଏ ବଡ଼ ପିଞ୍ଜରାରେ ଦୁଇଟି ମାଙ୍କଡ଼ ଖେଳୁଥିବାର ଆମେ ଲକ୍ଷ୍ୟ କରୁଥିଲୁ । ଗୋଟିଏ ମାଙ୍କଡ଼ ଧାଉଁଥାଏ ଏବଂ ଅନ୍ୟଟି ତାକୁ ଗୋଡ଼ାଉଥାଏ । ପଳାଇ ଯାଉଥିବା ମାଙ୍କଡ଼ଟି ଅଧିକ ବଳବାନ୍ ଓ କଷ୍ଟ ସହିଷ୍ଣୁ ହୋଇଥିବାରୁ ଗୋଡ଼ାଉଥିବା ମାଙ୍କଡ଼ଟି ତାକୁ କେବେହେଲେ ଧରି ପାରୁ ନଥାଏ । ଯେତେବେଳେ ଗୋଡ଼ାଉଥିବା ମାଙ୍କଡ଼ଟି ହାଲିଆ ହୋଇଗଲା, ସେ କ୍ଷୀଣ କଣ୍ଠରେ "ଉ-ଉ" ଶବ୍ଦ କରିବାକୁ ଲାଗିଲା । ଦୌଡ଼ୁଥିବା ପ୍ରଥମ ମାଙ୍କଡ଼ଟି ତତ୍‌କ୍ଷଣାତ୍ ଅଟକିଯାଇ ନିଜର ସାଥୀ ପାଖକୁ ଗଲା ଓ ତାକୁ କୁଣ୍ଢାଇ ପକାଇଲା । ଦୁର୍ବଳ ମାଙ୍କଡ଼ଟି ଥକା ମାରିବା ପର୍ଯ୍ୟନ୍ତ ସେମାନେ ପରସ୍ପରକୁ କୁଣ୍ଢାଇ ବସି ରହିଲେ ।

ଅବଶ୍ୟ ପିଞ୍ଜରା ଭିତରେ ମାଙ୍କଡ଼ଙ୍କ ପ୍ରତି କୌଣସି ବିପଦ ନାହିଁ । ମାତ୍ର ଗୋଡ଼ାଉଥିବା ମାଙ୍କଡ଼ର ବଳ ନପାଇବାରୁ ସେ ସାହାଯ୍ୟ ଲୋଡ଼ିଲା । ଦୌଡ଼ୁଥିବା ମାଙ୍କଡ଼ ପାଇଁ ଏହି ସଙ୍କେତ ଶୁଣି ତା ପାଖକୁ ସାହାଯ୍ୟ ପାଇଁ ଆସିବାକୁ ଯଥେଷ୍ଟ ଥିଲା ।

ଖେଳି ସାରିବା ପରେ ମାଙ୍କଡ଼ ଦୁଇଟି ପିଞ୍ଜରାର ଦୁଇ କୋଣରେ ଯାଇ ବସିଲେ । କିଛି ସମୟ ପରେ ସେମାନଙ୍କ ମଧ୍ୟରୁ ଜଣକର ପୁଣି ଖେଳିବାକୁ ଇଚ୍ଛା ହେଲା ଏବଂ ସେ ସଚେତପରି ନିଜର ସାଥୀକୁ ପୁଣି ଦୌଡ଼ିବାକୁ ପ୍ରସ୍ତାବ ଦେଲା । ମାଙ୍କଡ଼ମାନଙ୍କ ଭାଷାରେ ଏହି ପ୍ରସ୍ତାବର ଅର୍ଥ ହେଲା "ହୋ-ହୋ" କିମ୍ବା "ହେ-ହେ-ହେ" । (ବୈଜ୍ଞାନିକମାନେ ଏହାକୁ "ସଂଯୋଗ ସଙ୍କେତ" ବୋଲି କହନ୍ତି ।) ମଣିଷର ଭାଷାରେ ଏହାର ଅର୍ଥ ହେଲା "ମୁଁ ଖେଳିବାକୁ ଚାହୁଁଛି" । ମାଙ୍କଡ଼ ଏହି ସଙ୍କେତ ତା'ର ସାଥୀକୁ ସଚେତନ ରୂପେ ଦିଏ ନାହିଁ । ନିଜର ମନର ଭାବ ପ୍ରକାଶ କରିବାକୁ ଯାଇ ସେ ଏହି ପରି ଶବ୍ଦ ଉଚ୍ଚାରଣ କରିଥାଏ ।



କିନ୍ତୁ ତା ସାଥୀଟି ଏହି ଶବ୍ଦ ଶୁଣି ତା ପାଖକୁ ଆସେ ।

ଥରେ ପିଞ୍ଜରା ଭିତରେ ମାଙ୍କଡ଼ ଗୋଟିଏ ଅଜଣା ପଦାର୍ଥ – ରବର କଣ୍ଢେଇଟିଏ ଦେଖିଲା । ଏପରି ଜିନିଷ ପୂର୍ବରୁ ମାଙ୍କଡ଼ କେବେ ଦେଖି ନଥିଲା, ତେଣୁ ଭୟେ ଭୟେ ଜିନିଷଟି ଆଡ଼କୁ ସେ ଆଗେଇଲା । ଗଲାବେଳେ ସେ "ଗମ୍-ଗମ୍" ଶବ୍ଦ କରୁଥାଏ । କଣ୍ଢେଇ ପାଖକୁ ଯାଇ ହଠାତ୍ ଟିକିଏ କଡ଼କୁ ଘୁଞ୍ଚି ଯାଇ ସେ ପଛକୁ ଦେଖିଲା । ପାଖରେ ପଡ଼ିଥିବା ଖଣ୍ଡିଏ ଡାଙ୍ଗ ହାତକୁ ନେଇ, କଣ୍ଢେଇକୁ ସାବଧାନରେ ଡାଙ୍ଗଟିରେ ଛୁଇଁଲା । ତା'ପରେ ଡାଙ୍ଗଟିକୁ ଶୁଙ୍ଘିଲା ପରେ ଯାଇ ଖୁବ୍ ସତର୍କତାର ସହ ସେ କଣ୍ଢେଇଟି ଦେହରେ ନିଜର ଆଙ୍ଗୁଳି ଲଗାଇଲା ।

କୌଣସି ଆଶ୍ଚର୍ଯ୍ୟ କଥା ନଘଟିବାର ଦେଖି ମାଙ୍କଡ଼ଟି କଣ୍ଢେଇଟିକୁ ଏପଟ ସେପଟ କରି ଦେଖିବାକୁ ଲାଗିଲା । ତା'ର ମନଯୋଗପୂର୍ଣ୍ଣ ଚାହାଁଣି, ସତର୍କିତ ଗତିବିଧି ଓ ମୁହଁର ଭାବଭଙ୍ଗୀରୁ ଜଣା ଗଲା ଯେ, ମାଙ୍କଡ଼ଟି ଗୋଟିଏ ବଡ଼ କାମରେ ବ୍ୟସ୍ତ ଅଛି । ସବୁବେଳେ ସେ କଣ୍ଢେଇଟିକୁ ଦେଖିବା ସଙ୍ଗେ ସଙ୍ଗେ "ଗମ୍-ଗମ୍" ଶବ୍ଦ କରି ଚାଲିଥାଏ । ସତେ ଯେପରି ପଚାରୁଛି, "ଏହି ଜିନିଷଟା କ'ଣ ହୋଇ ପାରେ ?" ଏହି ଶବ୍ଦକୁ "ଆଘାତଃ ଶବ୍ଦ" ଆଖ୍ୟା ଦିଆଯାଇଛି । ଏହି ସମୟରେ ମନେହୁଏ ଯେ, ବାନରଟି କେବଳ ଗବେଷଣାରେ ବ୍ୟସ୍ତ ଏବଂ ଦୁନିଆର ଅନ୍ୟ କୌଣସି କଥା ପ୍ରତି ତା'ର ଆଗ୍ରହ ନାହିଁ । ମାତ୍ର ଆମକୁ କେବଳ ଏଭଳି ମନେହୁଏ । କବାଟ ସେପଟରୁ କୌଣସି ଅଜଣା ଶବ୍ଦ ଶୁଣିଲେ ସେ ପୁଣି କାନ ଡେରି ସତର୍କ ହୋଇ ପଡ଼େ । ଏବେ ସେ "ଗମ୍-ଗମ୍" ଶବ୍ଦ ଉଚ୍ଚାରଣ କରୁଛି କବାଟ ସେପଟରୁ ଆସୁଥିବା ଶବ୍ଦ ଯୋଗୁ । ଯାହାର ଅର୍ଥ ହେଲା : "ଏହି ଶବ୍ଦର ଅର୍ଥ କ'ଣ ?" କିମ୍ବା "କ'ଣ ଏଇଟା ?"

ମାଙ୍କଡ଼ମାନେ ଖାଦ୍ୟ ଓ ବିପଦ ସମ୍ବନ୍ଧରେ କଥାବାର୍ତ୍ତା କରନ୍ତି, ଭୟ ଦେଖାନ୍ତି ଓ ସାହାଯ୍ୟ ମାଗନ୍ତି । ଶିମ୍ପାଞ୍ଜି କଥାବାର୍ତ୍ତା କରୁଥିବା ପ୍ରାୟ ୪୦ଟି ଶବ୍ଦ ଏବେ ବୈଜ୍ଞାନିକମାନେ ଜାଣି ପାରିଛନ୍ତି । ଚିଡ଼ିଆଖାନାରେ ମାଙ୍କଡ଼ଙ୍କୁ ଲକ୍ଷ୍ୟ କଲେ ତୁମେମାନେ ଜାଣିବ ଯେ, ଦଳପତି କେମିତି ମାଙ୍କଡ଼ ପଲ ଉପରେ ହୁକୁମ୍ ଜାରି କରୁଛି, କଳିକଲେ କିପରି ମାଙ୍କଡ଼ମାନେ ଯାଇ ଦଳପତି ପାଖରେ ଅଭିଯୋଗ କରନ୍ତି, ସେମାନେ କିପରି ମାଙ୍କଡ଼ଛୁଆଙ୍କ ସହ କଥାବାର୍ତ୍ତା କରନ୍ତି ... ଯଦି ମାଙ୍କଡ଼ମାନଙ୍କୁ ନିରୀକ୍ଷଣ କରିବାର ସୁଯୋଗ ନମିଳେ ମନରେ ଦୁଃଖ କର ନାହିଁ ।

ଜଙ୍ଗଲ, ପଡ଼ିଆ, ନଦୀତଟ କିମ୍ବା ପାର୍କ, ଯେଉଁଠାରେ ଥାଅନା କାହିଁକି, ଦିନ ହେଉ, ସଂଧ୍ୟା ହେଉ ବା ରାତି ହେଉ ତୁମେମାନେ ସର୍ବଦା ଶୁଣି ପାରିବ ଜୀବଜନ୍ତୁଙ୍କର କଥାବାର୍ତ୍ତା । ପକ୍ଷୀଙ୍କର ଗୀତ, ବେଙ୍ଗର କେଁକଟର ଶବ୍ଦ, ଝିଙ୍କାରୀର ଝିଁ ଝିଁ ଓ ମୂଷାମାନଙ୍କର ଚୁଁ ଚୁଁ ଶବ୍ଦ ତୁମେ ଶୁଣି ପାରିବ । ନିଜ ଘରେ କିମ୍ବା ଅଗଣାରେ ରହି ମଧ୍ୟ ତୁମେ ଜୀବଜନ୍ତୁଙ୍କର କଥା ଶୁଣି ପାରିବ । ଏହା ହେଲା କୁକୁଡ଼ାର କଅ-କଅ ଡାକ, ବିଲେଇର ମ୍ୟାଉଁ ମ୍ୟାଉଁ ଏବଂ କୁକୁର ଭେଉ ଭେଉ ଶବ୍ଦ । ଯଦିଓ ତୁମେ ଏହା ସହସ୍ର ବାର ଶୁଣିଛ, କିନ୍ତୁ ସେଥି ପ୍ରତି ଧ୍ୟାନ ଦେଇ ନାହିଁ । ଥରେ କେବେ ଧୈର୍ଯ୍ୟର ସହ ଜୀବଜନ୍ତୁଙ୍କୁ ଲକ୍ଷ୍ୟ କର । ଗୋଟିଏ କଥା ମନେରଖ – ସେମାନେ ଖୁବ୍ କାର୍ଯ୍ୟବ୍ୟସ୍ତ ଜୀବ, ଅଯଥାରେ କେବେହେଲେ କଥା ହୁଅନ୍ତି ନାହିଁ । ସେମାନଙ୍କର ପ୍ରତ୍ୟେକ ଶବ୍ଦର ଅର୍ଥ ଥାଏ ଏବଂ କୌଣସି କାରଣରୁ ସେମାନେ ତାହା ପ୍ରକାଶ କରିଥାନ୍ତି ।

## ତୃତୀୟ ଭାଗ

# ବ୍ୟାଲେ ନାଚ - କେବଳ ଏକ ନାଚ ନୁହେଁ

### "ମୋତେ ଖାଦ୍ୟ ମିଳି ଯାଇଛି – ମୁଁ ନାଚୁଛି !"

ଆମେ ଜାଣିଛେ ଯେ, ଅନେକ ଜୀବଜନ୍ତୁ ପରସ୍ପରକୁ ନିଜର ମନକଥା ବୁଝାଇ କହନ୍ତି । ଏଥି ଲାଗି ସେମାନେ ଗନ୍ଧ ଓ ଶବ୍ଦର ସାହାଯ୍ୟ ଲୋଡ଼ିଥାନ୍ତି । କେତେକ ଜନ୍ତୁଙ୍କ ଲାଗି ଏହି ଦୁଇଟି ମାଧ୍ୟମ ଯଥେଷ୍ଟ, ଆଉ କେତେକଙ୍କ ପାଇଁ ଏହା ଖୁବ୍ କମ୍ ।

ବୈଜ୍ଞାନିକମାନେ ଲକ୍ଷ୍ୟ କଲେ ଯେ, ମହୁମାଛିମାନେ ସର୍ବଦା ସେମାନଙ୍କ ଲାଗି ଥିବା ଖାଦ୍ୟ ପାଖକୁ ଯାଆନ୍ତି ନାହିଁ । ଉଦାହରଣ ସ୍ୱରୂପ, ଚିନି ଶିରା ଥୁଆ ହୋଇଥିବା ଗୋଟିଏ ପାତ୍ରର ସନ୍ଧାନ ମହୁମାଛିଟିଏ ପାଇଲେ, ସେଠାକୁ ଅନ୍ୟ ସବୁ ମହୁମାଛି ଉଡ଼ି ଆସି ବସନ୍ତି । ଏହାକୁ ଦେଖି ବୈଜ୍ଞାନିକମାନେ ଲକ୍ଷ୍ୟକଲେ ଯେ, କେତେକ ମହୁମାଛି ଗୁଇନ୍ଦା ସ୍ୱାମହୁମାଛି ପଛରେ ଉଡ଼ି ନଆସି, କିଛି ସମୟ ପରେ ପାତ୍ର ପାଖକୁ ଆସୁଛନ୍ତି, ସତେ ଯେପରି ସେମାନେ ନିଜେ ଚିନି ଶିରାର ସନ୍ଧାନ ପାଇଛନ୍ତି । କିନ୍ତୁ ଏହି ମହୁମାଛିମାନେ ଗୁଇନ୍ଦା ସ୍ୱାମହୁମାଛି ଆସିବା ପୂର୍ବରୁ କାହିଁକି ସେହି ସ୍ଥାନକୁ ଆପେ ଆପେ ଆସି ନଥିଲେ ? ହୋଇପାରେ ଗୁଇନ୍ଦା ସ୍ୱାମହୁମାଛି କୌଣସି ପ୍ରକାରେ ସେମାନଙ୍କୁ ଜଣାଇ ଦେଲା ଯେ, ଖାଦ୍ୟ ଅଛି ଓ କିଭଳି ଖାଦ୍ୟ (ଏହା ହୁଏତ ମହୁମାଛିମାନେ ଗନ୍ଧ ବାରି ଜାଣି ପାରିଥିଲେ), କିନ୍ତୁ କେଉଁଠି ଅଛି ଏହି ଖାଦ୍ୟ ? ତୁମେ ଜାଣିଛ ଯେ ଡେଣା ହଲାଇ ମହୁମାଛି କିଛି କଥା କହିପାରେ । କିନ୍ତୁ ଡେଣା ହଲାଇ ଯେ ସବୁ କଥା କହି ହୁଏ, ତା ନାହିଁ !

ସତକଥାଟି କ'ଣ ଜାଣିବାକୁ ସ୍ଥିର କରାଗଲା । ଏକ କାଚ ଘର ଭିତରେ ଥିବା ଫେଣାରେ ମହୁମାଛିଙ୍କୁ ଛାଡ଼ି ଦିଆଗଲା । କାଚର ବାହାରୁ ଫେଣା ଭିତରେ ମହୁମାଛିମାନେ କ'ଣ କରୁଛନ୍ତି ଭଲ ଭାବେ ଦେଖିହେଉଥାଏ । ସେମାନଙ୍କର କାର୍ଯ୍ୟକୁ ଲକ୍ଷ୍ୟ କରାଗଲା । ମହୁମାଛିଟିଏ ଚିନି ଶିରା ଥିବା ପାତ୍ରରୁ ଏବେ କାଚ ଘରର ଫେଣାକୁ ଆସିଲା । ଫେଣାରେ ବସି ମହୁମାଛିଟି ଆଣିଥିବା ମଧୁ ଦେଇ ଯିବା ପରେ ନାଚିବା ଆରମ୍ଭ କଲା । ସଠିକ୍ କହିଲେ, ସେ ଗୋଲିପଟେ ଚକ୍କର କାଟୁଥାଏ । ଏହି ଚକ୍କର ଖୁବ୍ ବଡ଼ ନୁହେଁ, କାରଣ ମହୁଫେଣାଟି ଓ ମହୁମାଛି ଦ୍ୱାରା ପୂର୍ଣ୍ଣ ଥିବାରୁ ଏପଟ ସେପଟ ବୁଲିବା କଷ୍ଟକର । ଯାହା ହେଲେ ବି ସାଥୀ ମହୁମାଛିମାନେ

ଜାକିଜୁକି ହୋଇ ତା ପାଇଁ ଜାଗା ଛାଡ଼ି ଦିଅନ୍ତି ଏବଂ ଏହି ଖାଲି ଜାଗାରେ ଉଡ଼ି ଆସିଥିବା ମହୁମାଛିଟି ଚକ୍କର କାଟେ । ଯେଉଁବାଟ ଦେଇ ମହୁମାଛିଟି ଚକ୍କର କାଟେ, ଅନ୍ୟ ମହୁମାଛି ମଧ୍ୟ ଠିକ୍ ସେହି ବାଟ ଦେଇ ତାକୁ ଅନୁସରଣ କରୁଥାଆନ୍ତି ।

ନାଚୁଥିବା ମହୁମାଛିଟିକୁ ସେମାନେ ଶୁଣ୍ଢ ଲଗାଇ ପ୍ରାୟ ଛୁଅନ୍ତି । ପରେ ଗୋଟିକ ପରେ ଗୋଟିଏ ଫେଣାରୁ ଉଡ଼ିଯିବାକୁ ଆରମ୍ଭ କରନ୍ତି । ଅଳ୍ପ କିଛି ମିନିଟ୍ ପରେ ସେମାନେ ଯାଇ ଚିନି ଶିରା ଥିବା ପାତ୍ର ଉପରେ ବସନ୍ତି ।

ଫେଣାକୁ ଫେରି ଆସି ଏହି ମହୁମାଛିମାନେ ନାଚିବାକୁ ଲଗିଲେ ଏବଂ ପୁନର୍ବାର ଶିରାପାତ୍ର ପାଖକୁ ଫେରି ଗଲେ । ମାତ୍ର ଏମାନଙ୍କର ନାଚ ସମୟରେ ଫେଣା ଛାଡ଼ି ଆଉ ଦଳେ ମହୁମାଛି ଶିରା ପାଖକୁ ଚାଲି ଗଲେ । ସବୁତକ ଚିନି ଶିରା ଫେଣାକୁ ବୋହି ନଆଣିବା ପର୍ଯ୍ୟନ୍ତ ମହୁମାଛିମାନେ ଦଳଦଳ ହୋଇ ଥାଳିଆ ପାଖକୁ ଆସୁଥିଲେ । ମାତ୍ର ଆଶ୍ଚର୍ଯ୍ୟ କଥା : ଯେପର୍ଯ୍ୟନ୍ତ ପାତ୍ରଟିରେ ଚିନି ଶିରା ଥିଲା ସବୁ ମହୁମାଛି ଏକ ପ୍ରକାର ବ୍ୟବହାର କରୁଥିଲେ – ବସାକୁ ଉଡ଼ିଆସି ନାଚୁଥିଲେ ଏବଂ ପୁଣି ଖାଦ୍ୟ ସଂଗ୍ରହରେ ଯାଉଥିଲେ । ମାତ୍ର ପାତ୍ରଟିରୁ ଶିରା ଶେଷ ହେବାକୁ ଲଗିବାରୁ ମହୁମାଛିଙ୍କର ବ୍ୟବହାରରେ ମଧ୍ୟ ପରିବର୍ତ୍ତନ ପରିଲକ୍ଷିତ ହେଲା : ଫେଣାକୁ ଫେରିବା ପରେ ସେମାନେ ଆଉ ନାଚିଲେ ନାହିଁ ।

ଅବଶ୍ୟ ଗୋଟିଏ ପରୀକ୍ଷା ଫଳରେ କୌଣସି ସିଦ୍ଧାନ୍ତରେ ପହଞ୍ଚିବା ଉଚିତ୍ ନୁହେଁ । ତେଣୁ ଶହ ଶହ ଓ ହଜାର ହଜାର ପରୀକ୍ଷା କରାଯିବା ପରେ ଜଣାଗଲା ଯେ, ମହୁମାଛିର ଚକ୍କରକଟା ନାଚର ଅର୍ଥ ହେଲା "କେଉଁଠି ଖାଦ୍ୟ ଗଚ୍ଛିତ ଅଛି" । କେବଳ ଖାଦ୍ୟ ନୁହେଁ, ବହୁ ପରିମାଣର ଖାଦ୍ୟ ରହିଛି । ତେଣୁ ଚିନି ଶିରା ସରିଯିବା ସଙ୍ଗେ ସଙ୍ଗେ ନାଚ ମଧ୍ୟ ବନ୍ଦ ହୋଇଗଲା ।



ମହୁମାଛିଙ୍କର ଗୁପ୍ତକଥା ଜାଣିବାକୁ ମଣିଷ ମନରେ ଆଗ୍ରହ ବଢ଼ିଲା । ତେଣୁ ସେମାନେ ସମୟ ଓ ଶକ୍ତି ଖର୍ଚ୍ଚ କରି ଚିନି ଓ ଶିରା ଖର୍ଚ୍ଚକୁ ଭୟ ନକରି ପରୀକ୍ଷା କରିବାକୁ ଲଗିଲେ । ପରିଶେଷରେ ଜାଣି ପାରିଲେ ଯେ, ଚକ୍କରକଟା ନାଚର ଅର୍ଥ ହେଲା ଫେଣାର ଅତି ନିକଟରେ ଖାଦ୍ୟ ଅଛି । ସେଇଠି ଖୋଜ !

ମନେ ହେଲା, ସତେ ଯେପରି ସବୁକଥା ଜଣା ପଡ଼ିଗଲା । ମାତ୍ର ବୈଜ୍ଞାନିକମାନେ ସନ୍ତୁଷ୍ଟ ହେବା ଲୋକ ନୁହନ୍ତି । ସେମାନଙ୍କୁ ଜାଣିବାକୁ ବହୁତ ଇଚ୍ଛା ହେଲା – ମହୁଧରି ଫେଣାକୁ ଉଡ଼ି ଆସିଲା ପରେ କେତେକ ମହୁମାଛି କାହିଁକି କେବଳ ଚକ୍କର କାଟି ନାଚ କରନ୍ତି ଓ ଅନ୍ୟମାନେ ଆଉ ଏକ ଅଦ୍ଭୁତ ବ୍ୟବହାର କରନ୍ତି, ଅର୍ଥାତ୍ ପ୍ରଥମେ ସିଧା ଦୌଡ଼ି ଯାଆନ୍ତି ଓ ତା'ପରେ ଗୋଟିଏ କଡ଼କୁ ବୁଲିପଡ଼ି ପୁଣି ସିଧା ଧାଇଁବାକୁ ଆରମ୍ଭ କରନ୍ତି । ପରେ ଅର୍ଦ୍ଧବୃତ୍ତାକାର ଭାବେ ଘୂରି ବୁଲନ୍ତି ଏବଂ ଶେଷରେ ପୂରାପୂରି ଭାବେ ଅନ୍ୟ ପଟକୁ ବୁଲିଯାଆନ୍ତି । ଏପରି ବୁଲିବା ସମୟରେ ମହୁମାଛି ସବୁବେଳେ ତଳିପେଟକୁ ଦୋହଲଉଥାଆନ୍ତି । ଫେଣାରେ ଥିବା ଅନ୍ୟ ମହୁମାଛି ଏହି ସବୁ ଗତିବିଧିକୁ ଠିକ୍ ଏହିପରି ଅନୁସରଣ କରନ୍ତି ଓ ପରେ ଫେଣାରୁ ଉଡ଼ି ଯାଆନ୍ତି ।

ପୁନର୍ବାର ପରୀକ୍ଷା କରାଗଲା । ଗୋଟିଏ ଖାଦ୍ୟ ପାତ୍ରକୁ ମହୁଫେଣା ପାଖରେ ଓ ଅନ୍ୟଟିକୁ ଦୂରରେ ରଖି ଦିଆଗଲା । ଦେଖାଗଲା, ଯେଉଁସବୁ ମହୁମାଛି ନିକଟତମ ଖାଦ୍ୟ ପାତ୍ରରୁ ଫେଣାକୁ ଆସୁଥିଲେ, ସେମାନେ ଗୋଲ ଚକ୍କର କାଟୁ ଥିଲେ ଏବଂ ଯେଉଁମାନେ ଦୂରସ୍ଥ ଖାଦ୍ୟ ପାତ୍ରରୁ ଆସୁଥିଲେ, ସେମାନେ ବୈଜ୍ଞାନିକମାନଙ୍କ

ମାତ୍ର ଖାଦ୍ୟର ସନ୍ଧାନ ମିଳିଛି – ଏତିକି ଜଣାଇ ଦେବା ଯଥେଷ୍ଟ ନୁହେଁ । କେଉଁଠାରେ ଏହି ଖାଦ୍ୟ ରହିଛି, ତାହା ମଧ୍ୟ କହିବା ଦରକାର । ମହୁମାଛିମାନେ ଏ ବିଷୟରେ ପରସ୍ପରକୁ କହିଥାନ୍ତି । ମାତ୍ର କିପରି ?

ଭାଷାରେ "ପେଟହଲ ନାଚ" କରୁଥିଲେ । ନିକଟତମ ଖାଦ୍ୟ ପାତ୍ରଟିକୁ ଦୂରକୁ ନେଇଯିବା ଫଳରେ ସବୁ ମହୁମାଛି ପେଣାକୁ ଫେରି "ପେଟହଲ ନାଚ" ନାଚିଲେ । ଏଥିରୁ ଜଣା ପଡ଼ିଲ ଯେ, ମହୁମାଛିମାନେ ପରସ୍ପରକୁ ଖାଦ୍ୟର ସନ୍ଧାନ ମିଳିବା କଥା କେବଳ କହିଲେନି, ସେମାନେ ଏହି ଖାଦ୍ୟ କେଉଁଠି ଅଛି – ପାଖରେ ନା ଦୂରରେ, ତାହା ମଧ୍ୟ ଜଣାଇ ଦେଲେ । ନିକଟରେ ଖାଦ୍ୟ ଥିବା ଖବର ଦେବାର ସ୍ୱତନ୍ତ୍ର ଅର୍ଥ ରହିଛି : ପେଣା ପାଖରେ ବୁଲି ଆସିଲେ ଖାଦ୍ୟ ମିଳିବ । ଯଦି ଖାଦ୍ୟ ବହୁତ ଦୂରରେ ଅଛି, ତାହେଲେ କେଉଁଠି ସନ୍ଧାନ କରିବାକୁ ହେବ ? ହୋଇ ପାରେ, ମହୁମାଛି ତା'ର ସାଥୀମାନଙ୍କୁ ସଠିକ୍ ଠିକଣା କ'ଣ କିଛି କହୁଥିବ ? ଖାଦ୍ୟ ପାତ୍ରକୁ ମହୁପେଣାଠାରୁ ୧୦୦,୨୦୦, ୫୦୦, ୧୦୦୦, ଏପରିକି ୬୦୦୦ ମିଟର ପର୍ଯ୍ୟନ୍ତ ଦୂରରେ ନେଇ ରଖାଗଲ । ପ୍ରତିଥର ଖାଦ୍ୟ ପାତ୍ରରୁ ଫେରି ମହୁମାଛିମାନେ ପେଟହଲ ନାଚ ନାଚିଲେ । ମାତ୍ର ପ୍ରତିଥର ଏହି ନାଚ ଏକାଭଳି ନଥିଲ । ନାଚ



ପ୍ୟାରାଡାଇସ୍ ମାଛ

ଦେଖିବାକୁ ଗଲେ ପ୍ରାୟ ଗୋଟିଏ, ମାତ୍ର ଯଦି ୧୦୦ ମିଟର ଦୂରରେ ଥିବା ଖାଦ୍ୟ ପାତ୍ରରୁ ମହୁମାଛି ପେଣାକୁ ଆସୁଥିଲ, ତେବେ ପନ୍ଦର ସେକେଣ୍ଡରେ ଏପଟ ସେପଟ ପେଟ ହଲଇ ନଅ-ଦଶ ଥର ଚକ୍କର କାଟୁଥିଲ । ୨୦୦ ମିଟର ଦୂରରେ ଥିବା ପାତ୍ରରୁ ଫେରି ଆସି ୧୫ ସେକେଣ୍ଡରେ ସେ ମାତ୍ର ସାତ ଥର ଚକ୍କର କାଟୁଥିଲ ଏବଂ ଏକ କିଲେମିଟର ଦୂରରୁ ପେଣାକୁ ଫେରିଲେ ସାଢ଼େ ଗ୍ରରିଥର ଘୂରି ବୁଲିଲ । ପେଣାରେ ମାତ୍ର ଦୁଇଥର ଚକ୍କର କାଟିବାର ଅର୍ଥ ହେଲ – ଖାଦ୍ୟ ଛଅ କିଲେମିଟର ଦୂରରେ ଅଛି ।

ମାତ୍ର ଏତିକିରେ ସବୁକଥା ସରି ଯାଇନି ! ଏଭଳିକି ଯଦି ମହୁମାଛି ଗଚ୍ଛିତ ଖାଦ୍ୟର ଦିଗ ଠିକ୍ ଭାବେ ନଜାଣନ୍ତି, ତେବେ ସଠିକ୍ ଦୂରତ୍ୱ ମଧ୍ୟ ସେମାନଙ୍କୁ ସାହାଯ୍ୟ କରି ପାରେ ନାହିଁ । ଜଣା ପଡ଼ିଲ ଯେ, ମହୁମାଛିମାନେ ଖାଦ୍ୟ ଅବସ୍ଥିତିର ଦିଗ ମଧ୍ୟ କହି ଥାଆନ୍ତି । ପେଟହଲ ନାଚ କରିବା ସମୟରେ ବେଳେବେଳେ ମହୁମାଛିଟି ସିଧା ଧାଇଁ ଯାଏ । ତା'ର ଏହି ସିଧାଦୌଡ଼ରୁ ଆନୁମାନିକ ଭାବେ ଦିଗର ସନ୍ଧାନ ମିଳେ ।

ପ୍ରଥମେ ମହୁମାଛିର ଭାଷା ସଂପର୍କରେ ଲେକମାନେ ଖୁବ୍ ବେଶି ଦିନ ପୂର୍ବରୁ ଜାଣି ପାରି ନଥିଲେ – ମାତ୍ର ୪୫ ବର୍ଷ ପୂର୍ବେ ଏ ସମ୍ବନ୍ଧରେ ତଥ୍ୟ ମଣିଷ ପାଇଲ । ସେହି ଦିନଠାରୁ ସହସ୍ରାଧିକ ପରୀକ୍ଷା କରାଯାଇଛି । ଏହା ହେଉଛି ଆରମ୍ଭ ମାତ୍ର । ମହୁମାଛିମାନେ ଅନେକ କଥା ଦେଖାଇ ପୁଣି ମଣିଷକୁ ଆଶ୍ଚର୍ଯ୍ୟ କରିବେ । ଏପର୍ଯ୍ୟନ୍ତ ଆମକୁ ଯାହା ଜଣା ଅଛି, ତାହା ଅବଶ୍ୟ କମ୍ ଆଶ୍ଚର୍ଯ୍ୟର କଥା ନୁହେଁ ।

"ହେ ବନ୍ଧୁଗଣ ! ଖାଦ୍ୟର ସନ୍ଧାନ ମିଳିଛି ! ଶୀଘ୍ର ଯିବା ଆସ !" ଏହି ଭଳି କିମ୍ବା ଅନ୍ୟ କୌଣସି ଉପାୟରେ ପିମ୍ପୁଡ଼ିମାନେ ନିଜ ସାଥୀର ଭାଷା ବୁଝି ପାରନ୍ତି । ଯେତେବେଳେ ସେ ଖାଦ୍ୟର ସନ୍ଧାନ ପାଇ ପିମ୍ପୁଡ଼ି ହୁଡ଼ା ପାଖକୁ ଦୌଡ଼ି ଆସି ଚକ୍କର କାଟେ କିମ୍ବା ଅଙ୍କାବଙ୍କା ଧାର ସୃଷ୍ଟି କରେ । ଯେକୌଣସି ଭାବେ ହେଉ, ସବୁ ପିମ୍ପୁଡ଼ି ଏକତ୍ର ହୁଅନ୍ତି ଏବଂ ତତ୍କ୍ଷଣାତ୍ ନାଚି ବୁଲିଥିବା ପିମ୍ପୁଡ଼ି ପଛରେ ଧାର ଲଗାଇ ଗ୍ରଲନ୍ତି । ଏବେ ସେମାନେ ଭଲ ରୂପେ ଜାଣନ୍ତି ଯେ, ଗୁଇନ୍ଦା

ପିମ୍ପୁଡ଼ି ଖାଦ୍ୟର ସନ୍ଧାନ ପାଇଛି ଏବଂ ସେ ଏକା ତାକୁ ବୋହି ଆଣିବାକୁ ଅସମର୍ଥ । ତେଣୁ ସେମାନେ ଗୁଇନ୍ଦା ପିମ୍ପୁଡ଼ି ପଛରେ ଧାଡ଼ି ଲଗାଇ ଛୁଟନ୍ତି । ମାତ୍ର


ଧଳା ବଗୁଲୀ

ପିମ୍ପୁଡ଼ି କାହିଁକି ସିଧା ଛୁଟନ୍ତି ନି ? ଏହାର ଅର୍ଥ ଖୁବ୍ ସହଜ : ଯେଉଁ ବାଟ ଦେଇ ଗୁଇନ୍ଦା ପିମ୍ପୁଡ଼ି ତରବର ହୋଇ ଗାତ ପାଖକୁ ପଳାଇ ଆସିଥିଲା ଓ ଆସିବା ସମୟରେ ସୁଗନ୍ଧ ପଦାର୍ଥ ପକାଇ ପକାଇ ଆସିଥିଲା, ପିମ୍ପୁଡ଼ିମାନେ ସେହି ବାଟ ଦେଇ ହିଁ ଗତି କରନ୍ତି, ତେଣୁ ଏହି ପଥ ଅଙ୍କାବଙ୍କା ହୋଇଥାଏ । ଆଶ୍ଚର୍ଯ୍ୟ କଥା, ତରବର ହୋଇ ଦୌଡ଼ିଲା ବେଳେ ସର୍ବଦା ଛୋଟ ରାସ୍ତା ଖୋଜିବାକୁ ପଡ଼େ, କାରଣ ସମସ୍ତେ ଜାଣନ୍ତି, ସିଧା ରାସ୍ତାରେ ଗଲେ କମ୍ ବାଟ ପଡ଼ିବ । ପିମ୍ପୁଡ଼ି ତ ତରବର ହୋଇ ଯାଉଥିଲା, କିନ୍ତୁ ସେ ସିଧା ନଯାଇ ଅଙ୍କାବଙ୍କା ରାସ୍ତାରେ ଗଲା କାହିଁକି ? ପିମ୍ପୁଡ଼ି ପାଇଁ ଏହା ସ୍ୱାଭାବିକ କଥା, କାରଣ ତରବର ହୋଇ ଗାତକୁ ଗଲା ବେଳେ


କାଳିଆ ବଗ

ଗୋଡ଼ ତା'ର ଏପଟ ସେପଟ ପଡ଼ିଯାଏ । ତେଣୁ ପିମ୍ପୁଡ଼ି ଧାରଟି ଅଙ୍କାବଙ୍କା ।

ପିମ୍ପୁଡ଼ି ଓ ମହୁମାଛିଙ୍କୁ ଲକ୍ଷ୍ୟ କରିବା ସହଜ କଥା ନୁହେଁ । ମାତ୍ର ତୁମେମାନେ ଲକ୍ଷ୍ୟ କରି ପାରିବ, ଖାଦ୍ୟ ପାଇଲେ ଜୀବଜନ୍ତୁ କିପରି ନାଚନ୍ତି ।

ତୁମର କିମ୍ବା ତୁମ ବନ୍ଧୁଙ୍କ ଘରେ ଯଦି ମାଛ ରଖିବା ଲାଗି ଜଳପାତ୍ର ଥାଏ ଏବଂ ସେଥିରେ ପ୍ୟାର୍‌ୟାଡାଇସ୍ ମାଛ ରହୁଥାଆନ୍ତି, ତେବେ ତୁମେ ତାଙ୍କୁ ଲକ୍ଷ୍ୟ କର ! ହେଇ ଜଳପାତ୍ର ଭିତରକୁ ଖାଦ୍ୟ ପକାଇ ଦିଆଗଲା । ମାଛଟି ତତ୍‌କ୍ଷଣାତ୍ ଖାଦ୍ୟ ଆଡ଼କୁ ଗତି କଲା । ତା'ପରେ ନିଜର ଡେଣାକୁ ସଂକୁଚିତ କରି ହଠାତ୍ ଅଟକିଗଲା ଓ କେତେ ଥର ଝାଡ଼ିଝୁଡ଼ି ହୋଇ ପୁଣି ଖାଦ୍ୟ ଆଡ଼କୁ ଆଗେଇଲା । ମାଛର ଏଭଳି ବ୍ୟବହାରର କାରଣ ନୁହେଁ, ଯେ ତା'ର ପେଟ ଭରି ଯାଇଛି । ଭୋକରେ ମରି ଯାଉଥିଲେ ମଧ୍ୟ, ଖାଦ୍ୟ ଦେଖିଲେ ମାଛ ପ୍ରଥମେ ନାଚେ ଏବଂ ପରେ ଯାଇ ଖାଦ୍ୟକୁ ଛୁଏଁ । ଏହା ହେଲା ତା'ର ଅଭ୍ୟାସ – ଖାଦ୍ୟ ଖାଇବା ପୂର୍ବରୁ ମାଛ ନାଚ କରି ତା'ର ସାଥୀମାନଙ୍କୁ ଜଣାଇ ଦିଏ ଯେ, "ମୋତେ ଖାଦ୍ୟ ମିଳି ଯାଇଛି – ମୁଁ ନାଚୁଛି !"

## "ମୁଁ ତମକୁ ଭଲପାଏଁ – ମୁଁ ନାଚୁଛି !"

ବଗୁଲୀଟି ଥିଲା ଦେଖିବାକୁ ସୁନ୍ଦରୀ ଓ ତନୁପାତଳୀ । ବଗ ତାକୁ ଲକ୍ଷ୍ୟ କରିଥିଲା ।

ଠିକ୍ ସେହିଭଳି, ବଗୁଲୀ ମଧ୍ୟ ବଗଟିର ଶକ୍ତ ସୁନ୍ଦର ଦେହକୁ ଲକ୍ଷ୍ୟ କରିଥିଲା ।

"ଦେହଟା ସାରା ଧଳା ହୋଇଥିଲେ ମଧ୍ୟ ସେ ଖୁବ୍ ସୁନ୍ଦରୀ", ବଗ ଚିନ୍ତା କଲା । "ଦେହଟା ସାରା କଳା ହୋଇଥିଲେ ମଧ୍ୟ ସେ ଖୁବ୍ ସୁନ୍ଦର", ଭାବିଲା ବିଗୁଲୀ । ସେମାନଙ୍କ ମଧ୍ୟରେ ବନ୍ଧୁତା ହେଲା । ବୋଧହୁଏ ସେମାନେ ପରସ୍ପରକୁ ଭଲ ପାଇବାକୁ ଲାଗିଲେ । ଏକାଠି ସର୍ବଦା ସମୟ ବିତାଇବା ପରେ ଶେଷରେ ସେମାନେ ଘରଟିଏ କରିବାକୁ ସ୍ଥିର କଲେ । ସ୍ଥିର କଲେ ଯେ, ସେମାନଙ୍କର ପିଲାଛୁଆଙ୍କୁ ଧରି ଏକାଠି ରହିବେ । କିନ୍ତୁ ଏକ ଦୁଃଖର ଘଟଣା ଘଟିଲା । ଯେତେବେଳେ ଘର ତିଆରି ସରିଗଲା କାଳିଆ ବଗଟି ଧଳା ବଗୁଲୀକୁ ଘରକୁ

ଡାକିଲ । ମାତ୍ର ସେ ଗଲ ନାହିଁ । "କାହିଁକି ସେ ଆସୁ ନାହିଁ ?" ବଗ ଭାବିଲ, "ହୁଏତ ମୋତେ ଆଉ ସେ ଭଲ ପାଉ ନାହିଁ ।"

ବଗୁଲୀଟି ତା ଆଡ଼କୁ ଅନାଇଁ ଭାବୁଥିଲ, "ସେ କାହିଁକି ମୋତେ ଡାକୁ ନାହିଁ ? ବୋଧ ହୁଏ ଆଉ ଭଲ ପାଉ ନାହିଁ ?"

ମାତ୍ର ସେ ତାକୁ ପୂର୍ବପରି ଭଲ ପାଉଛି ଓ ଘରକୁ ଡାକିଛି ମଧ୍ୟ, କିନ୍ତୁ ବଗୁଲୀ ଯାଇ ନାହିଁ । ଏହା ପରେ ସେମାନଙ୍କୁ ପରସ୍ପରଠାରୁ ଦୂରେଇ ଯିବାକୁ ପଡ଼ିଲ । ପରସ୍ପରକୁ ସେମାନେ ବୁଝି ପାରିଲେ ନାହିଁ, କାରଣ ବିଭିନ୍ନ ଭାଷାରେ କଥା ହେଉଥିଲେ ।

ପ୍ରକୃତରେ ସେମାନେ ଏ ବିଷୟରେ କେବେ ଚିନ୍ତା କରି ନଥିଲେ କିମ୍ବା କଥା ହୋଇ ନଥିଲେ, କାରଣ ସେମାନେ ଥିଲେ ଭିନ୍ନ ଜାତିର ଦୁଇଟି କାଳିଆ ଓ ଧଳା ବଗ । କେବେ ଚିନ୍ତା କରିନଥିଲେ ଓ କଥା କହିନଥିଲେ ମଧ୍ୟ, ଏହି ଭଳି ଘଟିଗଲ ।

ପ୍ରଥମେ ସବୁ କଥା ଭଲ ଥିଲ । ହଠାତ୍ କାଳିଆ ବଗଟି ଧଳା ବଗୁଲୀକୁ ଘରକୁ ଡାକିଲ । କାଳିଆ ବଗ ବଗୁଲୀକୁ ବସାକୁ ଡାକିଲେ ଯେଉଁ ସବୁ ନିୟମ ପାଳନ କରେ, ସେ ସେହି ନିୟମ ପାଳନ କରିଥିଲ : ଅନେକ ସମୟ ଧରି ମୁଣ୍ଡ ଟୁଙ୍ଗାରି ସେ ତାକୁ ଡାକିଥିଲ – ଏପରିକି ସାଧାରଣତଃ ଯେପରି କରାଯାଏ ତା'ଠାରୁ ଅଧିକ ସମୟ ଧରି ଡାକିଥିଲ – ହେଲେ ଧଳା ବଗୁଲୀଟି ତାହା ବୁଝି ପାରି ନଥିଲା । ସେ ଅନ୍ୟ ଏକ ଢଙ୍ଗରେ ନିମନ୍ତ୍ରଣ ଅପେକ୍ଷା କରୁଥିଲ : ଧଳା ବଗ ତା'ର ବଗୁଲୀକୁ ଥଣ୍ଟର ଫାଙ୍କି ଦୁଇଟିକୁ ପାକୁପାକୁ କରି ବସାକୁ ନିମନ୍ତ୍ରଣ କରିଥାଏ । ବଗ ବଗୁଲୀକୁ ବା ବଗୁଲୀ ବଗକୁ ବୁଝି ପାରିଲ ନାହିଁ । ତେଣୁ ସେମାନଙ୍କୁ ପରସ୍ପରଠାରୁ ଦୂରେଇ ଯିବାକୁ ପଡ଼ିଲ । ଅବଶ୍ୟ ସେମାନେ ପ୍ରେମ କଥା ଚିନ୍ତା କରି ନଥିଲେ । ମଣିଷ ମନରେ ଯେପରି ପ୍ରେମ ଭାବ ଜନ୍ମେ, ଚଢ଼େଇମାନଙ୍କ ମନରେ ସେପରି ହୁଏ ନାହିଁ । ସେ ଅନୁଭୂତି ସେମାନଙ୍କୁ ଜଣା ନାହିଁ । ହଜାର ହଜାର ବର୍ଷ ଧରି ବଗ ବଗୁଲୀ ଯେପରି ବ୍ୟବହାର କରୁଥିଲେ ସେମାନେ ସେହିପରି ହିଁ ବ୍ୟବହାର କଲେ । କାଳିଆ ବଗଟି ତା ଢଙ୍ଗରେ ଏବଂ ବଗୁଲୀଟି ଧଳା ବଗୁଲୀର ଢଙ୍ଗରେ ବ୍ୟବହାର କଲ । ଏହି ବଗମାନଙ୍କର ବ୍ୟବହାର ଭିନ୍ନ, ସେମାନେ ଭିନ୍ନ ଭିନ୍ନ ଭାଷାରେ କଥାବାର୍ତ୍ତା କରନ୍ତି ।



"ସେମେଲ" ପ୍ରଜାପତି

ବସନ୍ତ ଋତୁରେ ତୁମେ ବୋଧହୁଏ ଧଳା କୋବି ପ୍ରଜାପତିକୁ ଦେଖିଥିବ । ସେମାନେ ବେଳେବେଳେ ଏକା ତ ଆଉ କେତେବେଳେ ଯୋଡ଼ି ଯୋଡ଼ି କିମ୍ବା ତିନିତିନିଟି ହୋଇ ଏକାଠି ଉଡ଼ନ୍ତି । ଏକାଠି ଉଡ଼ିଲ ବେଳେ ସେମାନେ ଡେଣା ହଲଇ ପାଖାପାଖି ହୋଇ ଉଡ଼ନ୍ତି । ଗୋଟିଏ ପ୍ରଜାପତି ଉପରକୁ ଉଡ଼ିଯାଏ ତ ଅନ୍ୟଟି ହଠାତ୍ ତା ଉପରକୁ ଉଡ଼ି ପଳାଏ । ସେମାନେ ଯେ କେବଳ ଏପରି ଖେଳନ୍ତି ତା ନୁହେଁ, କଥାବାର୍ତ୍ତା ମଧ୍ୟ ହୁଅନ୍ତି । କେତେବେଳେ ମନ ଦେଇ ଲକ୍ଷ୍ୟ କର : ସାଧାରଣତଃ ପ୍ରଜାପତି ଗଛ ପତ୍ର ଉପରେ ପ୍ରାୟ ବସେ, ମାତ୍ର ଏହି ଦୁଇତିନିଟି ଧଳା ପ୍ରଜାପତି କେବେ କେଉଁଠି ନବସି ସର୍ବଦା ଉଡ଼ି ବୁଲୁଥାଆନ୍ତି । ଶେଷରେ ଅବଶ୍ୟ ସେମାନେ କେଉଁଠି ନା କେଉଁଠି ବସିବେ, ମାତ୍ର ଉଡ଼ିଲ ବେଳେ କଥାବାର୍ତ୍ତା କରିବାକୁ ସେମାନେ ବେଶି ପସନ୍ଦ କରନ୍ତି ।

ଜୁଲଇ ମାସର ଶେଷ ବେଳକୁ ଉଡ଼ୁଥିବା "ସେମେଲ" ପ୍ରଜାପତିଟି ଭୂଇଁ ଉପରେ ବସି ନିଜର "ପ୍ରେମ ବ୍ୟାଖ୍ୟା" କରିବା ପସନ୍ଦ କରେ ।

ପୁରୁଷ ପ୍ରଜାପତି ସ୍ତ୍ରୀ ପ୍ରଜାପତିର ଆବିର୍ଭାବକୁ ଅପେକ୍ଷା କରେ । ଅନେକ ସମୟ ପର୍ଯ୍ୟନ୍ତ ଧୈର୍ଯ୍ୟର ସହ ଅପେକ୍ଷା କରେ । ଯେତେବେଳେ ସ୍ତ୍ରୀ ପ୍ରଜାପତିର ଆବିର୍ଭାବ ହୁଏ, ତତ୍କ୍ଷଣାତ୍ ଯାଇ ତାକୁ ଦେଖା କରେ । ପୁରୁଷ ପ୍ରଜାପତିକୁ ଦେଖି, ସ୍ତ୍ରୀ ପ୍ରଜାପତିଟି ଉଡ଼ିଆସି ଭୂଇଁରେ ବସେ । ପୁରୁଷ ପ୍ରଜାପତି ସ୍ତ୍ରୀ ପ୍ରଜାପତିଟିର ପାଖକୁ ଲଗି ଯାଇ ସରାଗ ଦେଖାଇ ହୁଏ । ଡେଣା ଓ ନିଶ ହଲଇ ସ୍ତ୍ରୀ ପ୍ରଜାପତିଟିର ଆଗରେ ଠିଆ ହୁଏ । ତା'ପରେ ଡେଣା ଯୋଡ଼ି ନିଜର ସୌନ୍ଦର୍ଯ୍ୟ ଦେଖାଇ ହୁଏ । ପୁଣିଥରେ ସେହି ପରି ଡେଣା ଓ ନିଶ ହଲଏ । ତା'ପରେ ନିଜର ସୁନ୍ଦର ଚିତ୍ର ବିଚିତ୍ର ଡେଣାକୁ ବିଛାଇ ଦେଇ ସ୍ତ୍ରୀ ପ୍ରଜାପତିର ଆଗରେ ଆଣ୍ଠେଇ ଅଭ୍ୟର୍ଥନା







ୁଆମାନେ

ଭଙ୍ଗିରେ ଛିଡ଼ା ହୋଇ ସତେ ଯେପରି କହୁଛି – "ମୁଁ ତୋ ସେବାରେ" । ତା'ପରେ ସ୍ତ୍ରୀ ପ୍ରଜାପତିଟି ତା'ର ନିଶ ପୁରୁଷ ପ୍ରଜାପତି ଆଡ଼କୁ ବଢ଼ାଇ ଦିଏ । ସେହିପରି ଆଣ୍ଠେଇ ରହି ପୁରୁଷ ପ୍ରଜାପତି ତା ସ୍ତ୍ରୀ ସାଥୀର ନିଶ ଦୁଇଟିକୁ ନିଜର ଡେଣା ମଧ୍ୟରେ ଘଷି ଉପରକୁ ଉଠାଏ । ଏଥିରୁ ବୁଝା ପଡ଼େ ଯେ, ସେମାନଙ୍କ ମଧ୍ୟରେ ପ୍ରେମ ବିନିମୟ ହେଲ । ସତେ ଯେମିତି ଖୁସି ମନରେ ପାଗଳ ହୋଇ "ବର" ପ୍ରଜାପତିଟି ଉଠି ପଡ଼ି ନାଚିବାକୁ ବାହାରେ : ଦ୍ରୁତ ଗତିରେ ନିଜର ଗୋଡ଼ ହଲଇ "କନ୍ୟା" ପ୍ରଜାପତିର ଚାରିପଟେ ବୁଲେ ।

ବେଳେବେଳେ ପୁରୁଷ "ସେମେଲ" ପ୍ରଜାପତିମାନେ ଠକି ଯାଆନ୍ତି : ପବନରେ ପଡ଼ୁଥିବା ପତ୍ରକୁ ପ୍ରଜାପତି ଭାବି କେତେବେଳେ ଅନ୍ୟ ଜାତିର ସ୍ତ୍ରୀ ପ୍ରଜାପତି ପଛରେ ଉଡ଼ି ଚାଲନ୍ତି । ବଗ ବଗୁଲୀ କ୍ଷେତ୍ରରେ ଯେପରି ଦୁଃଖ ଘଟଣା ଘଟିଥିଲ ପ୍ରଜାପତିଙ୍କ କ୍ଷେତ୍ରରେ ସେପରି ହୁଏ ନାହିଁ : ଗୋଟିଏ ଜାତିର ସ୍ତ୍ରୀ ପ୍ରଜାପତି ଅନ୍ୟ ଜାତିର ପୁରୁଷ ପ୍ରଜାପତିଠାରୁ ସୁଆଗକୁ ଗ୍ରହଣ ନକରି ଉଡ଼ିଯାଏ । ଅବଶ୍ୟ ପ୍ରଜାପତିଙ୍କ ଲଗି ଏହା ସେତେ ଗୁରୁତର ଠକା ନୁହେଁ, ମାତ୍ର ବୈଜ୍ଞାନିକମାନଙ୍କ ପାଇଁ ଏହି ଠକିବା ଏକ ଗୁରୁତ୍ୱପୂର୍ଣ୍ଣ ପ୍ରହେଳିକା ରୂପେ ପରିଣତ ହେଲ । ପ୍ରଜାପତି କାହିଁକି ଶୁଖିଲ ପତ୍ର, ଛୋଟ ଛୋଟ କୀଟ ପତଙ୍ଗ ଓ ଏପରିକି ଥ୍ରାସ୍ ଭଳି ବଡ଼ ଚଢ଼େଇଙ୍କ ପଛରେ ଧାଏଁ ? ତା'ର ଆଶ୍ଚର୍ଯ୍ୟ ଧରଣର ଘ୍ରାଣଶକ୍ତି କ'ଣ ତାକୁ କିଛି କହେ ନାହିଁ ? ଜଣା ପଡ଼ିଲ ଯେ, ଏହି କ୍ଷେତ୍ରରେ ପ୍ରଜାପତିର ଘ୍ରାଣଶକ୍ତି କାର୍ଯ୍ୟ କରେ ନାହିଁ ।

ଘରଚଟିଆମାନେ





ଆଉ ତା'ର ଆଖି ? ପୁରୁଷ ପ୍ରଜାପତି କ'ଣ ଦେଖି ପାରୁ ନାହିଁ ତା ଆଗରେ ପତ୍ରଟାଏ, କିମ୍ବା ଚଢ଼େଇ ବା ପ୍ରଜାପତି ଉଡ଼ୁଛି ?

ସମୁଦ୍ର ଘୋଡ଼ାମାନେ

ଏହି କଥା ଜାଣିବା ପାଇଁ ବୈଜ୍ଞାନିକମାନେ ପଶ୍ଚଶ ହଜାର ପର୍ଯ୍ୟନ୍ତ ପରୀକ୍ଷା କଲେ । ବିଭିନ୍ନ ପ୍ରକାର କୃତ୍ରିମ ପ୍ରଜାପତି ତିଆରି କରି ଓ ଅନ୍ୟାନ୍ୟ କୀଟ ପତଙ୍ଗ ଏବଂ ବିଭିନ୍ନ ପ୍ରକାରର କଣ୍ଢେଇ ଗଢ଼ି ପୁରୁଷ ପ୍ରଜାପତିକୁ ଠକିବାକୁ ଲଗିଲେ । ହାତଗଢ଼ା ପ୍ରଜାପତିଗୁଡ଼ିକୁ ସତ ପ୍ରଜାପତି ପରି ରଙ୍ଗ କରି ଦିଆଗଲ, କେତେକ ହାତଗଢ଼ା ପ୍ରଜାପତିଙ୍କୁ ଆକାରରେ ଛୋଟ ଓ ଅନ୍ୟ କେତେକଙ୍କୁ ବଡ଼ କରି ଦିଆଗଲ । କିନ୍ତୁ ପୁରୁଷ ପ୍ରଜାପତିକୁ କୌଣସି ରଙ୍ଗ ବା କୃତ୍ରିମ ପ୍ରଜାପତିର ଆକାର ଧ୍ୟାନ ଆକର୍ଷଣ କଲ ନାହିଁ । ବରଂ ଠିକ୍ ଓଲଟା ବଡ଼ ବଡ଼ ଓ ଗାଢ଼ ରଙ୍ଗର

କୃତ୍ରିମ ପ୍ରଜାପତି ପଛରେ ସେମାନେ ଆଗ୍ରହ ସହିତ ଗୋଡ଼ାଇବାକୁ ଲାଗିଲେ । ଝୋଇପାରେ ଯେ ଗାଢ଼ ଓ ବଡ଼ ପ୍ରଜାପତିଙ୍କୁ ସେମାନେ ଭଲ ରୂପେ ଦେଖିପାରୁ ଥିଲେ । ପୁରୁଷ ପ୍ରଜାପତି ପ୍ରକୃତ ପ୍ରଜାପତି ପଛରେ ଯେପରି ଦୌଡ଼େ, ସେହିପରି ଖୁସିରେ ଗୋଲକାର, ତିନି କୋଣିଆ ଓ ଚାରି କୋଣିଆ କଣ୍ଢେଇଙ୍କ ପଛରେ ମଧ୍ୟ ଧାଇଁବାକୁ ଲାଗିଲା । ଏପରିକି ପ୍ରକୃତ ପ୍ରଜାପତି ପ୍ରତି ବେଳେବେଳେ ଦୃଷ୍ଟି ଦେଉନଥିଲା । କଥା କ'ଣ ? ଜଣାଗଲା ପୁରୁଷ ପ୍ରଜାପତି ଲାଗି ଗୋଟିଏ ଜିନିଷ ଲୋଡ଼ା ଥିଲା । ତାହା ହେଲା ନାଚର ଭଙ୍ଗି ।

ପ୍ରଜାପତି ହେଲା ହାଲୁକା ଓ ହସ ଖୁସିଆ ଜୀବ । ନାଚ କରିବା ସେମାନଙ୍କ ପକ୍ଷେ ସ୍ୱାଭାବିକ କଥା । ମାତ୍ର କୁଣ୍ଢା ମୁହାଁ ବୁଢ଼ିଆଣୀଠାରୁ ଚଞ୍ଚଳତା ଆଶା କରିବା କଷ୍ଟକର । କିନ୍ତୁ ଜଣାଗଲା ଯେ, ସେମାନେ ମଧ୍ୟ ଦକ୍ଷ ନର୍ତ୍ତକ ଓ ଖୁବ୍ ଭଲ ନାଚନ୍ତି । ସେମାନଙ୍କର ଆଠଟି ଗୋଡ଼ରେ କ'ଣ ନାଚ କରି ହେବ ! ପୁଣି ଖେଳିବା ଓ ଡେଇଁବା ମଧ୍ୟ ସମ୍ଭବ । ବୁଢ଼ିଆଣୀମାନେ ଏହି ଭଳି ଚେଷ୍ଟା କରନ୍ତି । ବିଭିନ୍ନ ପ୍ରକାର ବୁଢ଼ିଆଣୀ ଭିନ୍ନ ଭିନ୍ନ ଭଙ୍ଗୀରେ ନାଚନ୍ତି, କିନ୍ତୁ ସମସ୍ତଙ୍କର ନାଚ ଅତି ଭଲ !

ଚେସ୍ ଘୋଡ଼ା ଭଳି ଦେଖିବାକୁ ଏକ ସାମୁଦ୍ରିକ ମାଛ ଅଛି, ଯାହାକୁ ସମୁଦ୍ର ଘୋଡ଼ା କୁହାଯାଏ, ସେମାନେ ମଧ୍ୟ "ନୃତ୍ୟ ଭାଷା"ରେ (ନାଚ କରିବା ଅବସ୍ଥାରେ) କଥା ହୁଅନ୍ତି । ଏହି ସମୁଦ୍ର ଘୋଡ଼ାଟି ତା'ର ସ୍ତ୍ରୀ ସାଥୀକୁ ଦେଖିବା ମାତ୍ରେ ଲାଜକୁଳା ହୋଇ ତା ପାଖକୁ ପହଁରି ଯାଏ ଓ ଦୂରରୁ ମୁଣ୍ଡ ଟୁଙ୍ଗାରିବା ଆରମ୍ଭ କରେ । ବେଳେବେଳେ ଗର୍ବରେ ତା'ର ସ୍ତ୍ରୀ ସାଥୀ ସିଧାସଳଖ ପହଁରି ପଳାଏ, କିନ୍ତୁ ଯଦି ପୁରୁଷ ମାଛଟି ତା'ର ପସନ୍ଦ ହୁଏ, ତେବେ ସେ ନିର୍ଦ୍ଦିଷ୍ଟ ସଙ୍କେତ ଦେଇ, ତାହା ଜଣାଇ ଦିଏ । ତା'ପରେ ସେମାନେ ନାଚିବାରେ ଲାଗନ୍ତି । ସତ କହିବାକୁ ଗଲେ, ଆରମ୍ଭ ହୁଏ ଅନେକ ପ୍ରକାରର ନାଚ । ପ୍ରଥମେ "କୋୟାଡ୍ରିଲ୍" ନାଚ ।



ଡାର୍ଶିଷ ମାଛିମାନେ



ବୁଢ଼ିଆଣୀମାନେ

ଖଞ୍ଚିରମାନେ



ସମୁଦ୍ର ଘୋଡ଼ା ଖୁବ୍ ଆସ୍ତେ ଆସ୍ତେ ପରସ୍ପର ପାଖକୁ ଲାଗି ଯାଆନ୍ତି, ଟିକିଏ ମୁଣ୍ଡ ଟୁଙ୍ଗାରି ପୁଣି ଦୂରେଇ ଯାଆନ୍ତି । ତା'ପରେ ପୁଣି ଥରେ ପରସ୍ପରର ନିକଟବର୍ତ୍ତୀ ହୁଅନ୍ତି ଓ ପୁଣି ସେହିପରି ମୁଣ୍ଡ ଟୁଙ୍ଗାରି ନାଚି ଦୂରେଇ ଯାଆନ୍ତି । ଏହିପରି ସେମାନଙ୍କର ନାଚ ଦୀର୍ଘ ସମୟ ଧରି ଚାଲେ, ବେଳେବେଳେ ଲଗାତର କେତେକ ଦିନ ଧରି ଚାଲିଥାଏ ।

"କୋୟାଡ୍ରିଲ୍" ନାଚ ପରେ ଆରମ୍ଭ ହୁଏ ବଲ୍ ନାଚ । ପ୍ରକୃତ ନର୍ତ୍ତକ ନର୍ତ୍ତକୀ ଭଳି ମାଛ ଦୁଇଟି ସଙ୍ଗୀତ ବିନା ନାଚନ୍ତି ।

କିନ୍ତୁ ସବୁଠାରୁ ଧୈର୍ଯ୍ୟଶୀଳ ନର୍ତ୍ତକ ଓ ଭଦ୍ର ପ୍ରେମିକ ହେଉଛନ୍ତି ଚଢ଼େଇ ।

ବୋଧହୁଏ ତୁମକୁ କେବେ ଦେଖିବାକୁ ସୁଯୋଗ ମିଳିଥିଲା : ଯେତେବେଳେ ଫେବୃଆରୀ ମାସରେ ବାହାରେ ଥଣ୍ଡା ଥିବା ସମୟରେ ଓ ବରଫ ପଡ଼ିଥିବା ବେଳେ ନିର୍ମଳ ଆକାଶରେ ସୂର୍ଯ୍ୟ କିରଣ ଝଲସୁଥିବା ସମୟରେ କୁଆ ନାଚ କରନ୍ତି । ଗୋଟିଏ କୁଆ ଉପରକୁ ଉଡ଼ି ଯାଉ ଯାଉ ତଳକୁ ଖସିପଡ଼େ ତ ଆଉ ଗୋଟିଏ କୁଆ ସେହିପରି କରେ । ବେଳେବେଳେ ସେମାନେ ଏକାଠି ଉପରକୁ ଉଡ଼ନ୍ତି ଏବଂ ଏକାଠି ତଳକୁ ଖସନ୍ତି । ଏହା ହେଉଛି କୁଆମାନଙ୍କର ବସନ୍ତକାଳୀନ ଖେଳ । ସେମାନେ କହିବାକୁ ଚାହାନ୍ତି ଯେ, ଖୁବ୍ ଥଣ୍ଡା ପଡ଼ିଥିଲେ ବି ବସନ୍ତ ଆସିବାକୁ ଆଉ ଡେରି ନାହିଁ । ଘରଚଟିଆ ମଧ୍ୟ ଖୁବ୍ ଭଦ୍ର ପ୍ରେମିକ । ବସନ୍ତ ଋତୁରେ କେବେ ଘରଚଟିଆଙ୍କୁ ଲକ୍ଷ୍ୟ କଲେ, ତୁମେ ନିଶ୍ଚୟ ଦେଖିବାକୁ ପାଇବ, କିପରି ପୁରୁଷ ଚଢ଼େଇଟି ତା'ର ଗର୍ବୀ ସ୍ତ୍ରୀ ସାଥୀ ଆଗରେ ନିଜର ଡେଣା ଓ ଲାଞ୍ଜକୁ ପଙ୍ଖା ପରି ଟେକି ନାଚେ ।

ପକ୍ଷୀମାନେ ଭୂଇଁ ଉପରେ ଓ ଆକାଶରେ ନାଚନ୍ତି । କେତେକ ପକ୍ଷୀ ନାଚ ନଜାଣିଥିବା ଚଢ଼େଇଙ୍କ ଭଳି ଦେଖାଯାଆନ୍ତି ଏବଂ ଅନ୍ୟ କେତେକ ପ୍ରକୃତ ବ୍ୟାଲେ ନର୍ତ୍ତକଙ୍କ ପରି ଦେଖାଯାଆନ୍ତି । ସେମାନେ ବୁଲନ୍ତି ଓ ଦୌଡ଼ନ୍ତି । କେତେବେଳେ ଗୋଡ଼ ଉପରକୁ ଟେକନ୍ତି ତ ଆଉ କେତେବେଳେ ନିଜର ସ୍ତ୍ରୀ ସାଥୀ ଆଗରେ ଆଣ୍ଠେଇ ପଡ଼ନ୍ତି, କେତେବେଳେ ହଠାତ୍ ଚକ୍କର କାଟନ୍ତି କିମ୍ବା ଗୋଟିଏ ସ୍ଥାନରେ ଅଟକି ଯାଆନ୍ତି । ପକ୍ଷୀମାନେ ଅନେକ ସମୟରେ ଯୋଡ଼ି ଯୋଡ଼ି ହୋଇ କିମ୍ବା ଦଳବଦ୍ଧ ହୋଇ ନାଚନ୍ତି । ଏହି ସବୁ ନାଚର ଅର୍ଥ ହେଲା ନିଜର "ପ୍ରେମ ପ୍ରକାଶ କରିବା" ଏବଂ ନିଜର "ହସ୍ତ ଓ ହୃଦୟ" ଦାନ କରିବାର ପ୍ରସ୍ତାବ ଦେବା ।



ଆଡେଲି ପେନ୍‌ଗୁଇନ୍‌ମାନେ

## "ମୁଁ ତମକୁ ଭଲପାଏଁ ! ତମକୁ ଉପହାର ଦିଏଁ ..."

ନାଚ ହେଉଛି ପ୍ରେମ ପ୍ରକାଶ କରିବାର ଏକ ଉତ୍ତମ ମାଧ୍ୟମ । ମାତ୍ର ଏହା ଏକ ମାତ୍ର ମାଧ୍ୟମ ନୁହେଁ । ଅନେକ ଜୀବଜନ୍ତୁ ଉପହାର ସାହାଯ୍ୟରେ ନିଜ ମନର ଭାବ ପ୍ରକାଶ କରି ଥାଆନ୍ତି । ଉଦାହରଣ ସ୍ୱରୂପ, ବନ୍ୟ ଓଡ଼ଶ ଉଷ୍ଣ ମଣ୍ଡଳୀୟ ଜଙ୍ଗଲରେ ବାସ କରନ୍ତି । ପୁରୁଷ ବନ୍ୟ ଓଡ଼ଶ ନିଜ ସଙ୍ଗରେ ଗୋଟିଏ ରବର ଗଛର ମଞ୍ଜିକୁ ଧରି ବୁଲୁଥାଏ । ସ୍ତ୍ରୀ ସାଥୀକୁ ଦେଖିଲା ମାତ୍ରେ ଏହି ମଞ୍ଜିଟିକୁ ସେ ଯାଚେ ଓ ତାକୁ ଆପ୍ୟାୟିତ କରେ । (ଏହି ତୃଣଭୋଜୀ ଓଡ଼ଶ ଗଛ ପତ୍ର ଖାଇ ବଞ୍ଚନ୍ତି ।)

ଆମେରିକୀୟ ଚେରି ପକ୍ଷୀ



ତାଆଁସିଆ ମାଛିଙ୍କୁ ସେମାନଙ୍କର ଲମ୍ବ ଶୁଣ୍ଢ ଓ ଗୋଲ ମୁଣ୍ଡ ଦେଖି ଚିହ୍ନି ହୁଏ । ଏହି ଜାତିର ମାଛି ନିଜର ସଙ୍ଗୀ ପାଖକୁ ଉପହାର (ଛୋଟ ଛୋଟ ମାଛି ଓ ମଶା) ବିନା ଯିବାକୁ ସାହସ କରନ୍ତି ନାହିଁ । ବେଳେ ବେଳେ ସ୍ତ୍ରୀ ମାଛି କୌଣସି ଉପହାର ନମାଗି ଫୁଲ ମାଗିବସେ । ପୁରୁଷ ମାଛି ଏହା ପୂରଣ କରିବାକୁ ବାଧ୍ୟ ହୁଅନ୍ତି । ଅବଶ୍ୟ ଗୋଟାଏ ଫୁଲ ତୋଡ଼ା ଓ ପୂରା ଫୁଲଟିଏ ଉପହାର ଦେବା ସେମାନଙ୍କ ପକ୍ଷେ ସମ୍ଭବପର ନୁହେଁ । ତେଣୁ ସେମାନେ ଗୋଟିଏ ପାଖୁଡ଼ା ଉପହାର ଦେଇ ଥାଆନ୍ତି । (ପାଖୁଡ଼ାର ସଂଖ୍ୟାଟା ବଡ଼କଥା ନୁହେଁ, ମୂଲ୍ୟବାନ କଥା ହେଲା, ଧ୍ୟାନ ଦେବା ।)

ଏପରି କେତେକ କିଦିଆ କୀଟ ପତଙ୍ଗ ଅଛନ୍ତି, ଯେଉଁମାନେ ଯେକୌଣସି ଉପହାରକୁ ସର୍ବଦା କମ୍ ମନେ କରନ୍ତି – ସେମାନଙ୍କ ଲାଗି ଆହୁରି ଉପହାର ଲୋଡ଼ା ଏବଂ ଏହି ଉପହାରଟି ଭଲ ଭାବେ ବନ୍ଧା ଯାଇଥିବା ଦରକାର । ତେଣୁ ପୁରୁଷମାନଙ୍କୁ ନିଜ ଉପହାରକୁ ନିଜ ହାତ ବୁଣା ରେଶମର ଗୁଟିରେ ବାନ୍ଧିବାକୁ ପଡ଼େ । ଅବଶ୍ୟ କେତେକ କୀଟ ପତଙ୍ଗ ନିଜର ସ୍ତ୍ରୀ ସାଥୀକୁ ଉପହାର ବିନା ଖାଲି ଗୁଟି ବାନ୍ଧି



ଦେଇ ଦିଅନ୍ତି । କୀଟ ଜଗତରେ ମଧ୍ୟ ବଦମାସ୍ ଅଛନ୍ତି ! କେତେ ପ୍ରକାର ତାଆଁସିଆ ମାଛି, ଯଦି ଉପହାର ଗୁଟି ଚକ୍‌ଚକ୍ ଦିଶୁଥାଏ, ଭିତରେ କିଛି ନଥିଲେ ମଧ୍ୟ ତାକୁ ଆନନ୍ଦରେ ଗ୍ରହଣ କରନ୍ତି ।



କାରୁଲିଉ ପକ୍ଷୀମାନେ

ମାଈ ବୁଢ଼ିଆଣୀ ମଧ୍ୟ ନିଜର ପୁରୁଷଠାରୁ ଉପହାର ଦାବୀ କରେ । ସେମାନେ ଖୁବ୍ ବାସ୍ତବବାଦୀ । ଫୁଲ କିମ୍ବା ଖାଲି ରେଶମ ଗୁଟି ତାଙ୍କର ଦରକାର ନାହିଁ । ସେମାନେ ଚାହାନ୍ତି ମାଛି । ତେଣୁ ପୁରୁଷ ବୁଢ଼ିଆଣୀ ତା'ର ସ୍ତ୍ରୀ ସାଥୀ ପାଖକୁ ଗଲାବେଳେ ବୁଢ଼ିଆଣୀ ଜାଲରେ ବନ୍ଧା ଗୋଟିଏ ମାଛିକୁ ନେଇ ଯାଏ ।

ଉପହାର ଆଣିବାର ଅର୍ଥ ହେଲା–କଥାବାର୍ତ୍ତା କରିବା, ଯାହାକି ଉଭୟେ ଭଲ ଭାବେ ବୁଝି ପାରନ୍ତି । ମାଈ ବୁଢ଼ିଆଣୀଟି ପାଇଥିବା ମାଛିଟିକୁ ଗ୍ରହଣ କରି ଖାଇବାକୁ ଲାଗିଲେ । ଭାବ ବିନିମୟର ପ୍ରମାଣ ମିଳେ । ପୁରୁଷ ବୁଢ଼ିଆଣୀ ମାଛି ଉପହାର ଦେଇ ନଥିଲେ ମାଈ ବୁଢ଼ିଆଣୀ ତା ଆଡ଼କୁ ଅନାଇଁ ନଥାନ୍ତା । କାରଣ ସାଧାରଣତଃ ବୁଢ଼ିଆଣୀମାନେ ଚଲବୁଲ କରୁଥିବା କୌଣସି କୀଟକୁ ପାଇବାକୁ ଚାହାନ୍ତି ।

ଜୀବଜନ୍ତୁ ଅନେକ ସମୟରେ ଉପହାରକୁ ନିଜର ଭାଷା ରୂପେ ବ୍ୟବହାର କରି ଥାଆନ୍ତି ।

କେତେକ ଜାତୀୟ ପୁରୁଷ ଶଙ୍ଖଚିଲ (ଗାଙ୍ଗଚିଲ ଭଳି ଦେଖିବାକୁ) ନିଜର ସ୍ତ୍ରୀ ସାଥୀ ଖୋଜିବାକୁ ଯିବା ସମୟରେ ଗୋଟିଏ ମାଛକୁ ଥଣ୍ଟରେ ଧରି ବୁଲି ବାହାରେ । ନଈ କୂଳେ କୂଳେ ଘୁରିବୁଲି ସେ କୂଳରେ ବସିଥିବା ସବୁ ପକ୍ଷୀଙ୍କୁ ଲକ୍ଷ୍ୟ କରେ ଓ ନିଜର ପସନ୍ଦ, ଯୋଗ୍ୟ ସାଥୀକୁ ପାଇଗଲେ ତାହାକୁ ମାଛଟି ଦିଏ । ବେଳେବେଳେ ମାଈ ଶଙ୍ଖଚିଲ ମାଛଟି ଗ୍ରହଣ ନକରି ଗର୍ବରେ ଉପହାରକୁ ଅଗ୍ରାହ୍ୟ କରେ । ଏ ଭଳି ହେଲେ ଶଙ୍ଖଚିଲ ତା'ର ଉପହାର ମାଛଟିକୁ ଥଣ୍ଟରେ ଧରି ଆଗକୁ ଚାଲିଯାଏ । ତା'ର ଉପହାରଟିକୁ ଦୁଇତିନିଥର କେହି ଅଗ୍ରାହ୍ୟ କଲେ ମଧ୍ୟ ସେ ଖରାପ ଭାବେ ନାହିଁ । ସେ ଜାଣିଛି ଯେ, ଶୀଘ୍ର ହେଉ ବା ଡେରି ହେଉ କେହି ନା କେହି ତା'ର ଉପହାରଟିକୁ ଗ୍ରହଣ କରିବ । ଶେଷରେ ଠିକ୍ ସେଇଆ ଘଟେ : କୌଣସି ଗୋଟିଏ ମାଈ ଶଙ୍ଖଚିଲ ତା'ର ଉପହାରକୁ ଗ୍ରହଣ କରେ । ତା'ପରେ ସେମାନେ ମାଛଟିର ଦୁଇ କଡ଼କୁ ଧରି କିଛି ସମୟ ପାଇଁ ପାଖାପାଖି ବସନ୍ତି ।



ଉପହାର ରୂପେ ଆସିଥିବା ମାଛକୁ ମାଈ ଶଙ୍ଖଚିଲ କେବେ ଖାଏ ନାହିଁ – ଏହା ସେମାନଙ୍କ ଲାଗି ଖାଦ୍ୟର କାମ କରେ ନାହିଁ, ଏହା କଥାବାର୍ତ୍ତାର ସହାୟକ ।

ଉପହାର ମାଧ୍ୟମରେ କଥା ହେବାକୁ ହେଲେ କେବଳ ଖାଦ୍ୟ ପଦାର୍ଥ ଉପହାର ଦେବା ଦରକାର ନାହିଁ । ଉଦାହରଣ ସ୍ୱରୂପ ଗୋଡ଼ି, କିମ୍ବା କୁଟାକାଠି ମଧ୍ୟ ଉପହାର ଦିଆଯାଇ ପାରେ ଏବଂ କେତେକ ଚଢ଼େଇ ଏହାହିଁ କରି ଥାଆନ୍ତି ।

ଆଦେଲି ପୁରୁଷ ପେନ୍‌ଗୁଇନ୍ ନିଜର ସ୍ତ୍ରୀ ସାଥୀକୁ ଗୋଟିଏ ଗୋଡ଼ି ନଦେଇ ମେଞ୍ଚାଏ ଗୋଡ଼ି ଉପହାର ଦେଉଥାଏ । ବେଳେ ବେଳେ ମାଈ ପେନ୍‌ଗୁଇନ୍ ଏହାକୁ ଗ୍ରହଣ କରେ ନାହିଁ ଏବଂ ପୁରୁଷ ପେନ୍‌ଗୁଇନ୍ ଅନ୍ୟ ସାଥୀ ଖୋଜେ । ଗୋଡ଼ ପାଖରେ ମେଞ୍ଚାଏ ଗୋଡ଼ିକୁ ବିଛାଇ ଦେଇ ପୁରୁଷ ପେନ୍‌ଗୁଇନ୍ ତା'ର ସ୍ତ୍ରୀ ସାଥୀଠାରୁ ଉତ୍ତର ଅପେକ୍ଷା କରେ । ଯଦି ମାଈ ପେନ୍‌ଗୁଇନ୍ ଏହି ଉପହାର

ସ୍ୟାଟିନ୍ ପକ୍ଷୀ



ଆଗ୍ରହର ସହିତ ଗ୍ରହଣ କରେ, ତେବେ ଏହି ମେଞ୍ଚାଏ ପଥର ସେମାନଙ୍କ ଭବିଷ୍ୟତ୍ ଘରର ମୂଳଦୁଆ ଭାବେ ବ୍ୟବହାର ହୋଇଥାଏ ।

ଉତ୍ତରାଞ୍ଚଳରେ ବାସ କରୁଥିବା ରାଜହଂସ ଭଳି ଦେଖିବାକୁ ଏକ ଜାତୀୟ ପକ୍ଷୀ ପରସ୍ପରକୁ ଭେଟିଲେ ବେଳେ ଦଳରୁ କିଛି ଉପହାର ଦିଅନ୍ତି । ଆମେରିକୀୟ ଟେରି ପକ୍ଷୀ ପରସ୍ପରକୁ କୋଳି ଉପହାର ଦିଅନ୍ତି । କିନ୍ତୁ କୋଳିଟି ପାଇ ମାଈ ଚଢ଼େଇଟି ତାକୁ ଗିଳିଦେଇ ଓ ତା'ର ପୁରୁଷ ସାଙ୍ଗକୁ ଏକା ଛାଡ଼ି ଉଡ଼ି ଯାଇପାରେ । ମାତ୍ର ଅଣ୍ଡିରା ଚଢ଼େଇଟି ଯଦି ତା'ର ପସନ୍ଦ ହୁଏ, ତେବେ ମାଈ ଟେରି ପକ୍ଷୀ ନିଶ୍ଚୟ ଉପହାରକୁ ଫେରାଇ ଦିଏ । ପୁରୁଷ ପକ୍ଷୀ ପୁଣି ତାକୁ ସେହି କୋଳିଟି ଦିଏ ଓ ସ୍ତ୍ରୀ ଚଢ଼େଇଟି ପୁଣି ତାହା ଫେରାଇ ଦିଏ । ଏହିପରି ସେମାନଙ୍କ ମଧ୍ୟରେ କୋଳି ବିନିମୟ ଅନେକ ସମୟ ଧରି ଚାଲେ । ବେଳେବେଳେ ସେମାନଙ୍କର ଏହି କଥାବାର୍ତ୍ତା ଘଣ୍ଟାଏ, ଏପରିକି ଦୁଇ ଘଣ୍ଟା କାଳ ପର୍ଯ୍ୟନ୍ତ ଚାଲିଥାଏ ।

କିନ୍ତୁ, ପକ୍ଷୀମାନେ ସେମାନଙ୍କର "ବିବାହ"ର ଅନେକ ଦିନ ପରେ ମଧ୍ୟ ଉପହାର ଦେଇ ପରସ୍ପର ସହିତ କଥାବାର୍ତ୍ତା ହୁଅନ୍ତି । ମାତ୍ର ଏହି କଥାବାର୍ତ୍ତାର ଅର୍ଥ ଭିନ୍ନ ।

କେତେକ ଜାତୀୟ ଗାଙ୍ଗଚିଲ ଓ ଲିପ୍ତପଦ ସାମୁଦ୍ରିକ ପକ୍ଷୀ ବସାକୁ ଫେରିଲେ ବେଳେ ପରସ୍ପର ପାଇଁ ଦଳ କିମ୍ବା ଘାସ କେରାଏ ଥଣ୍ଟରେ ଆଣି ଥାଆନ୍ତି । ଏଭଳି ଜିନିଷ ସାଙ୍ଗରେ ନଆଣିଲେ, ପୁରୁଷ ପକ୍ଷୀ ସ୍ତ୍ରୀକୁ କିମ୍ବା ସ୍ତ୍ରୀ ପକ୍ଷୀ ପୁରୁଷକୁ ଅଣ୍ଡା ଥିବା ବସାକୁ ଯିବା ପାଇଁ ଅନୁମତି ଦିଏ ନାହିଁ ।

ଅଣ୍ଡିରା କାର୍‌ଲିଉ ପକ୍ଷୀ (ବଡ଼ ଆଖିଆ ବଗ ଜାତୀୟ ପକ୍ଷୀ) ନିଜ ବସାକୁ ଉଡ଼ି ଆସିବା ପରେ ତା'ର ସ୍ତ୍ରୀ ପକ୍ଷୀ ପାଇଁ ସଙ୍ଗରେ ପଥର କିମ୍ବା କାଠି ଖଣ୍ଡେ ଆଣିଥାଏ ଓ ଦେଲେ ବେଳେ ନତ ମସ୍ତକ ହୋଇ ଦିଏ । ସ୍ତ୍ରୀ ପକ୍ଷୀଟି ଏହି ଉପହାର ଗ୍ରହଣ କରିବା ଦରକାର । ଯେ ପର୍ଯ୍ୟନ୍ତ ଉପହାର ଗ୍ରହଣ ନକରିଛି ସେ ପର୍ଯ୍ୟନ୍ତ ପୁରୁଷ ପକ୍ଷୀଟି ନତ ମସ୍ତକ ହୋଇ ଠିଆ ହୋଇ ଥାଏ ।

ଏହି ଭଳି ପକ୍ଷୀ କଥାର ଅର୍ଥ ଆଜି ପର୍ଯ୍ୟନ୍ତ ସ୍ପଷ୍ଟରୂପେ ଜଣା ପଡ଼ି ନାହିଁ । ଏକଥା ନିଃସନ୍ଦେହରେ କୁହାଯାଇ ପାରେ ଯେ, ଏହି କଥାବାର୍ତ୍ତାର ଅର୍ଥ ନିଶ୍ଚୟ ରହିଛି । କିନ୍ତୁ ଅଷ୍ଟ୍ରେଲିଆରେ ରହୁଥିବା ସ୍ୟାଟିନ୍ ପକ୍ଷୀ ତା'ର ସ୍ତ୍ରୀ ସାଙ୍ଗକୁ ଦେଉଥିବା ମୂଲ୍ୟବାନ ଉପହାର ତୁଳନାରେ, ଆଡେଲି ପେନ୍‌ଗୁଇନ୍‌ର ମେଞ୍ଚାଏ



ମହିଷୀ

ପଥର, କିମ୍ବା କାର୍‌ଲିଉ ପକ୍ଷୀର ପଥର ଏବଂ କୁଟାକାଠି ଦାନ କିଛି ନୁହେଁ !

ଅନେକ ଜାତିର ସ୍ୟାଟିନ୍ ପକ୍ଷୀ ଦେଖିବାକୁ ମିଳନ୍ତି । ସେମାନଙ୍କର ରଙ୍ଗ ଓ ଆକାର ଭିନ୍ନ ଭିନ୍ନ ହୋଇଥିଲେ ମଧ୍ୟ, ସମସ୍ତଙ୍କଠାରେ ଗୋଟିଏ ବିଶେଷତ୍ୱ ଦେଖିବାକୁ ମିଳେ, ଯାହାକି ଲୋକମାନଙ୍କୁ ବିସ୍ମିତ ଓ ବିଚଳିତ କରିଥାଏ, ଓ ଅନେକ ଆନୁମାନିକ କଳ୍ପନା ଓ ହାଇପୋଥେସସ୍ ମଣିଷ ମନରେ ଜନ୍ମେ । କଥା ହେଲା ଏହି ପୁରୁଷ ପକ୍ଷୀମାନେ କୁଡ଼ିଆ ବା ଛପରଥିବା ବସା ତିଆରି କରନ୍ତି ଏବଂ ଅନେକ ଅସାଧାରଣ ଜିନିଷ ଘରେ ସଂଗ୍ରହ କରି ରଖନ୍ତି । ଏହି ଜିନିଷ ସବୁ ଉପହାର ନିଜ ସ୍ତ୍ରୀକୁ ଦେଇ ସେମାନେ ତା'ର ହୃଦୟ ଜୟ କରନ୍ତି ।

ନିଜର ଘର ତୋଳିବା ବା ବସାକୁ ସୁସଜ୍ଜିତ କରିବା ଲାଗି ସ୍ୟାଟିନ୍ ପକ୍ଷୀ ଯେତେ ପରିଶ୍ରମ କରେ, ସେଥିରୁ ଜଣାଯାଏ ଯେ, କଥାବାର୍ତ୍ତା କରିବାଟା ପକ୍ଷୀମାନଙ୍କ ଜୀବନରେ ଅତି ଗୁରୁତ୍ୱପୂର୍ଣ୍ଣ ଘଟଣା । ଏହା ସେମାନଙ୍କ ଜୀବନରେ ଠିକ୍ ଅନ୍ୟାନ୍ୟ ଜୀବଜନ୍ତୁଙ୍କ ଜୀବନରେ ଘଟିଲା ଭଳି ଘଟିଥାଏ ।

# "ଭଲଦଶା ଅଛି ଯଦି, ପଳାଇ ଯାଅ !"



ପାହୁଡ଼ା ପୋକ

ବନ୍ୟ ମହିଷ ପାଳନ କେନ୍ଦ୍ରର ନିର୍ଦ୍ଦେଶକଙ୍କ ସହିତ ମୁଁ ଥରେ ଯାଉଥିଲି ମହିଷ ଥିବା ଖୁଆଡ଼ ଭିତରକୁ । ଆମେ ଗତି କରୁଥିବା ରାସ୍ତା ପାଖ ପର୍ଯ୍ୟନ୍ତ ମୋଟା ମୋଟା ଗଛ ଦ୍ୱାରା ବାଡ଼ ତିଆରି କରା ଯାଇଥାଏ । ନବଜାତ ବଣ ମହିଷୀଛୁଆକୁ ଦେଖିବାକୁ ମୋର ବହୁତ ଇଚ୍ଛା ହେଉଥିଲା । ଆମେ ବାଡ଼ ନିକଟକୁ ଆଗେଇବା ମାତ୍ରେ, ମହିଷୀଛୁଆଟି ଥିବା ସ୍ଥାନରୁ ତା'ର ମା, ଅଧମିଟର ଲମ୍ବର ଶକ୍ତ ଗୋଳିଆ ଶିଙ୍ଗ ଥିବା ବିରାଟ ମୁଣ୍ଡକୁ ଆମ ଆଡ଼କୁ କରି ମାରିବା ଭଙ୍ଗିରେ ଚାହିଁ ରହିଲା । ଆମେ ବାଡ଼ ଆଡ଼କୁ ଆଗେଇ ଚାଲିଲୁ । ତତ୍‌କ୍ଷଣାତ୍ ମହିଷୀ ଠିଆ ହୋଇଥିବା ସ୍ଥାନରୁ ଆମ ଆଡ଼କୁ ଏକ ରେଳଗାଡ଼ି ପରି ମାଡ଼ି ଆସିଲା । ମୁଁ ହଠାତ୍ ବୁଝି ପାରିଲି ଯେ, ଆମ ଆଗରେ ଯେଉଁ ବାଡ଼ ଖୁଆଡ଼ରେ ବଣ ମହିଷୀ ରହିଛି, ସେହି ବାଡ଼କୁ ଭାଙ୍ଗି ଦେବା ତା ପକ୍ଷେ ଆଦୌଁ କଷ୍ଟକର ନୁହେଁ, ଦିଆସିଲି କାଠିଟିଏ ଭାଙ୍ଗିଲା ପରି ସେ ବାଡ଼କୁ ଭାଙ୍ଗି ଖୁବ୍ ସହଜରେ ତା'ର ଶିଙ୍ଗକୁ ମଣିଷ ଦେହରେ ଫୁଟେଇ ଦେଇ ପାରିବ । ମୁଁ ଗୋଟିଏ ପଟକୁ ଆଡ଼େଇ ହୋଇ ଗଲି । କିନ୍ତୁ ମୋର ସାଥୀ ପାଦେ ହେଲେ ଘୁଞ୍ଚିଲେ ନାହିଁ । ସେ ଭଲଭାବେ ବଣ ମହିଷର ସ୍ୱଭାବ ଜାଣିଥିଲେ, ତେଣୁ ଏଥର ମଧ୍ୟ ସେ ଭୁଲ କରି ନାହାନ୍ତି । ବାଡ଼ଠାରୁ ଏକ ମିଟର ଦୂର ପର୍ଯ୍ୟନ୍ତ ଦୌଡ଼ି ଆସି ମହିଷୀଟି ରହିଗଲା ଓ ଘାସ ଉପରେ ଶୋଇଥିବା ନିଜର ପିଲା ପାଖକୁ ଫେରିଗଲା । ଫେରିବା ବେଳେ ସେ ଆତ୍ମସନ୍ତୋଷରେ ଯେପରି ତା'ର ଲାଙ୍ଗୁଡ଼ଟାକୁ ହଲଉଥାଏ, ତାହା ଦେଖି ଭାବିବା କଷ୍ଟକର ଯେ, ମାତ୍ର ମୁହୂର୍ତ୍ତେ ଆଗରୁ ସେ ଆମ ଆଡ଼କୁ କ୍ଷିପ୍ର ଗତିରେ ମାଡ଼ି ଆସୁଥିଲା । ଏବେ ସେ ପିଲା ପାଖକୁ ଫେରି ଯାଇ ପୁଣି ଆମ ଆଡ଼କୁ ବୁଲିକି ପଡ଼ିଲା । ଆମେ ସେଠାରୁ ହଟି ନଯାଇଥିବାର ଲକ୍ଷ୍ୟକରି ମହିଷୀଟି ପୁଣି ଆମ ଆଡ଼କୁ ଶିଙ୍ଗ ନୁଆଁଇ ଦୌଡ଼ି ଆସିଲା । ଏହି ପରି ସେ ତିନି ଚାରିଥର କଲା । ଶେଷରେ ଯେତେବେଳେ ଦେଖି ବୁଝି ପାରିଲା ଯେ, ଆମେ ଭୟ ନକରି ସେଠାରୁ ଚାଲି ଯିବାକୁ ପ୍ରସ୍ତୁତ ନୋହୁଁ, ମହିଷୀଟି ଆପେ ଆପେ ଚାଲିଯିବା ପାଇଁ ସ୍ଥିରକଲା । ଏକ ନିରାପଦ ଘଞ୍ଚ ଘାସବଣ ଭିତରକୁ ସେ ଚାଲିଗଲା ଓ ତା'ର ବାଛୁରୀଟି ତା ପଛେ ପଛେ ନିଜର ଥରିଲା ଗୋଡ଼ରେ ଆଗେଇବାକୁ ଲାଗିଲା ।

ନାଗସାପ



ବଗ

ଅବଶ୍ୟ ମୁଁ ବୁଝି ପାରିଲି ଯେ, ମହିଷୀଟି ଆମକୁ କେବଳ ଭୟ ଦେଖାଉ ଥିଲା । ଯଦି ମୋ ସଙ୍ଗରେ ଏହି ଅଭିଜ୍ଞ ସାଥୀ ଜଣକ ନଥାନ୍ତେ, ତେବେ ହୁଏତ ତା'ର ଭୟ ମୋ ଉପରେ କାର୍ଯ୍ୟକାରୀ ହୋଇ ଥାଆନ୍ତା !

ଭୟ ପ୍ରଦର୍ଶନର ଭଙ୍ଗୀ ବା ଗତି ହେଉଛି – ସତର୍କ କରାଇ ଦେବା : "ମୋ ସାଙ୍ଗରେ ଲାଗ୍ ନାହିଁ, ହଟିଯା, ନଚେତ୍ ଅବସ୍ଥା ଖରାପ ହେବ" । ଏପରି ସତର୍କ କରାଇ ଦେବା ଜୀବଜନ୍ତୁଙ୍କ ପକ୍ଷେ ଅତି ସ୍ୱାଭାବିକ କଥା । ଭୟଭୀତ କରିବା ଓ

ଧମକ ଦେବାକୁ ସମସ୍ତେ ଭଲ ପାଆନ୍ତି – କୀଟପତଙ୍ଗ ଓ ପଶୁ ପକ୍ଷୀ ମଧ୍ୟ ।

ମନେ କର ଗୋଟିଏ ପାଲୁଡ଼ା ପୋକ ଧାଇଁଛି । ସେ କାହାକୁ କାମୁଡ଼େ ନାହିଁ କିମ୍ବା ଆଞ୍ଚୁଡ଼ି ପାରେ ନାହିଁ । କିନ୍ତୁ ତା'ର ପ୍ରତିରକ୍ଷା ଲାଗି ସେ ଏକ ଗନ୍ଧଯୁକ୍ତ ପଦାର୍ଥ ଅନ୍ୟ ଉପରକୁ ଛିଞ୍ଚାଡ଼େ । କିନ୍ତୁ ବିପଦ ପଡ଼ିଲେ, ସେ ସଙ୍ଗେ ସଙ୍ଗେ ଏହି ପଦାର୍ଥ ଅନ୍ୟ ଉପରକୁ ପକାଇ ଦିଏ ନାହିଁ । ପ୍ରଥମେ ମୁଣ୍ଡ ତଳକୁ କରି ଠିଆ ହୋଇ ଭୟ ଦେଖାଇ କହେ "ପଳେଇଯା, ନଚେତ୍ ତୋ ଉପରକୁ ଛିଞ୍ଚାଡ଼ିବି !" ତା'ର ଏହି ଭଙ୍ଗି ଶତ୍ରୁ ପାଇଁ ଠିକ୍ ଭାବେ କାର୍ଯ୍ୟକରେ । ଏଭଳି ଏକ ପ୍ରକାର ପୋକ ଅଛି ଯିଏକି କାହାରିକୁ ଏହି ଗନ୍ଧ ପଦାର୍ଥ ଛିଞ୍ଚାଡ଼ି ପାରେ ନାହିଁ, କିନ୍ତୁ ଅନ୍ୟକୁ ଭୟ ଦେଖାଇବା ପାଇଁ ପାଲୁଡ଼ା ପୋକ ଭଳି ଭଙ୍ଗି କରି ଛିଡ଼ା ହୋଇ ଶତ୍ରୁ ମୁଖରୁ ନିଜକୁ ରକ୍ଷା କରିପାରେ ।

ବିଷଧର ନାଗସାପ ଚୋଟ ମାରିବା ପୂର୍ବରୁ ପ୍ରଥମେ ଫଣା ଟେକି ଠିଆ ହୁଏ । ଏହା ହେଉଛି ବିପଦ ସଙ୍କେତ ବା ସତର୍କବାଣୀ ।

ଆକ୍ରମଣକାରୀକୁ ସତର୍କ କରାଇବାକୁ ହେଲେ ବତକ ନିଜର ବେକ ଆଗକୁ ବଢ଼େଇ ଦିଏ । ବଗ ହଠାତ୍ ରହିଯାଇ ନିଜର ଦେହର ପରକୁ ଫୁଲାଇ ବେକକୁ ବଢ଼େଇ, ସତେ ଯେପରି ଆକ୍ରମଣ କରିବାକୁ ପ୍ରସ୍ତୁତ ହୁଏ । ରାଜହଂସ ନିଜର ଡେଣା ଛାଟି ବେକ ଫୁଲାଇପକାଇ ନିଜର ମୁଣ୍ଡକୁ ପିଠି ଉପରକୁ ଟେକି ରଖେ ।

ସଂକ୍ଷିପ୍ତରେ କହିଲେ, ଯେତେବେଳେ ଜୀବଜନ୍ତୁଙ୍କର ଜୀବନ ପ୍ରତି ବାସ୍ତବ ବିପଦ ଆସେ ଓ ଶତ୍ରୁ ତାଙ୍କର ନିକଟତର ହୁଏ, ସେତେବେଳେ ହିଁ ସେମାନେ ନିଜର ପ୍ରତିରକ୍ଷା କାର୍ଯ୍ୟ କରିବା ପୂର୍ବରୁ ସତର୍କ କରାଇ ଦିଅନ୍ତି ବା ଭୟ ଦେଖାନ୍ତି । କିନ୍ତୁ ଆଉ ଏକ ସ୍ୱତନ୍ତ୍ର ଭୟ ଦେଖାଇବାର ଭାଷା ଅଛି, ଯାହାକୁ ଜୀବଜନ୍ତୁମାନେ ନିଜନିଜ ମଧ୍ୟରେ ବ୍ୟବହାର କରନ୍ତି । ଏହାକୁ "ସୀମାନ୍ତ" ଭାଷା କୁହାଯାଏ ଏବଂ ଜୀବଜନ୍ତୁଙ୍କର ବାସସ୍ଥାନକୁ ରକ୍ଷା କରିବା ଲାଗି ଏହାକୁ ବ୍ୟବହାର କରାଯାଏ । ଜୀବଜନ୍ତୁ କେବଳ ନିଜ ଜାତିର ଜନ୍ତୁଙ୍କଠାରୁ ସେମାନଙ୍କର ବାସ ସ୍ଥାନକୁ ରକ୍ଷା କରନ୍ତି । ଅନ୍ୟ ଜାତିର ଜନ୍ତୁ ଉପରେ ସେମାନେ ନଜର ମଧ୍ୟ ଦିଅନ୍ତି ନାହିଁ । ଉଦାହରଣ ସ୍ୱରୂପ ଷ୍ଟାରଲିଂ ପକ୍ଷୀ ନିଜର ବସାରୁ ଟିଟ୍‌ମାଉସ୍ ପକ୍ଷୀକୁ କେବେହେଲେ ତଡ଼େ ନାହିଁ । କୁକୁର ପ୍ରତି ମଧ୍ୟ ସେ ଆଦୌ ନଜର ଦିଏ ନାହିଁ । କିନ୍ତୁ ଯଦି ଆଉ ଗୋଟିଏ ଷ୍ଟାରଲିଂ ପକ୍ଷୀ ସେହି ସ୍ଥାନକୁ ଆସିଯାଏ, ତେବେ ସେ ତତ୍‌କ୍ଷଣାତ୍ ତାକୁ ଭୟ ପ୍ରଦର୍ଶନ କରେ ଓ ଆଗନ୍ତୁକକୁ ସେଠାରୁ ପଳେଇଯିବାକୁ ଦାବୀ କରେ । ଯଦି ଆଗନ୍ତୁକ ଷ୍ଟାରଲିଂର କଥା ନଶୁଣେ ତେବେ ସେ ବିହିତ ପଦକ୍ଷେପ ନିଏ ।

ଷ୍ଟିକ୍‌ଲର୍ ମାଛ – କେବଳ ଭଦ୍ର ପ୍ରେମିକ ନୁହେଁ । ସେ ନିଜର ବାସସ୍ଥାନର ସୁରକ୍ଷକ । ଯଦି ଅନ୍ୟ କୌଣସି ଷ୍ଟିକ୍‌ଲର୍ ମାଛ ତା'ର ରହିବା ସ୍ଥାନକୁ ଆସେ, ତେବେ ମାଲିକ ଲଢ଼େଇ କଲ ଭଳି ନାଚ କରି ତା ଆଡ଼କୁ ଗତିକରେ । ଏହି ନାଚ ଯଦି ବିଫଳ ହୁଏ, ତାହାହେଲେ ସେ ନିଜର ମୁଣ୍ଡକୁ ତଳକୁ ପୋତି ବାଲିକୁ କାମୁଡ଼ି ପକାଏ । ହୁଏତ ତା'ର ଏହି ଭାବ ଭଙ୍ଗି ଅନ୍ୟର ଅଧିକୃତ ଜାଗାକୁ ଆସିଥିବା ଏହି ଲଜ୍ଜାହୀନ ଆଗନ୍ତୁକକୁ ନିଶ୍ଚୟ ଭୟଭୀତ କରିବ । କିନ୍ତୁ ଯଦି ସେ ଭୟଭୀତ ନହୁଏ, ତେବେ ଷ୍ଟିକ୍‌ଲର୍ ମାଛ ତା'ର ଶେଷ ଭୟ ଦେଖାଇବା କୌଶଳ ପ୍ରୟୋଗ କରେ – ଶତ୍ରୁ ଆଡ଼କୁ ପିଠିକରି ତା'ର ତଳିପେଟ ପାଖର କଣ୍ଟାକୁ ଟେକି ଧରେ ।

ଚଢ଼େଇମାନେ ମଧ୍ୟ ତାଙ୍କର ବସାକୁ ଅନ୍ୟ କୌଣସି ଆଗନ୍ତୁକ ଆସିଲେ, ଭଲ ପାଆନ୍ତି ନାହିଁ । ଉଦାହରଣ ସ୍ୱରୂପ ଗାଙ୍ଗଚିଲ ଶତ୍ରୁକୁ ଦେଖିଲେ ରାଗରେ ମୁଣ୍ଡ ତଳକୁ କରି ଘାସକୁ ରାମ୍ପେ କିମ୍ବା ବାଲି କାମୁଡ଼ି ପକାଏ । ମାଞ୍ଚୁରିୟାର ସାରସ ତା'ର ଶତ୍ରୁକୁ ଦେଖିଲା ମାତ୍ରେ ବେକ ଆଗକୁ ବଢ଼େଇ ଶତ୍ରୁ ଆଡ଼କୁ ସି-ସି ଶବ୍ଦ କରି



ମାଞ୍ଚୁରିୟାର ସାରସ



ଷ୍ଟିକ୍‌ଲର୍ ମାଛ

ହୀରାଥିବା ସାପମାନେ

ଆଗେଇ ଆସେ । ମନେ ହୁଏ, ସତେ ଯେପରି ବର୍ତ୍ତମାନ ତା'ର ଧାରୁଆ ଥଣ୍ଟରେ ଶତ୍ରୁ ଦେହକୁ ଫୁଟେଇ ଦେବ । ମାତ୍ର ଏକଥା ସାଧାରଣତଃ ଘଟେ ନାହିଁ: ଆଗନ୍ତୁକ ପାଇଁ ସତର୍କବାଣୀ ହିଁ ଯଥେଷ୍ଟ । ଆଗନ୍ତୁକ ଲଢ଼େଇ କରିବାକୁ ନଆସି, ସ୍ଥାନ ଛାଡ଼ି ଚାଲିଯାଏ ।



କିନ୍ତୁ ଭୟ ପ୍ରଦର୍ଶନର ଧମକ ଅର୍ଥାତ୍ "ଶୀଘ୍ର ଏଠୁ ଚାଲିଯା" ଶତ୍ରୁ ଲାଗି ସର୍ବଦା କାର୍ଯ୍ୟ କରେ ନାହିଁ । ବେଳେବେଳେ ଦୁହିଙ୍କୁ ମୁହାଁମୁହିଁ ହୋଇ ଯିବାକୁ ପଡ଼େ ।

ତିଆଁ ବୁଢ଼ିଆଣୀମାନେ

କୌଣସି ଏକ ପୁରୁଣା ବାଡ଼ ଭିତରେ ବସନ୍ତ ଋତୁରେ ମାଛି ବସି ଖରା ପୁହାନ୍ତି । ଏଇଠି ଆଠଗୋଡ଼ିଆ ତିଆଁ ବୁଢ଼ିଆଣୀ ନିଶ୍ଚୟ ଦେଖିବାକୁ ମିଳେ । ଛପିଛପି ମାଛି ପାଖକୁ ଯାଇ ସେ ହଠାତ୍ ତା ପିଠି ଉପରକୁ ଲମ୍ଫ ଦିଏ । ବାଡ଼ ଘେର ଭିତରେ ହୁଏତ ଅନ୍ତ- କେତୋଟି ତିଆଁ ବୁଢ଼ିଆଣୀ ଥିବେ, ମାତ୍ର ସେମାନଙ୍କର ପ୍ରତ୍ୟେକଙ୍କ ପାଇଁ ସ୍ୱତନ୍ତ୍ର ସ୍ଥାନ ରହିଥାଏ । ଅବଶ୍ୟ କୌଣସି ନିର୍ଦ୍ଦିଷ୍ଟ ସୀମାରେଖା ନଥାଏ । ତେବେ ମଧ୍ୟ ସେମାନେ ପରସ୍ପରଠାରୁ ଦୂରରେ ରହିବାକୁ ଚେଷ୍ଟା କରନ୍ତି । ଯଦି ଏହି ବୁଢ଼ିଆଣୀ ପରସ୍ପରର ସମ୍ମୁଖୀନ ହୋଇ ଯାଆନ୍ତି ତେବେ ସଙ୍ଗେ ସଙ୍ଗେ "ଏଃ, ପଳା ! ଅବସ୍ଥା ଖରାପ ହୋଇ ଯିବ !" ଏହି କଥା ଉଚ୍ଚାରଣ କଲ ବେଳେ ବୁଢ଼ିଆଣୀ ନିଜର ଆଗ ଗୋଡ଼କୁ ଟେକି ପାଟିକୁ ମେଲ କରିଦିଏ । ସେମାନେ ପରସ୍ପରର ପାଖକୁ ଧୀରେ ଧୀରେ ଲାଗି ଆସି, ଧକ୍କା ଦେଇ, ମୁଣ୍ଡକୁ ମୁଣ୍ଡ ସହିତ ଲଢ଼େଇ କରି ପରସ୍ପରର ଦେହରେ ବିଷାକ୍ତ ନାହୁଡ଼ ମାରିବା ପାଇଁ ପ୍ରସ୍ତୁତ ହୋଇ, ପରେ ନିଜ ନିଜର ବାଟରେ ଶାନ୍ତଶିଷ୍ଟ ଭାବେ ଚାଲି ଯାଆନ୍ତି । ଦିହେଁ ଦେଖାଇ ଦିଅନ୍ତି ଯେ, ସେମାନେ ଲଢ଼େଇ କରିବାକୁ ପ୍ରସ୍ତୁତ, କିନ୍ତୁ କେହି ହେଲେ ଜଣେ ଲଢ଼େଇ କଲେନି । ସତେ ଅବା ବୁଝି ପାରିଲେ ଯେ, ପ୍ରତିଥର ଦେଖା ହୋଇ ଯଦି ତିଆଁ ବୁଢ଼ିଆଣୀ ସେମାନଙ୍କ ମଧ୍ୟରେ ମୃତ୍ୟୁସଙ୍ଗତ ଲଢ଼େଇ ଲଗନ୍ତି, ତେବେ ଅନେକ ଦିନରୁ ସେମାନଙ୍କର ବଂଶ ଲୋପ ପାଇ ଯାଆନ୍ତାଣି ଏବଂ ଏ ପୃଥିବୀରେ ଆଉ ତିଆଁ ବୁଢ଼ିଆଣୀ ନଥାନ୍ତେ ।

ଟହଳ ଗତିରେ ବୁଲୁଥିବା ଝିଟିପିଟିମାନେ





ଉତ୍ତର ଆମେରିକାର ଦକ୍ଷିଣାଞ୍ଚଳରେ ମୁଣ୍ଡରେ ହୀରାଥିବା ସାପ ଦେଖିବାକୁ ମିଳନ୍ତି । ବିଶେଷ କେତେକ ଭୟଙ୍କର ସାପମାନଙ୍କ ମଧ୍ୟରେ ଏମାନେ ଆକାରରେ ଖୁବ୍ ବଡ଼



ଢକାଡାହୁଡ଼ିଆ ହରିଣ



ଓ ଭୟଙ୍କର ମଧ୍ୟ । ସେମାନଙ୍କର ଲମ୍ବା ପ୍ରାୟ ଅଢ଼େଇ ମିଟର ଓ ଓଜନ ଦଶ କିଲୋ । ଏହିଭଳି ପ୍ରତ୍ୟେକ ସାପର ନିଜର ଶିକାର କ୍ଷେତ୍ର ରହିଛି ଏବଂ ଆଶା କରାଯିବା ସ୍ୱାଭାବିକ ଯେ, କେହି ଯଦି ଏହି କ୍ଷେତ୍ରକୁ ଆସେ, ତେବେ ତା'ର ଦଶା ଖରାପ ହେବ । କାରଣ ହୀରାଥିବା ସାପର ବିଷ ନାଗସାପର ବିଷ ତୁଳନାରେ ଦଶ ଗୁଣ ବେଶି ଓ ଦାନ୍ତଗୁଡ଼ିକ ଏତେ ବଡ଼ ଯେ, ତାହା ମୋଟା ଚମଡ଼ାକୁ ଅକ୍ଳେଶରେ ଫଟେଇ ଦେଇ ପାରିବ । ଏପରିକି ମାଲିକ ସାପଟିର ଅବସ୍ଥା ମଧ୍ୟ ଖରାପ ହୋଇଯାଇ ପାରେ, କାରଣ ଆଗନ୍ତୁକ ଶତ୍ରୁର ଏହି ଭଳି ଉପାଦାନ ରହିଥାଏ । ସାପମାନେ ପରସ୍ପରକୁ କାମୁଡ଼ିଲେ, ସେମାନଙ୍କୁ ସାଧାରଣତଃ ବିଷ ଧରେ ନାହିଁ, ତେବେ ମଧ୍ୟ ଘୋର ଲଢ଼େଇ ଫଳରେ ହୋଇଥିବା କ୍ଷତ ମୃତ୍ୟୁର କାରଣ ହୋଇ ପାରେ ।

ଧରାଯାଉ, ଦୁଇଟି ସାପ ପରସ୍ପର ଉପରେ ଆକ୍ରମଣ କରିବାକୁ ଯାଉଛନ୍ତି । ପ୍ରଥମେ ସାପ ଲଢ଼େଇ ଆମକୁ ସେମାନଙ୍କର ନାଚ ପରି ଦିଶେ : ସାପ ଦୁଇଟି ପରସ୍ପରର ମୁଣ୍ଡକୁ ନିଜ ନିଜର ଦେହରେ ସମାନ୍ତରାଳ ଭାବେ ରଖି ଘଷନ୍ତି ଏବଂ କେହି କାହାରି ଉପରେ ଆକ୍ରମଣ କରିବାର ଚେଷ୍ଟା ନକରି ଧୀରେ ଧୀରେ ଗତି କରନ୍ତି । ଏହିପରି ପ୍ରଥମ ପର୍ଯ୍ୟାୟରେ ସେମାନଙ୍କର ନୃତ୍ୟ ପ୍ରାୟ ୫ ମିନିଟ୍ ଧରି ଚାଲେ ଏବଂ ତା ପରେ ସାପମାନେ ବିପରୀତ ଦିଗକୁ ଚାଲି ଯାଆନ୍ତି ।

କିଛି ସମୟ ବିଶ୍ରାମ ନେଇ ପରେ ପୁଣି ଥରେ ସେମାନେ ଖୁବ୍ ଉପରକୁ ମୁଣ୍ଡଟେକି ପାଖାପାଖି ହୋଇ ପରସ୍ପରକୁ ପରସ୍ପର ମଧ୍ୟରେ ଛନ୍ଦି ଦିଅନ୍ତି । ଏହି ଭଳି ଅବସ୍ଥାରେ କିଛି ସମୟ ଧରି ଠିଆ ହୋଇ ରହନ୍ତି । ତା'ପରେ ଅଲଗା ହୋଇ ଯାଇ ପୁଣିଥରେ ସେହି ଭଳି ପାଖାପାଖି ଲଗି ପୁଣି ନିଜକୁ ଛନ୍ଦି ଦିଅନ୍ତି । ଯେ ପର୍ଯ୍ୟନ୍ତ ଉଭୟଙ୍କର ବଳ ସମାନ ଥାଏ, ସେ ପର୍ଯ୍ୟନ୍ତ ସେମାନେ କେବଳ "ନୃତ୍ୟ" କରନ୍ତି । ମାତ୍ର ଗୋଟିଏ ସାପର ବଳ ଟିକିଏ ବେଶୀ ହେଲେ – ଅନ୍ୟ ସାପଟିର ବେକକୁ

ଘୁଷି ଧରେ । ହଠାତ୍ ବିଜୁଳି ଗତିରେ ଦୁହେଁ ଅଟକି ଯାଆନ୍ତି ଏବଂ ବଳୁଆ ସାପଟି ଦୁର୍ବଳ ସାପର ଦେହକୁ ଚିତ୍‌କରି ଭୂଇଁରେ ଶୁଆଇ ଦିଏ । ବଳୁଆ ସାପଟି ଖୁବ୍ ସହଜରେ ନିଜର ଶତ୍ରୁକୁ ନଷ୍ଟ କରି ପାରନ୍ତା, କିନ୍ତୁ ସେ ସେପରି କରେ ନାହିଁ । ଏହାଛଡ଼ା ଲଢ଼େଇ ଲାଗିଲା ବେଳେ କୌଣସି ସାପ କେବେ ନିଜର ଶତ୍ରୁକୁ ଦାନ୍ତରେ ଘେଟ ଲଗାଇ କାମୁଡ଼େ ନାହିଁ । ସତେ ଯେମିତି ସାପ ଜାଣନ୍ତି ଯେ, ସେମାନଙ୍କର ଦାନ୍ତରେ କିଭଳି ବିପଦ ରହିଛି। ତେଣୁ ସେମାନେ ନିଜ ନିଜର "ସୀମା ବିବାଦ" ଖେଳ ମାଧ୍ୟମରେ ସମାଧାନ କରନ୍ତି । ବିଜୟୀ ସାପଟି ପରାଜିତ ସାପକୁ କିଛି ସମୟ ଧରି ରଖି ଛାଡ଼ିଦିଏ । ତା'ପରେ ପରାଜିତ ସାପଟି ସେହି ସ୍ଥାନ ଛାଡ଼ି ଚାଲି ଯାଏ ।

ସନ୍ନ୍ୟାସୀ କଙ୍କଡ଼ା

ଚଞ୍ଚଳ ଗତିରେ ବୁଲୁଥିବା ଝିଟିପିଟି ଯେତେବେଳେ ତା'ର ଶତ୍ରୁକୁ ଭୟ ଦେଖାଏ ଓ ପରେ ଜାଣି ପାରେ ଯେ, ଅନ୍ୟ ଝିଟିପିଟି ତା ପାଇଁ ଭୟର କାରଣ ନୁହେଁ, ସେତେବେଳେ ସେମାନେ ପରସ୍ପରର ବେକକୁ କାମୁଡ଼ନ୍ତି । ସେମାନେ ଏପରି କଲା ବେଳେ ନିଜନିଜ ଶକ୍ତି ପ୍ରତି ନଜର ଦେଇ ଜଣକ ପରେ ଜଣେ ଉଭୟଙ୍କୁ କାମୁଡ଼ନ୍ତି । ଏପରି କାମୁଡ଼ନ୍ତି ଯେ, କାହାରି ଦେହରେ ଟିକିଏ ହେଲେ କ୍ଷତ ଲାଗେ ନାହିଁ । ଏହିପରି କଲା ବେଳେ ଦୁଇ ଜଣଙ୍କ ମଧ୍ୟରୁ ଜଣେ କେହି ହାରିଗଲେ, ସେମାନଙ୍କର ଲଢ଼େଇ ଶେଷ ହୋଇଯାଏ । ବିଜୟୀ ଝିଟିପିଟି ସେହି ସ୍ଥାନରେ ରହେ ଓ ପରାଜିତ ଝିଟିପିଟିଟି ନିଜର ବାସସ୍ଥାନ ଖୋଜିବାକୁ ଅନ୍ୟତ୍ର ଚାଲିଯାଏ ।

ଖୁରାଥିବା କଳାବାହୁଟିଆ ହରିଣ, ଲଷତ୍ ପୀତ ପିଙ୍ଗଳ ହରିଣ ଓ ହରିଣ ହେଉଛନ୍ତି ଖୁବ୍ ଭଲ ମଲ୍ଲ ଯୋଦ୍ଧା । ସେମାନେ ମଲ୍ଲ ଯୁଦ୍ଧର ସବୁ ନିୟମ ଜାଣନ୍ତି ଓ ସେ ସବୁକୁ ମାନି ଯୁଦ୍ଧ କରନ୍ତି । ସେମାନଙ୍କର ଲଢ଼େଇ ବିଭିନ୍ନ ଉପାୟରେ ଆରମ୍ଭ ହୁଏ । କେତେକ ପରସ୍ପରକୁ ମୁହଁକରି ଠିଆ ହୁଅନ୍ତି ଓ ଆଗ ଗୋଡ଼ର ଖୁରାରେ ମାଟିକୁ ରାମ୍ପି ପକାନ୍ତି, ସତେଯେମିତି ସେଠାରୁ ବିନା ଲଢ଼େଇରେ ଚାଲି ଯିବାକୁ ନିଜର ଶତ୍ରୁକୁ କହନ୍ତି । ଅନ୍ୟ ହରିଣମାନେ ଘରି ପଟ ବୁଲନ୍ତି ଏବଂ ଆଉ କେତେକ ଯୁଦ୍ଧ କରିବା ପୂର୍ବରୁ ପରସ୍ପରକୁ ପିଠି ଦେଇ ଯାଆନ୍ତି । ତା'ପରେ ଲଢ଼େଇ ଆରମ୍ଭ ହୁଏ । ସୁଦକ୍ଷ ମଲ୍ଲ ଯୋଦ୍ଧା ଭଳି ହରିଣମାନଙ୍କର ଲଢ଼େଇ ପର୍ଯ୍ୟାୟ କ୍ରମେ ଚାଲେ ଓ ପ୍ରତ୍ୟେକ ପର୍ଯ୍ୟାୟ ମଝିରେ ବିଶ୍ରାମ ଲାଗି ସମୟ ଥାଏ । ଟିକିଏ ବିଶ୍ରାମ ନେଇ ସେମାନେ ପୁଣି ଲଢ଼େଇ କରନ୍ତି ଓ ଯେପର୍ଯ୍ୟନ୍ତ ଜଣେ ଅନ୍ୟ ଜଣକର ବିଜୟକୁ ସ୍ୱୀକାର ନକରିଛି ଲଢ଼େଇ ସେପର୍ଯ୍ୟନ୍ତ ଚାଲିଥାଏ । ପରାଜିତ ହରିଣଟି ଦୌଡ଼ି ପଳାଇ ଯାଏ, ବିଜୟୀ ହରିଣ ତା ପଛରେ ଆଉ ଗୋଡ଼ାଏ ନାହିଁ । କାରଣ ମଲ୍ଲ ଯୁଦ୍ଧର ପ୍ରଧାନ ଲକ୍ଷ୍ୟ ହେଲା ଶତ୍ରୁକୁ ନିଜର ଶକ୍ତି ଦେଖାଇବା – ତାକୁ ମାରି ଦେବା କିମ୍ବା ଆଘାତ କରିବା ଲଢ଼େଇର ଲକ୍ଷ୍ୟ ନୁହେଁ ।

ଚିହ୍ନୁଥିବା ହରିଣ



ଲଢ଼େଇ ଆରମ୍ଭ ପୂର୍ବରୁ ଦୁଇଟି ହରିଣ ପରସ୍ପରକୁ ଏକ ଭାବ ଦେଖାନ୍ତି । ଅନୁବାଦ କଲେ ଏହି ଭାବର ଅର୍ଥ ହେବ : "ଚାଲିଯା, ନଚେତ୍ ଅବସ୍ଥା ଖରାପ ହେବ !" ଅଧିକାଂଶ କ୍ଷେତ୍ରରେ ତାଙ୍କ ମଧ୍ୟରୁ ଜଣେ କେହି ଚାଲିଯାଏ । ଯଦି ନଯାଏ, ତେବେ ଲଢ଼େଇ ଆରମ୍ଭ ହୁଏ । ଲଢ଼େଇ ଶେଷରେ ମଧ୍ୟ ସେମାନେ ଏକ

ଭାବ ଦେଖାନ୍ତି, ଅନୁବାଦରେ ଯାହାର ଅର୍ଥ ହେବ: "ମୁଁ ପରାଜିତ" ।

କେତେକ ଜୀବଜନ୍ତୁ ନିଜର ଆତ୍ମସମର୍ପଣକୁ ଭାବ ପ୍ରଦର୍ଶନ ଦ୍ୱାରା ନକହି, ମେଳାପୀ ଓ ନମ୍ର ଭଙ୍ଗି ଦେଖାଇ ନିଜର ଅବସ୍ଥା ପ୍ରକାଶ କରନ୍ତି । ଉଦାହରଣ ସ୍ୱରୂପ, ସେମାନେ ବିଜୟୀ ଆଗରେ ଆଣ୍ଠୁ ମାଡ଼ି ପଡ଼ନ୍ତି କିମ୍ବା ନିଜର ଲଙ୍ଗୁଡ଼କୁ ଢାଙ୍କି ପକାନ୍ତି । ଉଦାହରଣ ସ୍ୱରୂପ, କୁକୁରଛୁଆ ଓ ଅନ୍ୟ କେତେକ ପକ୍ଷୀମାନଙ୍କ ପାଇଁ ଏହିପରି ପରାଜିତ ଭଙ୍ଗୀ ସ୍ୱାଭାବିକ ।



ଦେହସାରା ଠୋପାଠୋପା ଚିହ୍ନଥିବା ହରିଣମାନେ

ନିଜ ପାଇଁ କୌଣସି ସୁବିଧାଜନକ ବାସସ୍ଥାନ ଦେଖିବାକୁ ଯାଇ ସନ୍ୟାସୀ କଙ୍କଡ଼ା ଯେତେବେଳେ ପରସ୍ପର ମଧ୍ୟରେ ଲଢ଼ି ପରାସ୍ତ ହୁଏ, ସେ ନିଜର ପେଟ କଡ଼ ବା ପିଠି ତଳକୁ କରି ଓଲଟି ପଡ଼େ ଏବଂ ତା'ର ଶତ୍ରୁ ସଙ୍ଗେ ସଙ୍ଗେ ଆକ୍ରମଣ ବନ୍ଦ କରିଦିଏ ।

ଶତ୍ରୁର କାମୁଡ଼ା ସହ୍ୟ ନକରି ପାରି ପରାସ୍ତ ହୋଇଥିବା ଚଞ୍ଚଳ ଝିଟିପିଟି ନିଜର ବିଜୟୀ ଶତ୍ରୁ ଆଡ଼କୁ ଲଙ୍ଗୁଡ଼ ବୁଲାଇ ଡେଇଁବାକୁ ଆରମ୍ଭ କରେ । ସତେ ଯେପରି ସେଠାରୁ ଦୌଡ଼ି ପଳାଇବାକୁ ଚାହୁଁଛି । କୁକୁର ଓ ହେଟା ପରାସ୍ତ ହେଲା ପରେ ନିଜର ଶତ୍ରୁ ଆଡ଼କୁ ତାଙ୍କ ଶରୀରର ସବୁଠୁ ସହଜ ଭେଦ୍ୟ ଅଂଶ ଅର୍ଥାତ୍ ସେମାନଙ୍କର ବେକକୁ ବଢ଼ାଇ ଦିଅନ୍ତି, କିନ୍ତୁ ବିଜୟୀ କେବେହେଲେ କୌଣସି କ୍ଷତି କରନ୍ତି ନାହିଁ । ମାତ୍ର "ମୁଁ ପରାଜିତ"– ଏହି ସଙ୍କେତ ବିଜୟୀ ମନରେ ଅନୁରୂପ ଭାବନା ସୃଷ୍ଟିକରେ ଓ ସେ ପରାଜିତ ଜନ୍ତୁଟିକୁ କ୍ଷମା ଦିଏ ।

ଆଜି ଯେ ପରାସ୍ତ ହୋଇ ଯାଇଛି, ଅଳ୍ପ କେତେ ବର୍ଷ ପରେ ସେ ଅଭିଜ୍ଞ ଓ ବଳବାନ୍ ହୋଇ ଯାଏ । ସେତେବେଳେ ସେ ମଧ୍ୟ ତା ନିକଟରେ କେହି ପରାସ୍ତ ହେବାର ଭାବ ଦ୍ୱାରା "ମୁଁ ପରାଜିତ" କହିଲେ ତାକୁ କ୍ଷମା ଦିଏ ।

ବଳବାନ୍ ସର୍ବଦା ଦୟାଳୁ ।

ଖଞ୍ଜନ ପକ୍ଷୀ

# ଚତୁର୍ଥ ଭାଗ

# ପଶୁ ପକ୍ଷୀମାନେ ଆଉ କେମିତି କଥା ହୁଅନ୍ତି

## ରଙ୍ଗ, ଆଲୋକ ଓ ଲାଙ୍ଗୁଡ଼ର ଭାଷା

ଗନ୍ଧର ଭାଷା, ନୃତ୍ୟର ଭାଷା, ଶବ୍ଦର ଭାଷା ଓ ବିଭିନ୍ନ ଗତିର ଭାଷା ... ଭାବ ବିନିମୟ ଲାଗି ସଙ୍କେତ ଦେଉଥିବା ସବୁ ଭାଷା ମଧ୍ୟରୁ ଏହା ଅଳ୍ପ କେତୋଟି ମାତ୍ର, ଯାହା ସାହାଯ୍ୟରେ ଜୀବଜନ୍ତୁମାନେ କଥାବାର୍ତ୍ତା ହୁଅନ୍ତି ।

ଜୀବଜନ୍ତୁ ରଙ୍ଗ ବାରି ପାରନ୍ତି । ଥରେ ଏକ କୌତୂହଳପୂର୍ଣ୍ଣ ପରୀକ୍ଷା କରାଯାଇଥିଲା । ମଶା ରଙ୍ଗ ଚିହ୍ନି ପାରନ୍ତି ନା ନାହିଁ, ଏହି ବିଷୟ ନେଇ ବୈଜ୍ଞାନିକମାନେ ତର୍କ କରୁଥିଲେ । ସତକଥା ଜାଣିବାକୁ ଚାରିକୋଣିଆ ଡବାଟିଏ ନେଇ ତାହାକୁ ବିଭିନ୍ନ ରଙ୍ଗରେ ରଞ୍ଜିତ କରିଦେଲେ । ତା'ପରେ ଏହି ରଙ୍ଗିନ ଡବାକୁ ମଶା ଥିବା ଜାଗାରେ ରଖି ଦେଇ ନିରୀକ୍ଷଣ କଲେ । ସେମାନେ ଦେଖିବାକୁ ପାଇଲେ ଯେ, ଗୋଟିଏ ରଙ୍ଗ ଉପରେ ଅନେକ ମଶା ବସିଛନ୍ତି । ଦ୍ୱିତୀୟ ରଙ୍ଗ ଉପରେ ତା'ଠାରୁ କମ୍ ଓ ତୃତୀୟ ରଙ୍ଗରେ ସବୁଠୁ କମ୍ ମଶା ବସିଛନ୍ତି । ଆଉ କେଉଁ ରଙ୍ଗ ଉପରେ ଗୋଟିଏ ହେଲେ ମଶା ବସି ନାହାନ୍ତି । ଏଥରୁ ଜଣାଗଲା ଯେ, ବସିବା ସ୍ଥାନ ନିରୂପଣରେ ନିର୍ଦ୍ଦିଷ୍ଟ କାରଣ ରହିଛି । ଲୋକମାନେ ଏହା ଫଳରେ ଏକ ବାସ୍ତବ ସିଦ୍ଧାନ୍ତରେ ଉପନୀତ ହେଲେ : ଯେଉଁ ଲୋକମାନେ ମଶା ବହୁଳ ସ୍ଥାନରେ କାର୍ଯ୍ୟ କରୁଥିଲେ, ସେମାନଙ୍କ ପାଇଁ ମଶା ଭଲ ନ ପାଉଥିବା ରଙ୍ଗର ପୋଷାକ ତିଆରି କରି ଦିଆଗଲା ।

କିନ୍ତୁ, ମଶା କୌଣସି ରଙ୍ଗ ସୁନ୍ଦର ଦିଶୁଥିବାରୁ ଯେ ତାହା ଉପରେ ବସନ୍ତି ତା ନୁହେଁ, ସେମାନଙ୍କ ଲାଗି ରଙ୍ଗର ବାସ୍ତବ ଗୁରୁତ୍ୱ ରହିଛି । ଏହା ହୋଇ ନଥିଲେ ଅନେକ ମଶା ନିଜ ପାଇଁ ଖାଦ୍ୟ ସଂଗ୍ରହ କରି ପାରନ୍ତେ ନାହିଁ । ଜଣାପଡ଼ିଲା ଯେ, ରଙ୍ଗ ସେମାନଙ୍କୁ ନିଜନିଜ ମଧ୍ୟରେ କଥାବାର୍ତ୍ତା କରିବାକୁ ସାହାଯ୍ୟ କରେ ଏବଂ ଶତ୍ରୁ ଓ ମିତ୍ର କିଏ ବାରିବାକୁ ମଧ୍ୟ ସାହାଯ୍ୟ କରିଥାଏ ।

ରଙ୍ଗ ହେଉଛି ସାଧାରଣ ଭାବ ବିନିମୟର ମାଧ୍ୟମ । ଛୋଟ ସାଧବବୋହୂଟି ନିଜର ଲାଲ ପିଠିକୁ ସମସ୍ତଙ୍କୁ ଦେଖାଇ ସତେ ଯେମିତି କହେ "ମୋତେ ଛୁଅଁନି —ମୁଁ ଅତି ଅସୁନ୍ଦର" ଓ ଗଛ ଡାଳରେ ଧୀରେ ଧୀରେ ଚଢ଼େ । ତା'ର ଦେହର ରଙ୍ଗକୁ ସମସ୍ତେ ସହଜରେ ମନେ ରଖି ପାରନ୍ତି ।

ଚିତ୍ରଚିଟିଆ ବେଙ୍ଗ

ତାକୁ ଛୁଇଁବା ଦରକାର ନାହିଁ ବୋଲି କହିବାକୁ ଯାଇ ଚିତ୍ରକୁଟିଆ ବେଙ୍ଗ ନିଜର ଛପାରଂଗର ଉଜ୍ଜ୍ୱଳ ତଳିପେଟ ଓ ଗଳାକୁ ଦେଖାଏ । ଶତ୍ରୁକୁ ଭୟଭୀତ କରିବା ପାଇଁ ଏହି ପରି ଅନେକ ଉପାୟ ଅଛି । କିନ୍ତୁ ଏହା ବ୍ୟତୀତ ରଙ୍ଗ ସାହାଯ୍ୟରେ ନିଜନିଜ ମଧ୍ୟରେ କଥା ହେବାର ଅନେକ ଉପାୟ ରହିଛି ।

ଅନେକ ପକ୍ଷୀଙ୍କ ଦେହର ରଙ୍ଗୀନ ଦାଗରୁ ସେମାନଙ୍କୁ ଚିହ୍ନି ହୁଏ । ବତକର ଡେଣାରେ ଥିବା "ଦର୍ପଣ ଭଳି ଦାଗ" ହେଉଛି ଏହାର ଉଦାହରଣ ।

ଏହି ଦାଗ ଦେଖି ସେମାନେ ଅନ୍ୟଜାତିର ପକ୍ଷୀଙ୍କଠାରୁ ନିଜ ଜାତିର ପକ୍ଷୀକୁ ଚିହ୍ନି ପାରନ୍ତି । ଚକ୍ ଚକ୍ କରୁଥିବା ପରକୁ ଦେଖି ମାଈ ବତକ ତା'ର ପୁରୁଷକୁ ଚିହ୍ନି ପାରେ । ମାତ୍ର ସବୁଠୁ ଆଗ୍ରହପ୍ରଦ କଥା ହେଲା, ସେମାନଙ୍କ ମଧ୍ୟରେ କଥାବାର୍ତ୍ତା ରଙ୍ଗୀନ ଦାଗ ସାହାଯ୍ୟରେ ହୋଇଥାଏ ।

ଖଞ୍ଜନ ପକ୍ଷୀଟିର ଲାଞ୍ଜ ଦୁଇକଡ଼ରେ ଦୁଇଟି ଧଳାପର ଥାଏ । କିନ୍ତୁ ଏହା ଆମକୁ ସବୁବେଳେ ଦିଶେ ନାହିଁ । ପକ୍ଷୀଟି କିଛି କହିବାକୁ ଚେଷ୍ଟା କଲେ ଆମେ ତାହା ଦେଖିପାରୁ । ପକ୍ଷୀଟି ସେତେବେଳେ ନିଜ ଲାଞ୍ଜର ପରକୁ ମୟୂର ପୁଚ୍ଛ ପରି ମେଲାଇ ଦିଏ, ତେଣୁ ଧଳା ପର ସ୍ପଷ୍ଟ ଭାବେ ଦିଶେ ।

ନିଜ ଲାଞ୍ଜକୁ ହଲାଇ ଧୀର ଗତିରେ ନଦୀ କୂଳରେ ବୁଲୁ ବୁଲୁ ପକ୍ଷୀଟି ହଠାତ୍ ତା'ର ପୁଚ୍ଛକୁ ଟେକି ଦିଏ ଏବଂ ଶୀଘ୍ର ଏହି ଖଞ୍ଜନ ପକ୍ଷୀଟି ପାଖକୁ ଆଉ ଗୋଟିଏ ପକ୍ଷୀ ଉଡ଼ିଆସେ ।

ବଣ୍ଟିଙ୍ଗ୍ ପକ୍ଷୀଟିର ମଧ୍ୟ ପୁଚ୍ଛରେ ଧଳା ଦାଗ ଥାଏ । ସେହି ପକ୍ଷୀଟି କୌଣସିଠାରେ ଖାଦ୍ୟ ପାଇଲା ମାତ୍ରେ ହଠାତ ପୁଚ୍ଛ ଟେକି ସଙ୍କେତ ଦିଏ : "ମୋ ପାଖକୁ ଚାଲି ଆସ, ଏଇଠି ଖାଦ୍ୟ ଅଛି !"

ଶୀତ ଦିନେ ଯଦି କେବେ ଜଂଗଲ କିମ୍ବା ବଗିଚାରେ ତୁମେ ସୁନ୍ଦର ଲାଲ ପେଟିଆ ବୁଲ୍‌ଫିନସ୍ ପକ୍ଷୀ ଏବଂ ତା'ର ଧୂସର ସାଥୀମାନଙ୍କୁ ଦେଖ ତା ହେଲେ ଏହି ପକ୍ଷୀକୁ ଲକ୍ଷ୍ୟ କଲେ, ତୁମେମାନେ ଚଢ଼େଇଙ୍କର ଅସାଧାରଣ କଥାବାର୍ତ୍ତା ଶୁଣି ପାରିବ ।

ବୁଲ୍‌ଫିନସ୍ ପକ୍ଷୀ ସ୍ଥିର ହୋଇ ବସିଥିବା ଯାଏ, ତା'ର କଥାବାର୍ତ୍ତା କରିବା ଦରକାର ପଡ଼େ ନାହିଁ । କିମ୍ବା "ଝୁ ଝୁ" ଶବ୍ଦ କରି ଅନ୍ୟମାନଙ୍କ ସାଙ୍ଗରେ କଥା




ହେଉଥାଏ । କିନ୍ତୁ ହଠାତ୍ ପକ୍ଷୀ ଦଳ ଅନ୍ୟ ଗୋଟିଏ ସ୍ଥାନକୁ ଉଡ଼ି ଯିବାକୁ ସ୍ଥିରକଲେ, ତଡ଼ିତ୍ ବେଗରେ ସଙ୍କେତ ଦିଆଯାଏ : "ହୁସିଆର, ଉଡ଼ିବାକୁ ପ୍ରସ୍ତୁତ ରୁହ !" ଚଢ଼େଇର ଅଣ୍ଟା ଉପରେ ଥିବା ଧଳା ଦାଗ ଦ୍ୱାରା ଏହି ସଙ୍କେତ ଦିଆଯାଏ । ପକ୍ଷୀଟି ବସିଥିବା ଯାଏ ଏହି ଧଳା ଦାଗ ଆଖିକୁ ଦିଶେ ନାହିଁ । ଡେଣାର ପର ତାକୁ ଘୋଡ଼ାଇ ରଖିଥାଏ । ମାତ୍ର ଉଡ଼ିବା ପୂର୍ବରୁ, ଚଢ଼େଇ ଡେଣା ମେଲାଇବା ଫଳରେ ଧଳା ଦାଗ ସ୍ପଷ୍ଟରୂପେ ଦେଖାଯାଏ । ଏପରିକି ଖୁବ୍ ଦୂରରୁ ମଧ୍ୟ ତାହା ଦେଖିହୁଏ । ଦଳର ସବୁ ପକ୍ଷୀ ଦେଖିପାରିଲା ଭଳି, ବୁଲ୍‌ଫିନସ୍ ନିଜ ଡେଣା ଟେକି ଏପଟ ସେପଟ ବୁଲି ସମସ୍ତଙ୍କୁ ଧଳାଦାଗ ଦେଖାଏ । ପଛରେ ରହି ଯାଇଥିବା ପକ୍ଷୀଙ୍କ ଲାଗି ଉଡ଼ିବା ସମୟରେ ଏହି ଧଳା ଦାଗ ସଙ୍କେତ ପରି କାର୍ଯ୍ୟକରେ ।

ଦେହସାରା ଠୋପାଠୋପା ଚିହ୍ନଥିବା ହରିଣ ଲାଗି ମଧ୍ୟ ସଙ୍କେତ ଠିକ୍ ସେହିଭଳି । ହରିଣର ଲାଞ୍ଜ ତଳକୁ ବିରାଟ ଧଳା ଦାଗ ଥାଏ । ଏହାକୁ "ଦର୍ପଣ" କୁହାଯାଏ । ବୁଦା କିମ୍ବା ଗଛ ଉହାଡ଼ରେ ଏହି ଜାତୀୟ ହରିଣ ନିଜକୁ ଲୁଚାଇ ପାରେ । ଏହା ହେଉଛି ତା'ର ପ୍ରତିରକ୍ଷାର ସମ୍ବଳ । ବିପଦ ପଡ଼ିଲେ ସେ ଦୌଡ଼ି ପଳାଏ । ଘରି ଆଡ଼େ ଘଞ୍ଚ ବୁଦା ରହିଥିବାରୁ ହରିଣଛୁଆର ମା ଯଦି ଟିକିଏ ଦୂରକୁ ଦୌଡ଼ି ପଳାଏ, ପିଲଟି ତା ମାକୁ ଦେଖିବା କଷ୍ଟକର ହୋଇଯାଏ । ହରିଣ ପିଲଟି ହଜି ନଯିବା ପାଇଁ ମା'ର ଦର୍ପଣଟି ସାହାଯ୍ୟ କରେ । ସବୁଜ ବୁଦା ଗହଳିରେ ହରିଣ ଦେହର ଧଳା ଦର୍ପଣ ଦାଗ ସ୍ପଷ୍ଟ ଦେଖାଯାଏ ଏବଂ ଏହା ପିଲା ହରିଣଟିକୁ ସତେ ଯେମିତି କହେ : "ମୁଁ ଏଇଠି, ଚାଲି ଆସ !" ମାତ୍ର ମା ହରିଣ ଯଦି ଦୌଡ଼ିଲା ବେଳେ ତା'ର ଧଳା ଲୋମରେ ଭରା ଭିତରପଟ ଲାଞ୍ଜଟିକୁ ତଳକୁ ଖସାଇ ଦିଏ, ତେବେ ପିଲା ହରିଣକୁ ଏହା ସତେ ଯେମିତି କହେ : "ରହିଯା, ଦୌଡ଼ ନାହିଁ !"

ମରୁଭୂମିରେ ଏକ ପ୍ରକାର ଏଣ୍ଟୁଅ ବାସ କରେ, ଯାହାର ମରୁଭୂମିରେ ବାସ



ଲର୍କ୍ ପକ୍ଷୀ

କରୁଥିବା ଅନ୍ୟାନ୍ୟ ଜୀବଙ୍କ ପରି ଦେହର ରଙ୍ଗ ବାଲି ଭଳି । କିନ୍ତୁ ଏହି ଏଣ୍ଟୁଅ ଏପରି ଭାବେ ନିଜକୁ ଲୁଚାଇ ପାରେ, ଯେ, ତା'ର ବନ୍ଧୁବାନ୍ଧବ ମଧ୍ୟ ଖୋଜି ଖୋଜି ତାକୁ ପାଆନ୍ତି ନାହିଁ । ଯେତେବେଳେ ଏଣ୍ଟୁଅଟି ଚାହେଁ ଯେ, ତାକୁ ଅନ୍ୟମାନେ ଦେଖନ୍ତୁ, ସେତେବେଳେ ସେ ତା'ର ଲାଞ୍ଜଟିକୁ ଉପରକୁ ଟେକି ଦିଏ, ଲାଞ୍ଜର ତଳିପଟେ କଳା ଓ ଧଳା ରଙ୍ଗର ସୀମାନ୍ତ ଅଞ୍ଚଳର ଖଣ୍ଡ ଭଳି ଧାର ପଡ଼ିଥାଏ । ଏଣ୍ଟୁଅଟି ଯେତେବେଳେ ନିଜର ଲାଞ୍ଜଟିକୁ ଟେକି ଦିଏ, ଅନେକ ଦୂରରୁ ଏହା ଦେଖିହୁଏ । ସତେ ଅବା ଏହା ଦ୍ୱାରା ସେ ଜଣାଇ ଦେବାକୁ ଚାହେଁ : "ମୁଁ ଏଇଠି, ତୁମେ ଆସ !"



ବୁଲ୍ଫିନଚ୍ ଚଢ଼େଇମାନେ

ପୁରୁଷ ରେଡ୍ଷ୍ଟାର୍ଟ ଚଢ଼େଇ ରଙ୍ଗ ସାହାଯ୍ୟରେ ଆଉ ଏକ କଥା କହିପାରେ । ସ୍ତ୍ରୀ ପକ୍ଷୀ ଉଡ଼ିବା ଆଗରୁ ପୁରୁଷ ପକ୍ଷୀଟି ଉଡ଼ି ଆସି ଗଛ ଖୋଲରେ ନିଜର ଘର ଖୋଜେ । ଏହା ପରେ ତା ପାଇଁ ଜଟିଳ ପରିସ୍ଥିତି ଦେଖାଦିଏ : ତା'ର ଘର ଅଛି, ମାତ୍ର ସହଚରୀ ନାହିଁ । ଯଦି ସେ ଘର ଛାଡ଼ି ସହଚରୀ ଖୋଜିବାକୁ ଚାଲିଯାଏ, ତେବେ ବସାଟିକୁ ଅନ୍ୟ କେହି ମାଡ଼ି ବସିବ । ମାତ୍ର ଏହି ଜଟିଳ ପରିସ୍ଥିତିର ସମାଧାନ ଲାଗି ପୁରୁଷ ରେଡ୍ଷ୍ଟାର୍ଟ ପକ୍ଷୀଟି ଗୋଟିଏ ଉପାୟ ପାଞ୍ଚେ । ତାହା ହେଲା, ଗଛ ଖୋଲରୁ ବାହାରି ଆସି ନିଜର ଉଜ୍ଜ୍ୱଳ ଲାଲ ରଙ୍ଗର ପୁଚ୍ଛକୁ ମେଲାଇ ଦେଇ ବସିରହେ । ଅନେକ ଦୂରରୁ ତାହାର ଏହି ପୁଚ୍ଛ ଦୃଷ୍ଟି ଆକର୍ଷଣ କରେ, କାରଣ ତାହା ଝଲସି ଉଠୁଥାଏ ଠିକ୍ ପତାକା ଭଳି । ମାଈ ପକ୍ଷୀ ଏହାର ଅର୍ଥ ଭଲ ରୂପେ ବୁଝିପାରନ୍ତି ଏବଂ ଅପେକ୍ଷା କରିବାକୁ ରହନ୍ତି ନି ।

ରଙ୍ଗର ଭାଷା ବିବିଧ ଏବଂ ପଶୁପକ୍ଷୀ ଏହାକୁ ଜୀବନର ପ୍ରତ୍ୟେକ କ୍ଷେତ୍ରରେ ବ୍ୟବହାର କରି ଥାଆନ୍ତି । ଜୀବଜନ୍ତୁ "ଉଜ୍ଜ୍ୱଳିତ ରଙ୍ଗ" ମଧ୍ୟ ବ୍ୟବହାର କରନ୍ତି – ଆଲୋକ ସାହାଯ୍ୟରେ କଥାବାର୍ତ୍ତା ହୁଅନ୍ତି । ସେମାନେ ବ୍ୟବହାର କରୁଥିବା ଆଲୋକ ପ୍ରକୃତ ମନେହେଉଥିଲେ ମଧ୍ୟ, ତାହା ପ୍ରକୃତ ଆଲୋକ ନୁହେଁ ।



ଆମ ଅଞ୍ଚଳରେ ଛୋଟ ଖଇରିଆ ରଙ୍ଗର ଜୁଳୁଜୁଳିଆ ପୋକ ବାସ କରନ୍ତି । ଦିନବେଳେ ତା'ର କରାମତି ଦେଖି ହୁଏ ନାହିଁ: ମାତ୍ର ରାତି ଆସିଗଲେ ସେ ଗୋଟିଏ ଛୋଟ ଉଡ଼ନ୍ତା ଟର୍ଚ୍ଚ ଲାଇଟ୍ ପରି କାମକରେ । ଘାସ ଉପରେ ଆଉ ଗୁଡ଼ିଏ ଜୁଳୁଜୁଳିଆ ପୋକ ସ୍ଥିର ହୋଇ ବସି ଥାଆନ୍ତି – ସେମାନଙ୍କର ଆଲୋକ ଅଧିକ ତେଜୀୟାନ୍ ଦେଖାଯାଏ । ଏହି କୀଟ ପତଙ୍ଗମାନେ ଦେଖିବାକୁ ଜିଆ ଭଳି । ରୁଷିଆରେ ଏହି ଜାତୀୟ ପୋକଙ୍କୁ "ଇଭାନୋଭ୍ ଜିଆ" କହନ୍ତି । ପ୍ରକୃତରେ ଏହା ଜିଆ ନୁହେଁ, ଉଡ଼ୁଥିବା ଜୁଳୁଜୁଳିଆ ପୋକ ପରି ଏହା ମଧ୍ୟ ଗୋଟିଏ ପୋକ, କିନ୍ତୁ ଏହା ମାଈ ଜୁଳୁଜୁଳିଆ ପୋକ । ତୁମେମାନେ ଜାଣିଥିବ, ଯେ କେତେ



ରେଡ୍‌ଷ୍ଟାର୍ଟ ଚଢ଼େଇ



ଜୁଳୁଜୁଳିଆ ପୋକମାନେ

ଜାତିର କୀଟପତଙ୍ଗଙ୍କ ମଧ୍ୟରେ ପୁରୁଷ ଓ ନାରୀ ପରସ୍ପରଠାରୁ ସମ୍ପୂର୍ଣ୍ଣ ଭିନ୍ନ ।

ପୁରୁଷ ଜୁଳୁଜୁଳିଆ ପୋକଟି ଉଡ଼ିଲା ବେଳେ ଆଲୋକ ସଙ୍କେତ ଦେଇ କହେ : "ମୁଁ ତୋତେ ଖୋଜୁଛି । ତୁ କେଉଁଠି ?" ମାଈ ଜୁଳୁଜୁଳିଆ ପୋକ ଘାସ ଉପରେ ବସିରହି କହେ : "ମୁଁ ଏଇଠି ।" ଉଡ଼ୁଥିବା ଜୁଳୁଜୁଳିଆ ପୋକ ଘାସ ଉପରେ ତା ସାଥୀ ଦେହର ଆଲୁଅ ସଙ୍କେତ ଦେଖି ତା ପାଖକୁ ଉଡ଼ି ଆସେ ।

ରୁଷ୍ ଦେଶରେ ମାତ୍ର ଗୋଟିଏ ପ୍ରକାର ଜୁଳୁଜୁଳିଆ ପୋକ ବାସ କରନ୍ତି । ସେଥିପାଇଁ ସେମାନଙ୍କ ସଙ୍କେତ ସେତେ ଭିନ୍ନ ପ୍ରକାରର ନୁହେଁ, କାରଣ ନିଜ ସମ୍ବନ୍ଧରେ କହିବା ଦରକାର ପଡ଼େ ନାହିଁ – ସେମାନଙ୍କ ପାଇଁ ପରସ୍ପରକୁ ଦେଖିବା ହିଁ ବଡ଼ କଥା । ଉଷ୍ଣ ମଣ୍ଡଳୀୟ ଜଂଗଲରେ ବିଭିନ୍ନ ପ୍ରକାର ଜୁଳୁଜୁଳିଆ ପୋକ ଦେଖିବାକୁ ମିଳନ୍ତି, ତେଣୁ "ଆଲୋକର ଭାଷା " ବିବିଧ । ଏହା ହେବା ସ୍ୱାଭାବିକ : ଯଦି ସବୁ ଜୁଳୁଜୁଳିଆ ପୋକ ଏକ ପ୍ରକାର ଆଲୋକ ଦେଉ ଥାଆନ୍ତେ, ତେବେ ସେମାନେ ନିଜର ବନ୍ଧୁ କୁଟୁମ୍ବଙ୍କୁ କିପରି ଜାଣି ପାରନ୍ତେ ? ଯେ କୌଣସି ଆଲୋକ ଦେଖିଲେ, ସେମାନେ ସେଠାକୁ ଉଡ଼ି ଯାଆନ୍ତେ ଏବଂ ଅଧିକାଂଶ ସମୟରେ ଭୁଲ କରୁ ଥାଆନ୍ତେ । ତେଣୁ ଏ କ୍ଷେତ୍ରରେ ପ୍ରତ୍ୟେକ ଜୁଳୁଜୁଳିଆ ପୋକର "ଆଲୋକର ସ୍ୱତନ୍ତ୍ର ଭାଷା" ରହିଛି । ଅନେକ ପ୍ରକାର ଜୁଳୁଜୁଳିଆ ପୋକ ଥିବାରୁ, ସେମାନଙ୍କର ଭାଷା ମଧ୍ୟ ବହୁ ପ୍ରକାରର ହୋଇଥାଏ । କେତେକ ଜୁଳୁଜୁଳିଆ ପୋକ କ୍ରମାଗତ ଭାବେ ଆଲୁଅ ଦେଇ ଥାଆନ୍ତି ତ ଆଉ କେତେକ ମିଞ୍ଜିମିଞ୍ଜି ଆଲୁଅ ଦିଅନ୍ତି । ମାତ୍ର ଏତିକିରେ କଥା ଶେଷ ହୋଇ ଯାଏ ନାହିଁ । କେତେକ ଜୁଳୁଜୁଳିଆ ପୋକ ମିଞ୍ଜି ମିଞ୍ଜି ଆଲୋକ ଦେବାର ତାରତମ୍ୟ ଶୀଘ୍ର ଥାଏ ତ ଅନ୍ୟ କେତେକ ପୋକ ରହି ରହି ଆଲୋକ ଦିଅନ୍ତି । କେତେକଙ୍କ ଦେହରେ ଆଲୁଅ ସେହିଭଳି ଡେରି ପର୍ଯ୍ୟନ୍ତ ଜଳି ରହେ ଆଉ କେତେକଙ୍କ ଦେହରେ ଦୁକ୍ ଦୁକ୍ ହୋଇ ଜଳେ । ଏହା ଛଡ଼ା କେତେକ ଜୁଳୁଜୁଳିଆ ପୋକ ଉପରକୁ ଉଡ଼ିଲା ବେଳେ ଆଲୁଅ ଦିଅନ୍ତି, ଅନ୍ୟ କେତେକ ତଳକୁ ଖସିଲା ବେଳେ ଆଲୁଅ ଦିଅନ୍ତି । କେତେକ ନିଃସଙ୍ଗ ଭାବେ ଆଲୁଅ ଦିଅନ୍ତି ତ ଆଉ କେତେକ ସଦଳବଳେ ଆଲୁଅ ଦିଅନ୍ତି । ସେମାନଙ୍କର ଟର୍ଚ୍ଚ ଲାଇଟ୍‌ର ଆକାର ମଧ୍ୟ ଭିନ୍ନ । କେତେକଙ୍କ ଦେହରେ ଗୋଲ ତ ଆଉ କେତେକଙ୍କ ଦେହରେ ଲମ୍ବାଳିଆ ଓ ତାରଭଳିଆ ଲମ୍ବା ଟର୍ଚ୍ଚବତି ଲାଗିଥାଏ । ଉଷ୍ଣ ମଣ୍ଡଳୀୟ ଆମେରିକାରେ ଏପରି ପୋକ ଅଛନ୍ତି, ଯେଉଁମାନଙ୍କର ଛାତି କିମ୍ବା ପିଠି ଉପରେ ଦୁଇଟି ବଡ଼ ବଡ଼ ଟର୍ଚ୍ଚ ଲାଇଟ୍ ଥାଏ । ଏହି ଟର୍ଚ୍ଚବତି ବତି ପରି ହୋଇଥିବାରୁ ପୋକଙ୍କର ନାମ ସେହି ଅନୁସାରେ "ମଟରଗାଡ଼ିଆ ପୋକ" ଦିଆ ଯାଇଛି । ଏହି ପୋକ ସେମାନଙ୍କ ଦେହର ଆଲୁଅକୁ ବେଳେ ବେଳେ ଉଜ୍ଜ୍ୱଳ ତ ଆଉ କେତେବେଳେ ମଳିନ କରି ପାରନ୍ତି । ଲାଞ୍ଜ ପାଖରେ ମଧ୍ୟ ସେମାନଙ୍କର ଆଉ ଗୋଟିଏ ଟର୍ଚ୍ଚବତି ଥାଏ । ଉଡ଼ିଲା ବେଳେ ଓ ତଳକୁ ଖସିବା ସମୟରେ ଏହା ଫିକା ସବୁଜ କିମ୍ବା ଫିକା ହଳଦିଆ ରଙ୍ଗରେ ଜଳିଉଠେ ।

ଏପରି ମଧ୍ୟ ଜୁଳୁଜୁଳିଆ ପୋକ ଅଛନ୍ତି, ଯେଉଁମାନଙ୍କର ଟର୍ଚ୍ଚବତିର ରଙ୍ଗ ଲାଲ ଓ ସବୁଜ । ସେମାନଙ୍କୁ "ଜୁଳୁଜୁଳିଆ ବତିଖୁଣ୍ଟ ପୋକ" କୁହାଯାଏ । ଏହି ମାଈ ପୋକଟି ଆକାରରେ ଦେଖିବାକୁ ଗୋଟିଏ ଧଳା ଶୁଅଁବାଳୁଆ ପରି ଦିଶେ ଓ ତା'ର ଦୁଇପାଖ ତଳେ ଧାଡ଼ି ହୋଇ ସବୁଜ ବତି ଲାଗିଥାଏ । ମୁଣ୍ଡରେ ଥାଏ

ଲଇ ଟର୍ଚ୍ଚ ବତି । ପୋକଟି ନିଜର ଇଚ୍ଛା ମୁତାବକ ସବୁ ବତିକୁ ଏକାଠି କିମ୍ବା ପୃଥକ୍ ଭାବେ ଜଳାଇ ପାରେ ।

ଗଭୀର ସମୁଦ୍ର ଭିତରେ ଆଲୋକ ଦୃଶ୍ୟ ଆହୁରି ବିବିଧ । ସେଠାରେ ପ୍ରାୟ ସମସ୍ତେ ଆଲୋକ ଭାଷାରେ କଥା ହୁଅନ୍ତି । ସବୁଠୁ ଛୋଟ ସମୁଦ୍ର ଜୀବଠାରୁ ଆରମ୍ଭ କରି ଗଭୀର ପାଣିରେ ରହୁଥିବା ବଡ଼ ବଡ଼ ମାଛ ମଧ୍ୟ ଆଲୋକ ଭାଷାରେ କଥା ହୁଅନ୍ତି । କେତେକ ମାଛଙ୍କର ସାରା ଦେହରୁ ଆଲୋକ ଉତ୍କୀର୍ଣ୍ଣ ହୁଏ ତ, ଆଉ କେତେକଙ୍କର ମୁଣ୍ଡରେ ଆଲୁଅର ଉଜ୍ଜ୍ୱଳ ପ୍ରୋଜେକ୍ଟର ଲାଗିଥାଏ । ଏପରି ମାଛ ଅଛନ୍ତି, ଯେଉଁମାନଙ୍କର ଦେହ, ପର୍ବ ସମୟରେ ଆଲୋକରେ ସଜା ହୋଇଥିବା ଜାହାଜ ପରି ଦିଶେ ଆଉ କେତେକ ମାଛ ପାଟି ଖୋଲିଦେଲେ ମାତ୍ରେ ଦେଖାଯାଏ, ଯେପରି ତା'ର ପେଟ ଭିତରେ ହୁତୁହୁତୁ ହୋଇ ନିଆଁ ଜଳୁଛି ।

ପରସ୍ପରକୁ ଜାଣିବାକୁ; ଅନ୍ଧକାରରେ ଜଣେ ଅନ୍ୟ ଜଣକୁ ଖୋଜି ପାଇବାକୁ ଏବଂ କଥାବାର୍ତ୍ତା ହେବାକୁ ଏହା ଅତି ଆବଶ୍ୟକ ।



ଗଭୀର ପାଣିରେ ରହୁଥିବା ମାଛମାନେ

## ଆଉ କେଉଁ ଭାଷା ?

ବୈଜ୍ଞାନିକମାନଙ୍କ ମତରେ ପୃଥିବୀରେ ରହୁଥିବା ଲୋକମାନେ ଦୁଇ ହଜାରରୁ ଅଧିକ ଭାଷାରେ କଥାବାର୍ତ୍ତା କରନ୍ତି । ଜୀବଜନ୍ତୁଙ୍କର ଭାଷା ସଂଖ୍ୟା ଏହାଠାରୁ ଯଥେଷ୍ଟ ଅଧିକ । ଆମ ପୃଥିବୀରେ ଯେତେ ପ୍ରକାର ଜୀବଜନ୍ତୁ ଅଛନ୍ତି – ସେତେ ପ୍ରକାର ଜୀବ ଭାଷା ରହିଛି । ପ୍ରାୟ ସମସ୍ତଙ୍କର ସ୍ୱତନ୍ତ୍ର ଭାଷା ରହିଛି, ସ୍ୱତନ୍ତ୍ର ଭାବବିନିମୟର ଉପାୟ ଅଛି ।

ଉଦାହରଣ ସ୍ୱରୂପ, ତୁମେମାନେ ଜାଣିଛ ଯେ, ପ୍ରତ୍ୟେକ ପକ୍ଷୀର ନିଜର ଗୀତ ଅଛି (ଯଦିବା ସେହି ଗୀତ ଅନ୍ୟଠୁ ଅନୁକରଣ କରିଥାଏ) । କିନ୍ତୁ ଏପରି ପକ୍ଷୀ ମଧ୍ୟ ଅଛନ୍ତି, ଯେଉଁମାନେ ଗୀତ ଗାଇ ପାରନ୍ତି ନାହିଁ । ଏହାଛଡ଼ା ସେମାନଙ୍କର କଣ୍ଠ ନାହିଁ । ଏହା ସତ୍ତ୍ୱେ ମଧ୍ୟ ସେମାନେ କଥା ହୁଅନ୍ତି । କଥା ହେବାକୁ ଅନ୍ୟ କୌଣସି ଉପାୟ ବାହାର କରନ୍ତି ।

ତୁମେମାନେ ବଗ କଥା ମନେ ପକାଅ । ତା'ର ସୁନ୍ଦରିଆ ପର ଓ ଉଚ୍ଚତା ପାଇଁ





ସେ ଖୁବ୍ ଭଲ । କିନ୍ତୁ କଣ୍ଠ ତା'ର ମୋଟେ ଫିଟେ ନାହିଁ । କ'ଣ କରାଯିବ ? ନିଜର ସହଚରୀକୁ ବସାକୁ ଆସିଲା ବେଳେ ଭଲ ଭାବେ ସ୍ୱାଗତ କରିବା ଦରକାର କିମ୍ବା ବସାର ଅତି ନିକଟକୁ କୌଣସି ଆଗନ୍ତୁକର ଆଗମନକୁ ଭୟଭୀତ କରିବା ଦରକାର । ଏଥିଲାଗି ବଗ ଥଣ୍ଟରେ ପାଳୁ ପାଳୁ କରେ । କେବଳ ପାଳୁ ପାଳୁ କରେ ନାହିଁ, ବେଳେବେଳେ ଉଚ୍ଚ ତ ଆଉ ବେଳେବେଳେ କ୍ଷୀଣ ଶବ୍ଦରେ ଓ ବହୁତ ଥର ଓ କମ୍ ଥର କରି ଭାବ ପ୍ରକାଶ କରେ ।



କାଠହଣା

କେତେକ ପକ୍ଷୀଙ୍କର ପରରେ ସ୍ୱତନ୍ତ୍ର କଟାଦାଗ ଥିବାରୁ ସେମାନେ ଉଡ଼ିବା ବେଳେ ସୁସୁରି ଭଳି ଶବ୍ଦ କରନ୍ତି । ସେମାନଙ୍କୁ ଚିହ୍ନିବା ପାଇଁ ଏହି ସୁସୁରି ଶବ୍ଦ କରନ୍ତି, ଯାହାର ଅର୍ଥ ହେଲା "ଆମେ ଉଡ଼ୁଛୁ" । ସେହି ଜାତିର ଅନ୍ୟ ପକ୍ଷୀ ଏହି ଶବ୍ଦକୁ ଭଲରୂପେ ବୁଝି ପାରନ୍ତି ।

ନିଜର ପର ସାହାଯ୍ୟରେ କାଦୁଅ ଖୁମ୍ପୀ ଚଢ଼େଇ ନିଜ ବିଷୟରେ ଅବଗତ କରାଏ । ଖୁବ୍ ଉଚ୍ଚରୁ ଯେତେବେଳେ ଏହି ଚଢ଼େଇ ସେକେଣ୍ଡ ପ୍ରତି ୯-୧୦ ମିଟର ଗତିରେ ତଳକୁ ଖସେ, ତା ଲାଞ୍ଜର ସ୍ୱତନ୍ତ୍ର ପର ହଲିବାକୁ ଲାଗେ ଏବଂ ଏହା ଫଳରେ ଖୁବ୍ ଜୋରରେ ପେଁ ପେଁ ଶବ୍ଦ ହୁଏ ।

କେତେକ ପକ୍ଷୀଙ୍କର କଣ୍ଠ ଥିଲେ ମଧ୍ୟ ସେମାନେ ବିଭିନ୍ନ ଯନ୍ତ୍ର ଓ ଅନ୍ୟ ଜିନିଷର ସାହାଯ୍ୟରେ କଥାବାର୍ତ୍ତା କରନ୍ତି । ଉଦାହରଣ ସ୍ୱରୂପ କାଠହଣା ପକ୍ଷୀ । ଅନେକ ସମୟରେ ସେମାନେ ଶୁଖିଲା ଗଛର ଗଣ୍ଡି ଉପରେ ନିଜର ଥଣ୍ଟକୁ ଜୋରରେ ପିଟିବାରେ ଲାଗିଥାନ୍ତି । ସେ ପୋକଙ୍କୁ କାଠ ଭିତରୁ ଆଣିବା ପାଇଁ ଏହା କରେ ନାହିଁ, ସେ ଚାହେଁ ନିଜର ବନ୍ଧୁ କୁଟୁମ୍ବଙ୍କୁ ତା ବିଷୟରେ ଜଣାଇ ଦେବାକୁ । ଯେଉଁମାନଙ୍କ ପାଇଁ ଏହି ଶବ୍ଦ ଶୁଣିବା ଦରକାର ନୁହେଁ, ଭିନ୍ନ ଭିନ୍ନ କାଠହଣା ଚଢ଼େଇ ଭିନ୍ନ ଭିନ୍ନ ଶବ୍ଦ କରି ଥାଆନ୍ତି ।

ଠକ୍ ଠକ୍ ଶବ୍ଦ କରିବା ଜୀବ ଜଗତରେ ଖୁବ୍ ପ୍ରଚଳିତ । ଅନେକ ଜୀବଜନ୍ତୁଙ୍କର ଏହା ହେଉଛି ଶବ୍ଦ ସଙ୍କେତ ।

କେତେକ ପୋକ କାଠ ଭିତରେ ରହି ତାଙ୍କ ବିଷୟରେ ଜଣାଇ ଦେବାକୁ ଭୁଲନ୍ତି ନାହିଁ । ସେଥି ଲାଗି ସେମାନେ ନିଜ ଗାତର କାଛକୁ ଅନେକ ଥର ମୁଣ୍ଡରେ ପିଟନ୍ତି । ଏହା ଅବଶ୍ୟ ପୋକମାନଙ୍କ ପାଇଁ ପ୍ରୀତିକର ନୁହେଁ, ମାତ୍ର କରାଯିବ କ'ଣ ?



ଉଇପୋକ





କାଦୁଅ ଖୁମ୍ପୀ ଚଢ଼େଇମାନେ

ଅନ୍ୟ କୌଣସି ଉପାୟ ସେମାନଙ୍କୁ ତ ଜଣା ନାହିଁ । ନିଜ ବିଷୟରେ କହିବାକୁ ମନ ବଳିଛି ।

ଅନେକ ଦିନ ଧରି ଲୋକମାନଙ୍କ ପାଇଁ ଆଶ୍ଚର୍ଯ୍ୟ କଥା ଥିଲା ଯେ, ବିପଦ ପଡ଼ିଲେ ଉଇପୋକ କିପରି ଦୂରସ୍ଥାନରୁ ପରସ୍ପରକୁ ସଙ୍କେତ ଦିଅନ୍ତି । ଅଳ୍ପ ଦିନ ପୂର୍ବେ ଏହି ରହସ୍ୟର ଉତ୍ତର ମିଳିଥିଲା । ଜଣା ପଡ଼ିଲା ଯେ, କାଠ ଗଣ୍ଡି ଭିତରେ ଥିବା ପ୍ରହରୀ ଉଇ ବିପଦର ଆଭାସ ପାଇଲା ମାତ୍ରେ ନିଜର ମୁଣ୍ଡକୁ କାଠ ଗଣ୍ଡି କାନ୍ଥରେ ପିଟିବାକୁ ଲାଗେ । ଅନ୍ୟ ଉଇମାନେ ଏହି ଶବ୍ଦ ଶୁଣି ଲଢ଼େଇ କରିବାକୁ ପ୍ରସ୍ତୁତ ହୋଇ

ଯାଆନ୍ତି । ଏହି କଥା ପରୀକ୍ଷା କରିବାକୁ ଯାଇ ବୈଜ୍ଞାନିକମାନେ ଉଇ କାଠ ଗଣ୍ଡିର କାଛ ଶବ୍ଦ ନଭେଦିଲା ପରି ଜିନିଷ ରଖି ଦେଲେ । ପ୍ରହରୀ ଉଇ ଯେତେବେଳେ ବିପଦ ସଙ୍କେତ ଦେଲା, ଅନ୍ୟମାନଙ୍କୁ ତାହା ଶୁଣାଗଲା ନାହିଁ । ଶତ୍ରୁ କାଠ ଗଣ୍ଡି ଭିତରକୁ ପ୍ରବେଶ କରି ଉଇଙ୍କୁ ଚକିତ କରି ଦେଇଥିଲେ ।

ଠକ୍ ଠକ୍ ଶବ୍ଦ କରି – ନିଜର ଗୋଡ଼ କିମ୍ବା ଲାଙ୍ଗୁଡ଼କୁ ମାଟି ଉପରେ ପିଟି – ମୂକ ଜନ୍ତୁ – କଙ୍ଗାରୁ କଥାବାର୍ତ୍ତା କରିଥାଏ । ଠକ୍ ଠକ୍ ଶବ୍ଦ କରି ଜାଣିଥିବାରୁ ଏବଂ ଏଭଳି ଶବ୍ଦର ଅର୍ଥ ବୁଝି ପାରୁଥିବାରୁ, କଙ୍ଗାରୁ ମୂକ ହୋଇଥିଲେ ମଧ୍ୟ ନିଜର କାମ ଚଳାଇ ନିଏ ।

ଢୋଲ ପରି ଠକ୍ ଠକ୍ ପିଟା ଶବ୍ଦ, ସମ୍ଭବତଃ, ସେତେ ଖରାପ ନୁହେଁ, କାରଣ ଠେକୁଆମାନେ ଅନ୍ୟାନ୍ୟ ଭାଷା ଜାଣିଥିଲେ ମଧ୍ୟ ଏହି ଶବ୍ଦକୁ ବ୍ୟବହାର କରନ୍ତି ।

ଅଣ୍ଡିରା ବୁଢ଼ିଆଣୀ ମାଈ ବୁଢ଼ିଆଣୀ ସହିତ କିପରି କଥାବାର୍ତ୍ତା ହୁଏ, ତାହା ଅତି କୌତୂହଳର କଥା । ଦୁଷ୍ଟା ମାଈ ବୁଢ଼ିଆଣୀ, ଯିଏକି ଭଲ ଭାବେ ଦେଖି ପାରେ ନାହିଁ, ଯେ କୌଣସି ଗତି କରୁଥିବା ଜିନିଷ ଉପରକୁ ଲମ୍ଫଦେଇ ପାରେ । ଏପରିକି, ଯଦି ପରେ ଜାଣିବାକୁ ପାଏ ଯେ ସେ ନିଜ ଜାତୀୟ ବୁଢ଼ିଆଣୀ ଉପରକୁ ହିଁ ଡିଆଁ ମାରିଛି, ଯିଏକି ତା ଲାଗି ଉପହାର ଧରି ଆସୁଥିଲା, ତେବେ ମଧ୍ୟ ତା'ର ରାଗ କମି ଯାଏ ନାହିଁ । ଆରମ୍ଭ କରିଥିବା କାର୍ଯ୍ୟ ସେ ଶେଷ କରେ – ପୁରୁଷ ବୁଢ଼ିଆଣୀଟିକୁ ଖାଇ ଦିଏ । ତେଣୁ ପୁରୁଷ ବୁଢ଼ିଆଣୀ ବିପଦ ଆଶଙ୍କା କରି ତା'ର ସହଚରୀ ପାଖକୁ ଯାଏ ଏବଂ ଅନେକ ଦୂରରୁ ସଙ୍କେତ ଦେଇଥାଏ – "ମୁଁ ଆସୁଛି, ମୁଁ ତୋ ବର" । ଏହା ସତ୍ତ୍ୱେ ମଧ୍ୟ ତା ମନରେ ବିଶ୍ୱାସ ନଥାଏ ଯେ ସେ ବଞ୍ଚିଯିବ । ତେଣୁ ମାଈ ବୁଢ଼ିଆଣୀ ତା'ର ଗତି ବଢ଼ାଇବା ମାତ୍ରେ ପୁରୁଷ ବୁଢ଼ିଆଣୀ ବିଜୁଳି ବେଗରେ ନିରାପଦ ସ୍ଥାନକୁ ଡେଇଁ ପଡ଼େ । ପୁଣି ସବୁ କାମ ମୂଳରୁ ଆରମ୍ଭ ହୁଏ : ଧୀରେ ଧୀରେ ମାଈ ବୁଢ଼ିଆଣୀ ପାଖକୁ ଯାଇ ସେ ସଙ୍କେତ ଦିଏ ।

ଜାଲ ବୁଣି ପାରୁଥିବା ବୁଢ଼ିଆଣୀ ଲାଗି କଥାଟା ଟିକିଏ ସହଜ । ପୁରୁଷ ବୁଢ଼ିଆଣୀ ତା'ର ଜାଲକୁ ମାଈ ବୁଢ଼ିଆଣୀର ଜାଲ ଆଡ଼କୁ ବଢ଼ାଇ ଦିଏ ଓ ତାକୁ ଆସ୍ତେ ଟାଣିବାକୁ ଲାଗେ । ମାତ୍ର ଏହା ସାଧାରଣ ଟଣା ନୁହେଁ, ଏହା ହେଉଛି ଏକ ନିର୍ଦ୍ଦିଷ୍ଟ ସଙ୍କେତ । ପ୍ରଥମେ ସେ ନିଜ ସଂପର୍କରେ କହେ : "ମୁଁ ଆସିଛି ।" ପରେ ସେ ଦେଉଥିବା ସଙ୍କେତର ଅର୍ଥ ହେଲା : "ତୁମ ପାଖକୁ ମୁଁ ଆସି ପାରେ କି?" ମୁଁ ତମକୁ ଆହୁରି ଅନେକ କଥା କହିଲି ନାହିଁ ।



କଙ୍ଗାରୁ

ଉଦାହରଣ ସ୍ୱରୂପ, ଅଣ୍ଡାଭିତରେ ରହି ମଧ୍ୟ ଛୋଟ କୁମ୍ଭୀରଛୁଆ କିପରି ତାଙ୍କର ମାକୁ ଡାକିବା ଆରମ୍ଭ କରନ୍ତି ଓ ମା କିପରି ବାଲି ଖୋଳି ଛୋଟ ଛୁଆଙ୍କୁ ପଦାକୁ ଆସିବାକୁ ସାହାଯ୍ୟ କରେ ।



# ଶେଷ କଥା ପରିବର୍ତ୍ତେ

ଏହାଛଡ଼ା, ହାତୀ କିପରି କଥା କହେ । ହାତୀ ନିଜର ଅନୁଭୂତିକୁ କଣ୍ଠ ସାହାଯ୍ୟରେ କହିପାରେ । ଉଦାହରଣ ସ୍ୱରୂପ ଆସ୍ତେ ଗୁଁ ଗୁଁ ଶବ୍ଦ କରି ଘୁମୁରିଲେ, ତାହା ତା ମନର ସନ୍ତୋଷ ପ୍ରକାଶ କରେ, କାନଫଟା ଗର୍ଜନ କରିଲେ— ତାହା ଭୟର କାରଣ ହୁଏ, ତୀବ୍ର ହମ୍ବାରଡ଼ି—ଆକ୍ରମଣ ଆଗରୁ ବିପଦ ସଙ୍କେତ ଦିଏ ।

ନିଜର ଭାବ ଓ ଅଙ୍ଗ ପ୍ରତ୍ୟଙ୍ଗ ଦ୍ୱାରା ମଧ୍ୟ ହାତୀ କଥା କହି ପାରେ । ଏ କ୍ଷେତ୍ରରେ କାନ ଓ ଶୁଣ୍ଢ ତାକୁ ସାହାଯ୍ୟ କରନ୍ତି ।

ଗଧିଆ କିପରି କଥା ହଅନ୍ତି ସେ କଥା ମଧ୍ୟ କହିବାର ଥିଲା : ଧୀର ଓ ଦୀର୍ଘ କଣ୍ଠର ଶବ୍ଦର ଅର୍ଥ ହେଲା—ଏକାଠି ହୁଅ, ଉଚ୍ଚ କଣ୍ଠର ସ୍ୱରରୁ ଜଣା ପଡ଼େ— ପାଦଚିହ୍ନ ଦେଖି ପଥ ଅନୁସରଣ କର । ରହିରହି ଭୋକିବା ଓ ଚିତ୍କାରରୁ ଜଣାଯାଏ ଯେ, ଶୀକାର ଦେଖା ଗଲାଣି ।

ସଂକ୍ଷିପ୍ତରେ କହିଲେ, ସବୁ ଜୀବଜନ୍ତୁଙ୍କର କଥାବାର୍ତ୍ତା ବିଷୟ ବର୍ଣ୍ଣନା କରିବାକୁ ହେଲେ, ଗୋଟିଏ ବହି ଲେଖିଲେ ଚଳିବ ନାହିଁ, ଏହି ପରି ଅନେକ ବହି ଲେଖାଯିବା ଦରକାର ।

ଜୀବଜନ୍ତୁମାନେ କିପରି କଥା ହୁଅନ୍ତି ଓ ସେମାନଙ୍କର କଥା କିପରି ମଣିଷର କଥାବାର୍ତ୍ତାଠାରୁ ପୃଥକ୍, ସେହିକଥା ତୁମମାନଙ୍କୁ ଏହି ବହି ଖଣ୍ଡିକରେ ମୁଁ ଜଣାଇବାକୁ ଚାହିଁଥିଲି । ଏହା ହେଲା ପ୍ରଥମ କଥା ।

ଦ୍ୱିତୀୟତଃ, ମୁଁ ଏତିକି କହିବାକୁ ଚାହେଁ : ଦୟାକରି ତୁମେମାନେ କେବେହେଲେ ଭାବ ନାହିଁ ଯେ, ଜୀବଜନ୍ତୁଙ୍କର ଭାଷା କେବଳ ବିଶେଷଜ୍ଞମାନେ ଶୁଣି ପାରିବେ, ବୁଝି ପାରିବେ ତ ତାହା ଉପରେ ଗବେଷଣା କରିବେ । ଅଭିଜ୍ଞ ଶିକାରୀ, ପାଦ ଚିହ୍ନାଳୀ ଓ ପର୍ଯ୍ୟଟକମାନେ ମଧ୍ୟ ଅନେକ ସମୟରେ ଭଲ ଭାବେ ଜୀବଜନ୍ତୁଙ୍କର ଭାଷା ବୁଝି ପାରନ୍ତି । ତୁମେ ମଧ୍ୟ ଜୀବଜନ୍ତୁ ଓ ଚଢ଼େଇ କିପରି କଥା ହୁଅନ୍ତି, ସେମାନଙ୍କର କଣ୍ଠ ଶୁଣି ବୁଝିବା ଶିଖି ପାରିବ ।



ଝିଙ୍କମାନେ

ଥରେ କେବେ ବସନ୍ତ ଋତୁରେ ବଢ଼ିସକାଳୁ ମୁଁ ଜଙ୍ଗଲକୁ ଯାଇଥିଲି । ଟିକିଏ ଆଗରୁ ସୂର୍ଯ୍ୟ ଉଦୟ ହୋଇ ଥାଆନ୍ତି । ପକ୍ଷୀଙ୍କର ମୁଖରିତ କଳରବ ସୂର୍ଯ୍ୟଙ୍କୁ ସ୍ୱାଗତ ଜଣାଉଥାଏ । ହଠାତ୍ ଏହି ଜଣାଶୁଣା ଶବ୍ଦ ମଧ୍ୟରେ ମୁଁ ଶୁଣିବାକୁ ପାଇଲି ଏକ ଆଶ୍ଚର୍ଯ୍ୟ ଅଜଣା ଅଦ୍ଭୁତ ସ୍ୱର । କୌଣସି ଏକ ବୁଦା ଆଡ଼ୁ ଏହି ସ୍ୱର ଭାସି ଆସୁଥାଏ । ଏହା ଏକ ଗୀତ ପରି ଶୁଣା ଯାଉଥିଲା । ମାତ୍ର ସେପରି ଗୀତ ଜୀବନରେ ମୁଁ ଆଗରୁ କେବେ ଶୁଣି ନଥିଲି । ପ୍ରଥମ ଘୁଡ଼୍ ଘୁଡ଼୍ ଶବ୍ଦରୁ ଆରମ୍ଭ ହୋଇ କ୍ରମଶଃ ତାହା ଉଚ୍ଚ ଘଡ଼ଘଡ଼ ଗର୍ଜନ କଲା ପରି ଶୁଣା ଯାଉଥିଲା । ତା'ପରେ ଆଶାତୀତ ଭାବେ ବନ୍ଦ ହୋଇ ଯାଇ, ପୁଣି ଜୋରରେ ଆଙ୍ଗୁଠି ଫୁଟିଲା ପରି ଏବଂ ଧର୍ଷଣଭଳି ହେବା ଭଳି ଶବ୍ଦ ଶୁଣାଗଲା । ଟିକିଏ ବ୍ୟବଧାନ ପରେ ପୁଣି ସବୁ କଥା ମୂଳରୁ ଆରମ୍ଭ ହେଲା । ମୁଁ ସତର୍କତାର ସହ ବୁଦା ଆଡ଼କୁ ଯାଇ ଯେ କୌଣସି ଆଶାତୀତ ଘଟଣାର ସମ୍ମୁଖୀନ ହେବାକୁ ପ୍ରସ୍ତୁତ ହୋଇ ରହିଲି । ମାତ୍ର ମୁଁ ଯାହା ଦେଖିବାକୁ ପାଇଲି, ତାହା ମୋତେ ଚକିତ କରିଦେଲା । ବୁଦା ଉହାଡ଼ରେ ପତଝଡ଼ର ନାକକୁ ଲଗେଇ ବସି ରହିଥିଲେ ଦୁଇଟି ଝିଙ୍କ । ସେମାନେ କ'ଣ ଏପରି ଗୀତ ଗାଉଥିଲେ !

ହୋଇ ପାରେ, ତୁମେ ମଧ୍ୟ ସୁଯୋଗ ପାଇଲେ ଝିଙ୍କ ଦେଖିପାରିବ କିମ୍ବା ତାଙ୍କର ଗୀତ ଶୁଣି ପାରିବ । ଯଦି ସୁଯୋଗ ନମିଳେ ତେବେ ମନ ଦୁଃଖ କରିବାର କିଛି ନାହିଁ, ତୁମେ ଅନେକ ଅନ୍ୟକଥା ଓ ଗୀତ ଶୁଣି ପାରିବ ।

ସମ୍ଭବତଃ ତୁମେମାନେ ବେଙ୍ଗର ରଡ଼ି ଶୁଣିଥିବ । ତାକୁ ଆଉ ଥରେ ଶୁଣିବାକୁ ଚେଷ୍ଟା କର । ବସନ୍ତ ଋତୁରେ (ରୁଷିଆରେ) ବେଙ୍ଗ ସମସ୍ୱରରେ ରଡ଼ି ଛାଡ଼ନ୍ତି । ଗୋଟିଏ ବେଙ୍ଗର ନିଃସଙ୍ଗ ରଡ଼ି ମଧ୍ୟ ଶୁଣାଯାଏ । ସେମାନେ କେବଳ "ଗୀତ" ଗାଆନ୍ତି ନାହିଁ, ସେମାନେ କଥା ମଧ୍ୟ ହୁଅନ୍ତି । ଉଦାହରଣ ସ୍ୱରୂପ କେତେ ପ୍ରକାର-ବେଙ୍ଗ ଅଛନ୍ତି, ଯେଉଁମାନେ କି ସେମାନଙ୍କର ଅନ୍ୟ ବେଙ୍ଗ ଭାଇମାନଙ୍କୁ କହନ୍ତି, ଜାଗା ଖାଲି ନାହିଁ ଓ ସ୍ଥାନର ମାଲିକ କୌଣସି ଅତିଥିଙ୍କୁ ଅପେକ୍ଷା କରି ନାହିଁ ।

ପାଣି କୂଳରେ ବସିଥିବା ଗୋଟିଏ ବେଙ୍ଗକୁ ଯଦି ତୁମେ ଡରାଇ ଦିଅ, ସେ ଭୟରେ ପାଣି ଭିତରକୁ ଡେଇଁ ପଡ଼ି ଏକ ପ୍ରକାର ସ୍ୱତନ୍ତ୍ର ଭାବେ କେଁ କଟର ଶବ୍ଦ କରେ । ସେହି ଶବ୍ଦ ହେଲା : ବିପଦ ସଙ୍କେତ !

ବସନ୍ତ ଋତୁରେ ଯଦି ତୁମେ କୌଣସି ଗୋଟିଏ ଗଡ଼ିଆରେ ଟ୍ରାଇଟନ୍‌କୁ ଲକ୍ଷ୍ୟକର ତେବେ ବୋଧହୁଏ ଦେଖି ପାରିବ ଓ ଜାଣି ପାରିବ ଯେ, ସେମାନେ ଅତି କୌତୂହଳପୂର୍ଣ୍ଣ ଭାବେ କଥା ହୁଅନ୍ତି । ନିଜ ଦେହ ଉପରେ ଉଜ୍ଜ୍ୱଳ ଦାଗ ଥିବା କିମ୍ବା ପିଠି ଓ ଲାଞ୍ଜ ଉପରେ ମୁକୁଟରୂ ପୁରୁଷ ଟ୍ରାଇଟନ୍‌କୁ ତୁମେ ସହଜରେ ଚିହ୍ନି ପାରିବ । ସେ ଆଗେ ଆଗେ ପହଁରି ଯାଏ, ଲାଞ୍ଜ ହଲାଇ ମାଈ ଟ୍ରାଇଟନ୍ ଆଡ଼କୁ ପାଣିର ଛୋଟ ଢେଉ ଖେଳାଇ ଛାଡ଼େ । ଟିକିଏ ଟିକିଏ ସମୟ ବ୍ୟବଧାନରେ ସେ ଏପରି କରିବା ବନ୍ଦକରି ମାଈ ଟ୍ରାଇଟନ୍ ଖରିପଟେ ବୁଲି ନାଚ କରେ । ପୁଣି ଥରେ ତା ଆଡ଼କୁ ପାଣିର ଢେଉ ଛାଡ଼େ ।

ତୁମେମାନେ ଯଦି ଜୀବଜନ୍ତୁଙ୍କର ଭାଷା ଜାଣିବାକୁ ଆଗ୍ରହୀ ହୁଅ ତେବେ କ'ଣ କେବଳ ଏହି କଥା ଦେଖିବ ଓ ଶୁଣିବ !

ମାତ୍ର ମୁଁ ଜାଣେ, ତୁମେ ନିଶ୍ଚୟ ପ୍ରଶ୍ନ ପଚାରିବ ଜୀବଜନ୍ତୁଙ୍କର ଭାଷା ଜାଣିବା ଦରକାର କ'ଣ ? କାହିଁକି ଏହି ପ୍ରଶ୍ନ ଉପରେ ବଡ଼ ବଡ଼ ବୈଜ୍ଞାନିକ ଓ ପୂରା

ଇନ୍‌ଷ୍ଟିଟ୍ୟୁଟ୍ କାର୍ଯ୍ୟରତ, କାହିଁକି ଏଥିଲାଗି ଲୋକମାନେ ସେମାନଙ୍କର ସମୟ, ଶକ୍ତି ଓ ସମସ୍ତ ବଳ ନଷ୍ଟ କରୁଛନ୍ତି ?

ପ୍ରଥମତଃ, ସବୁଦିନ ପାଇଁ ମନେରଖ କେବଳ ପ୍ରକୃତ ଲାଭ ମିଳିବାର ଆଶା ରଖି ବିଜ୍ଞାନକୁ ଦେଖାଯାଇ ନପାରେ । ଆଜି ଯାହା ଅଦରକାରୀ ଓ ଜୀବନ ଲାଗି ଅଯୋଗ୍ୟ ମନେ ହେଉଛି, କାଲି ହୁଏତ ସେଥିରୁ ଅନେକ ଉପକାର ମିଳିବ । ଏପରି ଅନେକ ଦୃଷ୍ଟାନ୍ତ ରହିଛି । ଜୀବଜନ୍ତୁଙ୍କର ଭାଷା ଏହା ମଧ୍ୟରୁ ଅନ୍ୟତମ ।

ଏ ବିଷୟରେ କିଛି କହିବା ପୂର୍ବରୁ ମୁଁ ତୁମମାନଙ୍କୁ ଚିନ୍ତା କରିବାକୁ ଗୋଟିଏ ପ୍ରଶ୍ନ କହୁଛି : ଜୀବଜନ୍ତୁଙ୍କର ଭାଷାକୁ କ'ଣ ମଣିଷ ଆଦିମ କାଳରୁ ବ୍ୟବହାର କରୁ ନଥିଲା ?

ଏବେ ତୁମେମାନେ ଗୋଟିଏ ଉଦାହରଣ ମନେ ପକାଇବାକୁ ଚେଷ୍ଟା କର । ତୁମେ ଯଦି ମନେ ପକାଇ ପାରିବ ନାହିଁ, ତେବେ ମୁଁ ତୁମକୁ କହିଦେବି – କୁକୁର । ଆଦିମ ମାନବ ଲାଗି ସେ ପହରୀର କାର୍ଯ୍ୟ କରୁଥିଲା ଏବଂ ଭୁକି ଭୁକି କୌଣସି ଲୋକ ବା ପଶୁର ଆଗମନ ସମ୍ବନ୍ଧରେ ସତର୍କ କରାଇ ଦେଉଥିଲା ।

ଜୀବଜନ୍ତୁଙ୍କର କଣ୍ଠ ବାରି ଅନେକ ସମୟରେ ଶିକାରୀ ଶିକାରର ସନ୍ଧାନ ପାଏ । ପାଦ ଚିହ୍ନାଳୀମାନେ ପାଣିପାଗର ପୂର୍ବାଭାଷ ପାଇପାରନ୍ତି । ଏହାଛଡ଼ା ମଣିଷ ଜୀବଜନ୍ତୁଙ୍କର କଣ୍ଠସ୍ୱର ବୁଝି ପାରିଲେ, କେତେ କ'ଣ ସେଥିରୁ ଜାଣି ପାରିବ !

ମାତ୍ର ଜୀବଜନ୍ତୁଙ୍କର କଣ୍ଠ ବାରିବା ଓ ସେମାନଙ୍କର ଭାଷା ବୁଝି ପାରିବା ଏହି ଦୁଇଟି କଥାରେ ମଣିଷର ଆଶା ସୀମାବଦ୍ଧ ନୁହେଁ । ମଣିଷ ଜୀବଜନ୍ତୁଙ୍କର ଭାଷାରେ କଥା ମଧ୍ୟ କହି ଶିଖେ । ସେ ମନଧ୍ୟାନ ଦେଇ ଏହା ଶିକ୍ଷା କରେ – କାରଣ ସେ ଜାଣିଛି ଯେ ଜୀବଜନ୍ତୁଙ୍କର ଭାଷା କାମରେ ଆସି ପାରେ ।

ତୁମକୁ ଆମେ କହିଛୁ ଯେ, କେତେକ କୀଟପତଙ୍ଗଙ୍କୁ ଅନ୍ୟତ୍ର ଉଡ଼ି ଯିବାକୁ, "ଉଡ଼ିଯାଅ" ବୋଲି ଆଦେଶ ଦିଆଯାଏ । ଏଭଳି ନିର୍ଦ୍ଦେଶ ବିଷୟରେ ଜାଣିଲେ ମଧ୍ୟ ମଣିଷ ପ୍ରଥମେ ଏଥିପ୍ରତି କୌଣସି ଧ୍ୟାନ ଦେଉ ନଥିଲା । କେବଳ ଏହା କୌତୂହଳ କଥା ଥିଲା – ମାତ୍ର ପ୍ରକୃତ ଲାଭ ତ କିଛି ମିଳୁ ନଥିଲା !

ମାତ୍ର ଜଣାଗଲା ଯେ, ଲାଭ ମିଳି ପାରିବ ଏବଂ ଏହି ଲାଭ ହିତକର । ପଙ୍ଗପାଳଙ୍କ ବିରୁଦ୍ଧରେ ସଂଗ୍ରାମ ଲାଗିଥିବା ଆନ୍ତର୍ଜାତିକ କମିଶନ୍ ଏହି ପ୍ରଶ୍ନର ଅନୁଧ୍ୟାନ କାର୍ଯ୍ୟ ଆରମ୍ଭ କରି ଦେଇଛନ୍ତି । "ଉଡ଼ିଯାଅ" ବୋଲି ଆଦେଶକୁ ଯଦି କୌଣସି ଭୟଙ୍କର ଶତ୍ରୁ ବିରୁଦ୍ଧରେ ସଂଗ୍ରାମ କରିବାକୁ ଉପାୟ ଭାବେ ବ୍ୟବହାର କରାଯାଏ, ତେବେ କ୍ଷତି କ'ଣ ? ମନେକର ! କ୍ଷେତ ଉପରେ ପଙ୍ଗପାଳ ଦଳ ଉଡ଼ୁଛନ୍ତି, ହଠାତ୍ ସେମାନେ ବସି ପଡ଼ିଲା ମାତ୍ରେ ପୁଣି "ଉଡ଼ିଯିବାକୁ" ଆଦେଶ ମିଳିଲା । (ଅବଶ୍ୟ ଏହି ଆଦେଶର ଶବ୍ଦକୁ ଟେପ୍ କରାଯାଇ ବଜାଇ ଦିଆଗଲା ।) ଅନ୍ୟତ୍ର ଉଡ଼ିଯିବାକୁ ଶକ୍ତି ନଥିଲେ ମଧ୍ୟ, ଭୋକିଲା ପଙ୍ଗପାଳ ଦଳ ଏହି ଆଦେଶ ନିଶ୍ଚିତ ରୂପେ ପାଳନ କରନ୍ତି । ଅନ୍ୟ ଏକ କ୍ଷେତକୁ ଉଡ଼ିଯାଇ ବସିଲା ପରେ ପୁଣି


ବେଙ୍ଗ


ଟ୍ରାଇଟନ୍‌ମାନେ

"ଉଡ଼ିଯାଅ" ବୋଲି ଆଦେଶ ପଙ୍ଗପାଳ ଶୁଣନ୍ତି । ପୁଣି ତାହା ପାଳନ କରନ୍ତି ଏବଂ ମୃତ୍ୟୁ ପାଖେଇ ଆସିବା ପର୍ଯ୍ୟନ୍ତ ପଙ୍ଗପାଳମାନେ ଆଦେଶ ପାଳନ କରି ଚାଲିଥାନ୍ତି ।

ଯେଉଁ ଲୋକ ତାଇଗା କିମ୍ବା ଅନ୍ୟ କୌଣସି ସନ୍ତସନ୍ତିଆ ଜାଗାକୁ ଯାଇଛି, ସେ ଜାଣିଛି ମଶାଙ୍କର ଉପଦ୍ରବ । ସେଠି ମଶାରି କିମ୍ବା ମୋଟା ପୋଷାକ କିଛି ସାହାଯ୍ୟ କରେ ନାହିଁ । ମାତ୍ର ମଶାଙ୍କୁ ଯଦି ଭୟ ପ୍ରଦର୍ଶନ କରାଯାଏ ତେବେ କ'ଣ ହେବ ?

ଏବେ ଇଂଜିନିୟରମାନେ ବିପଦରେ ପଡ଼ିଥିବା ମଶା ଯେପରି ଗୁଣଗୁଣ ଶବ୍ଦ କରେ ସେହିଭଳି ଶବ୍ଦ ସୃଷ୍ଟି କରୁଥିବା ଏକ ଯନ୍ତ୍ର ତିଆରି କରିବାକୁ ଲାଗିଛନ୍ତି । ମରଣର ବିପଦ ସଙ୍କେତ ଦେଇ ଏହି ଯନ୍ତ୍ରଟି ମଶାଙ୍କୁ ଭୟଭୀତ କରିବ ।

ଅଳ୍ପ ଦିନ ପୂର୍ବରୁ ମହୁମାଛି ପାଳକମାନେ ଏକ ନିର୍ଦ୍ଦିଷ୍ଟ ସମୟରେ ବିଶ୍ରାମ କ'ଣ ଜାଣୁ ନଥିଲେ – ସେମାନେ ସର୍ବଦା ପ୍ରସ୍ତୁତ ରହୁଥିଲେ । ନୂଆ ମହୁମାଛି ଜନ୍ମ ହେଉଥିଲେ ଓ ମହୁ ଫେଣାରେ ଜାଗାର ଅଭାବ ହେତୁ ଗୁଞ୍ଜାଗୁଞ୍ଜି ହୋଇ ସେମାନେ ରହିବାକୁ ଲାଗିଲେ । ସମୟ ଆସିଲା, ଯେତେବେଳେ ଫେଣାରୁ ଦଳେ ମହୁମାଛି ଅନ୍ୟତ୍ର ଉଡ଼ିଗଲେ । ମହୁମାଛି ପାଳକ ଏହି ସମୟକୁ ନଷ୍ଟ ନକରିବା ପାଇଁ, ମହୁମାଛି କେଉଁ ଆଡ଼େ ଉଡ଼ିଗଲେ ଲକ୍ଷ୍ୟ ରଖିବା ପାଇଁ, ସେମାନଙ୍କୁ ଧରି ନୂଆ ମହୁ ଫେଣାରେ ଛାଡ଼ିବା ପାଇଁ ଚେଷ୍ଟା କଲେ । ମାତ୍ର ଠିକ୍ ସମୟରେ ଏହା କରିବା ସବୁବେଳେ ସମ୍ଭବପର ହେଉନଥିଲା । ତେଣୁ ଉଡ଼ି ଯାଇଥିବା ନୂଆ ମହୁମାଛି ଦଳ ଆଉ ମିଳୁନଥିଲେ । ମହୁମାଛି ତ ନିରବରେ ରହନ୍ତି ନାହିଁ, ସେମାନେ ସବୁବେଳେ ଗୁଣୁଗୁଣୁ ଶବ୍ଦ କରୁଥାଆନ୍ତି । ଏହା ଛଡ଼ା ନବଜାତ ମହୁମାଛିଙ୍କର ଶବ୍ଦ ସ୍ୱତନ୍ତ୍ର । ବିଶେଷଜ୍ଞମାନେ ସେହି ଶବ୍ଦକୁ କାମରୁ ଫେରିଥିବା କ୍ଲାନ୍ତ ମହୁମାଛିର ଶବ୍ଦ ସହିତ କିମ୍ବା ଭୟଭୀତ ହୋଇଥିବା ମହୁମାଛିର ଶବ୍ଦ ସହିତ କେବେହେଲେ ଗୋଳମାଳ କରନ୍ତି ନାହିଁ । ନବଜାତ ମହୁମାଛିଙ୍କର ସଂଖ୍ୟା ଯେତେ ଅଧିକ ହୁଏ, ଫେଣାରେ ଶବ୍ଦ ସେତେ ଜୋର ହୋଇ ଉଠେ ଓ ନୂଆ ମହୁମାଛି ଦଳ ଫେଣା ଛାଡ଼ିବାର ସମୟ ସେତେ ନିକଟ ହୋଇ ଆସେ । ୧୯୫୯ ମସିହାରେ ଜଣେ ଇଂଜିନିୟର ଗୋଟିଏ ସ୍ୱତନ୍ତ୍ର ଯନ୍ତ୍ର ଉଦ୍ଭାବନ କରିଥିଲେ, ଯାହା ନବଜାତ ମହୁମାଛି ଦଳର ଶବ୍ଦ ପ୍ରତି ଖୁବ୍ ସଠିକ୍ ଭାବେ ପ୍ରତିକ୍ରିୟା ସୃଷ୍ଟି କରି ପାରୁଥିଲା । ସେମାନଙ୍କ ଦ୍ୱାରା ସୃଷ୍ଟି କରା ଯାଉଥିବା ଶବ୍ଦ



କୁକୁର

ଯେତେବେଳେ ଏକ ନିର୍ଦ୍ଦିଷ୍ଟ ସ୍ତରରେ ପହଞ୍ଚୁଥିଲା, ସେତେବେଳେ ଏହି ଯନ୍ତ୍ର ଦ୍ୱାରା ମହୁମାଛି ପାଳକର ଘରେ ସଙ୍କେତ ପହଞ୍ଚି ପାରୁଥିଲା । ଯେତେବେଳେ ମହୁମାଛିଙ୍କର ଶବ୍ଦ "ଉଡ଼ିଯିବାର" ଆଦେଶ ମିଳୁଥିଲା, ସେତେବେଳେ ମହୁମାଛି ପାଳକ ଯାଇ ଠିକ୍ ସ୍ଥାନରେ ଉପସ୍ଥିତ ହେଉଥିଲା ।

କୀଟ ପତଙ୍ଗଙ୍କର କଣ୍ଠ ବାରି ଲୋକମାନେ ସେମାନଙ୍କୁ ଭଲ ଭାବେ ଶୁଣିବାକୁ ଶିଖିଲେ । ଉଦାହରଣ ସ୍ୱରୂପ, କାଠ ଭିତରେ କିମ୍ବା ଖାଦ୍ୟ ଶସ୍ୟରେ ରହୁଥିବା ଅନିଷ୍ଟକାରୀ କୀଟଙ୍କର ଶବ୍ଦ ସଂଗ୍ରହ କରିବାକୁ ଓ ଏହି ଶବ୍ଦକୁ ବହୁଗୁଣିତ କରିବାକୁ

ଏକ ସ୍ୱତନ୍ତ୍ର ଯନ୍ତ୍ର ତିଆରି କରାଯାଇଥିଲା । କୀଟଙ୍କ ସହିତ ସଂଗ୍ରାମ କରିବାକୁ ଏହା କେତେ ହିତକର ଭାବି ପାରୁଛତ !

ବିରୁଡ଼ିମାନେ

ଅନିଷ୍ଟକାରୀ କୀଟଙ୍କ ସହିତ ସଂଗ୍ରାମ ଲାଗି ମଣିଷ ଗନ୍ଧର ଭାଷା ବ୍ୟବହାର କରି ଶିଖିଛି । ଏହା ଦ୍ୱାରା କେତେକ କୀଟଙ୍କୁ ଭୟଭୀତ କରିବା, ଅନ୍ୟ କେତେକଙ୍କୁ ତଡ଼ିଦେବା ଓ ବଂଶ ବୃଦ୍ଧି ହେବାକୁ ନଦେବା ଇତ୍ୟାଦି କଥା ମଣିଷ ଶିଖିଛି ।

ତେବେ ପକ୍ଷୀଙ୍କର କଣ ? ସେମାନଙ୍କର ଭାଷା ବୁଝିଲେ ମଣିଷ ଯେ କେତେ ଉପକାର ପାଇ ପାରିବ ତାହା କଳ୍ପନାତୀତ !

କେତେକ ପକ୍ଷୀ ଅଙ୍ଗୁର ଓ ଅନ୍ୟାନ୍ୟ ବଗିଚ୍ଚାରେ ଫଳ ଖାଇ ପ୍ରତିବର୍ଷ ପ୍ରାୟ ଏକ ତୃତୀୟାଂଶ ଫସଲ ନଷ୍ଟ କରି ଦିଅନ୍ତି । ଆମେରିକା ଓ ଭାରତରେ ବେଳେବେଳେ ସେମାନେ ଏତେ ଫସଲ ନଷ୍ଟ କରି ଦିଅନ୍ତି ଯେ, ସ୍ଥାନୀୟ ବାସିନ୍ଦା ଲୋକ ଉପାସରେ ଦିନ କାଟନ୍ତି । ପକ୍ଷୀମାନେ ଦେଉଥିବା "ବିପଦ ସଙ୍କେତ"କୁ ଏକ ଟେପ୍ ରେକର୍ଡରରେ ଟେପ୍ କରି, ପରେ ଲାଉଡ୍ ସ୍ପିକର୍ ସାହାଯ୍ୟରେ ସେହି ଶବ୍ଦକୁ ବହୁଗୁଣିତ କରି ବଜାଇ ଦେଲେ, ପକ୍ଷୀମାନେ ଖୁବ୍ ଚଞ୍ଚଳ ଅନେକ ଦିନ ପାଇଁ ବଗିଚ୍ଚା, ଶସ୍ୟ କ୍ଷେତ୍ର ଓ ଅଙ୍ଗୁର କୋଳି ପାଖରୁ ଦୂରେଇ ଯାଆନ୍ତି ।

ବିପଦ ସଙ୍କେତ ଦେଇ ପକ୍ଷୀମାନଙ୍କୁ ଭୟଭୀତ କରିବା କଥା ଅନେକ ଦେଶରେ ଏବେ ଲୋକମାନେ ଶିଖି ଗଲେଣି ।

ବିମାନ ଯାତାୟତ କ୍ଷେତ୍ରରେ ମଧ୍ୟ ପକ୍ଷୀମାନେ ବିପଦ ସୃଷ୍ଟି କରନ୍ତି । ଉଦାହରଣ ସ୍ୱରୂପ, କାନାଡ଼ାରେ ୧୯୫୬ ମସିହାରୁ ୧୯୬୮ ମସିହା ମଧ୍ୟରେ ୪୮୬ଟି ବିମାନ ଚଢ଼େଇଙ୍କ ସହିତ ଧକ୍କା ଲଗିଥିଲା, ଠିକ୍ ସେତିକି ବର୍ଷ ମଧ୍ୟରେ ଆମେରିକା ଯୁକ୍ତରାଷ୍ଟ୍ରରେ ୪୩୦ଟି ଓ ବିଲାତରେ ୧୪୫ଟି ଦୁର୍ଘଟଣା ଘଟିଥିଲା । ଅନେକ ସମୟରେ ଏପରି ଦୁର୍ଘଟଣାରୁ ବିପତ୍ତି ଦେଖାଦିଏ । ଯଦିଓ କୌଣସି ବିପଦ ନଘଟେ, ତେବେ ମଧ୍ୟ ବିମାନର ଚ୍ଚଳନ ବ୍ୟବସ୍ଥାନରେ ତ୍ରୁଟି ଦେଖାଦିଏ । ଚଢ଼େଇ ସହିତ ଧକ୍କା ପରେ ଗୋଟିଏ ବ୍ରିଟିଶ୍ ବିମାନର ହାରାହାରୀ ମରାମତି ଖର୍ଚ୍ଚ ପ୍ରାୟ ସାଢ଼େ ଛଅ ହଜାର ପାଉଣ୍ଡ ପଡ଼େ । କାନାଡ଼ାରେ ପକ୍ଷୀ ଧକ୍କାର ସମ୍ମୁଖୀନ ହୋଇଥିବା ସବୁ ବିମାନର ମରାମତି ଖର୍ଚ୍ଚ ପ୍ରାୟ ୭୦ ଲକ୍ଷ ଡଲାର ।

ବିମାନ ବନ୍ଦରରୁ ପକ୍ଷୀମାନଙ୍କୁ ତଡ଼ିବା ଲାଗି ବିଲାତର ସରକାରୀ ଅଫିସରମାନେ

ଥରେ ଦୁଇ ହଜାର ପାଉଣ୍ଡ ଖର୍ଚ୍ଚ କରି ଗରି ଆଡ୍ରେ ନାପ୍‌ଥିଲିନ୍ ବିଛାଇ ଦେଲେ । ସେମାନେ ଆଶା କରିଥିଲେ ଯେ, ଏହି ପଦାର୍ଥର ଗନ୍ଧ ଭୟରେ ପକ୍ଷୀମାନେ ଉଡ଼ି ପଳାଇବେ । (ସରକାରୀ ଅଫିସରମାନେ ଆଦୌ ଜାଣି ନଥିଲେ ଯେ, ପକ୍ଷୀମାନଙ୍କର ଘ୍ରାଣଶକ୍ତି ଖୁବ୍ ଦୁର୍ବଳ ଏ ଏହାର ପ୍ରଭାବ ସେମାନଙ୍କ ଉପରେ ଆଦୌ ପଡ଼େ ନାହିଁ ।)

ମାତ୍ର ଯେତେବେଳେ "ବିପଦ ଶବ୍ଦ" ଶୁଣାଇ ପକ୍ଷୀମାନଙ୍କୁ ଭୟଭୀତ କରାଗଲା, ସେତେବେଳେ ଖୁବ୍ ଭଲ ଫଳ ମିଳିଲା ।

ମାଛମାନେ ମଧ୍ୟ ମଣିଷର ଦୃଷ୍ଟିରୁ ବାଦ୍ ଗଲେ ନାହିଁ । କାରଣ ମାଛଙ୍କର ଉପ୍ତୁଡ଼ି ଅଭ୍ୟାସକୁ ମଧ୍ୟ ବ୍ୟବହାର କରାଯାଇ ପାରେ । ଆଫ୍ରିକାର କେଉଟମାନେ ମାଛଙ୍କର କଥାବାର୍ତ୍ତାକୁ ବ୍ୟବହାର କରନ୍ତି । ଏପରିକି ନିଜର ମୁଣ୍ଡକୁ ପାଣି ଭିତରକୁ ନବୁଡ଼ାଇ ଓ ଆହୁଲ ସାହାଯ୍ୟ ବିନା ମାଛମାନଙ୍କର କଥାବାର୍ତ୍ତା ଶୁଣା ଯାଇପାରେ । ଏଥିଲାଗି ସ୍ୱତନ୍ତ୍ର ଯନ୍ତ୍ର ଓ ସ୍ୱତନ୍ତ୍ର ଜାହାଜ ରହିଛି । ଉଦାହରଣ ସ୍ୱରୂପ, "ସିବିରିୟାନ୍‌କା" ନାମକ ବୁଡ଼ା ଜାହାଜ, ଜଳଫୋନ୍ ସାହାଯ୍ୟରେ ମାଛଦଳଙ୍କର ସନ୍ଧାନ ଦିଏ ଏବଂ ମାଛ କେଉଁଠାରେ ଅଛନ୍ତି, ତାହା ରେଡ଼ିଓ ଦ୍ୱାରା ମାଛଧରାଳି ଜାହାଜକୁ ଜଣାଇ ଦେଇଥାଏ ।

ମାଛଙ୍କର ଘ୍ରାଣଶକ୍ତି ଖୁବ୍ ଭଲ । ଅତି ଭଲ! ମାଛ ଧରିବା ପାଇଁ କିମ୍ବା ସେମାନଙ୍କୁ ଜାଲରେ ପକାଇବା ପାଇଁ କ'ଣ ଏହାକୁ ବ୍ୟବହାର କରାଯାଇ ପାରନ୍ତା ନାହିଁ? ଏହି ପ୍ରଶ୍ନଟି ଉପରେ ଏବେ ବୈଜ୍ଞାନିକମାନେ କାର୍ଯ୍ୟ କରୁଛନ୍ତି ।

ପାଣି ଭିତରେ ମାଛ କ'ଣ ଖୁବ୍ ଭଲ ଶୁଣି ପାରନ୍ତି? ହଁ, ଶୁଣି ପାରନ୍ତି । ଏହାକୁ ବ୍ୟବହାର କରିବା ଦରକାର । ଉଦାହରଣ ସ୍ୱରୂପ, ମାଛଚାଷ ହେଉଥିବା କେତେକ ଫାର୍ମରେ, ପାଣି ଭିତରକୁ ଗୋଟିଏ ଘଣ୍ଟି ପକାଇ ବଜାନ୍ତି । ଏହି ଘଣ୍ଟିର ଶବ୍ଦ ଶୁଣି ମାଛମାନେ ଖାଦ୍ୟ ଖାଇବାକୁ ଆସି ଗୋଟିଏ ନିର୍ଦ୍ଦିଷ୍ଟ ସ୍ଥାନରେ ଏକତ୍ରିତ ହୁଅନ୍ତି ।

ଯେତେବେଳେ ପାଣି ଭିତରେ ଖୁବ୍ ଗଭୀରରେ କୌଣସି ବିସ୍ଫୋରଣ କାର୍ଯ୍ୟ କରାଯାଏ, ଅନେକ ମାଛ ମରି ଯାଆନ୍ତି । ସବୁ ପ୍ରକାର ଚେଷ୍ଟା କରି ମାଛଙ୍କୁ ବିପଦ ସ୍ଥାନରୁ ତଡ଼ି ଦେବାକୁ ଲୋକମାନେ ଉଦ୍ୟମ କରିଛନ୍ତି – ଡ୍ରମ୍ ପିଟି ଏପରିକି ବିଜୁଳି ସକ୍ ଲଗାଇ ମାଛଙ୍କୁ ତଡ଼ିବାର ଚେଷ୍ଟା କରା ଯାଇଛି, ମାତ୍ର କିଛି ଫଳ ମିଳି ନାହିଁ । ଯଦି କୌଣସି ଗନ୍ଧ କିମ୍ବା "ବିପଦର ଶବ୍ଦ"କୁ ମାଛଙ୍କୁ ଘଉଡ଼େଇବା ଲାଗି ବ୍ୟବହାର କରାଯାଏ ତେବେ କ'ଣ ହେବ? ନିଶ୍ଚୟ ଫଳ ମିଳିବ!

ଅନ୍ୟ ଏକ କଥା ଧରାଯାଉ: ବର୍ତ୍ତମାନ ଗରି ଆଡ୍ରେ ନଦୀରେ ବଡ଼ ବଡ଼ ବନ୍ଧ ତିଆରି କରା ଯାଉଛି । ମାଛମାନେ ନଦୀ ଧାରରେ ଉପରକୁ ଉଠିବା ଲାଗି କିମ୍ବା ଉପରୁ ତଳକୁ ଖସିବା ପାଇଁ ଏହି ବନ୍ଧରେ ସ୍ୱତନ୍ତ୍ର ମାଛନାଳୀ ତିଆରି କରାଯାଉଛି । କେତେକ ମାଛ ଏହି ନାଳୀ ଭିତର ଦେଇ ଯାଆନ୍ତି ତ ଅନ୍ୟ କେତେକ ଯାଆନ୍ତି ନାହିଁ । ଯେଉଁ ସ୍ଥାନରେ ମାଛମାନେ ବିପଦର ସମ୍ମୁଖୀନ ହୋଇ ମୃତ୍ୟୁ ବରଣ କରୁଥିଲେ ଠିକ୍ ସେହି ସ୍ଥାନରେ ଯଦି ସେମାନଙ୍କୁ ଭୟଭୀତ କରିବା ପାଇଁ ସ୍ୱତନ୍ତ୍ର

ଯନ୍ତ୍ର ରଖାଯାଏ ଓ ଯେଉଁ ସ୍ଥାନରେ ମାଛନାଳୀ ଅଛି ସେଠି ସେମାନଙ୍କୁ ଆକର୍ଷଣ କଲା ଭଳି ଏକ ସ୍ୱତନ୍ତ୍ର ଯନ୍ତ୍ର ରଖାଯାଏ, ତେବେ ହେବ କ'ଣ ? କେତେ ମୂଲ୍ୟବାନ ମାଛଙ୍କର ଜୀବନକୁ ରକ୍ଷା କରାଯାଇ ପାରିବ ! ଏସବୁ ଓ ଅନ୍ୟାନ୍ୟ ଅନେକ ପ୍ରଶ୍ନ ଉପରେ ଜୀବଜନ୍ତୁଙ୍କର ଭାଷାରେ ଗବେଷଣା କରୁଥିବା ଲୋକମାନେ କାର୍ଯ୍ୟରତ ଅଛନ୍ତି ।

ମୁଁ ତୁମମାନଙ୍କୁ ଶେଷକଥା ପରିବର୍ତ୍ତେ ଏତିକିହିଁ କହିବାକୁ ଚାହୁଁଥିଲି ।

ଆଉ ବହିରେ କାହିଁକି ଶେଷକଥା ନଥାଏ, ତାହା ମଧ୍ୟ କହିବାକୁ ଚାହିଁଛି ।

ପ୍ରଥମତଃ, ଜୀବଜନ୍ତୁଙ୍କୁ ଲକ୍ଷ୍ୟ କରି ତୁମେମାନେ ମଧ୍ୟ, ବହିର ଆଉ ଏକ ନୂତନ ଭାଗ ଲେଖି ପାରିବ ।

ଦ୍ୱିତୀୟତଃ, ଶେଷଭାଗରେ ସବୁକଥା ଶେଷ ହୋଇଯିବା ଦରକାର । କିନ୍ତୁ ଜୀବଜନ୍ତୁଙ୍କର ଭାଷା ଉପରେ ଗବେଷଣା ଏବେ ମାତ୍ର ଆରମ୍ଭ ହୋଇଛି । ପ୍ରତିଦିନ ଅନେକ ନୂତନ ଉଦ୍ଭାବନ ହୋଇ ପାରୁଛି ଓ ପ୍ରତ୍ୟେକ ଦିନ ଲୋକମାନେ ଅନେକ ରହସ୍ୟ ଭେଦ କରୁଛନ୍ତି । ସମାଧାନ ହୋଇ ଯାଉଥିବା ପ୍ରଶ୍ନ ସ୍ଥାନରେ ନୂତନ ଅସମାଧାନ ପ୍ରଶ୍ନ ସ୍ଥାନ ପାଉଅଛି । ସେ ସବୁର ମଧ୍ୟ ସମାଧାନ କରାଯିବା ଆବଶ୍ୟକ । ଲୋକମାନେ ଅବଶ୍ୟ ଏ ସବୁର ସମାଧାନ କରିବେ ।

ଏହାଛଡ଼ା ମୁଁ ଏହି ବହି ଖଣ୍ଡିକ ଲେଖିବା ସମୟରେ, ଏହାକୁ ରୁଷ୍ ଭାଷାରୁ ଓଡ଼ିଆକୁ ଅନୁବାଦ କରାଯିବା ସମୟରେ, ଶିଳ୍ପୀ ଚିତ୍ର ଆଙ୍କିବା ସମୟରେ ଏବଂ ଶେଷରେ ବହିଟି ଛପାଯନ୍ତ୍ରରେ ଛପା ହେଉଥିବା ସମୟରେ, ଏପରିକି ତୁମେ ବହିଟିକୁ ପଢ଼ିବା ସମୟରେ—ବୈଜ୍ଞାନିକମାନେ ଅନେକ କିଛି ଉଦ୍ଭାବନ କରି ସାରିଥିବେ ଓ ଅନେକ ନୂଆ କଥା ଲେଖି ସାରିଥିବେ ।

ତେବେ, ସେସବୁକୁ ନେଇ ଆଉ ଖଣ୍ଡିଏ ବହି ହେବ । କାରଣ ବିଜ୍ଞାନରେ କେବେହେଲେ ଶେଷକଥା ନଥାଏ ।

ମଶାମାନେ

## ପାଠକମାନଙ୍କ ପ୍ରତି

ଏହି ପୁସ୍ତକର ଅନୁବାଦ ଏବଂ ଅଙ୍ଗସଜ୍ଜା ବିଷୟରେ ଆପଣମାନଙ୍କର ମତାମତ ଜଣାଇଲେ "ରାଦୁଗା" ପ୍ରକାଶନ ବାଧିତ ହେବ । ଅନ୍ୟାନ୍ୟ ପରାମର୍ଶ ମଧ୍ୟ ଜଣାଇବାକୁ ଅନୁରୋଧ ।

ଆମର ଠିକଣା—"ରାଦୁଗା" ପ୍ରକାଶନ, ୧୭, ଜୁବଭ୍ସି ବୁଲ୍ଭାର, ମସ୍କୋ, ସୋଭିଏତ୍ ୟୁନିଅନ୍ ।



ମିଖାଇଲ୍ ଇଲିନ୍ (୧୮୮୫ – ୧୯୫୩) ତାଙ୍କର ସମଗ୍ର ସୃଜନଶୀଳ ଜୀବନକୁ ଏକ କଠିନ ଅଥଚ ମହତ କାର୍ଯ୍ୟ ପ୍ରତି ଉତ୍ସର୍ଗ କରିଥିଲେ । ସେ କାର୍ଯ୍ୟଟି ହେଲା – ପୃଥିବୀର ସମସ୍ତ ଶିଶୁମାନଙ୍କ ମନକୁ ଆନ୍ଦୋଳିତ କରୁଥିବା ସେହିସବୁ ଲକ୍ଷ ଲକ୍ଷ "କାହିଁକି" ମଧ୍ୟରୁ କେତେକର ଉତ୍ତର ପ୍ରଦାନ କରିବା । ମିଖାଇଲ୍ ଇଲିନ୍ ତାଙ୍କ ସହଧର୍ମିଣୀ ତଥା ସାହିତ୍ୟିକ କର୍ମଜୀବନର ସହକର୍ମୀ ହେଲେନ୍ ସେଗାଲ୍‌ଙ୍କ ମିଶି ଏହି ପୁସ୍ତକଟି ରଚନା କରିଥିଲେ । ଦୁନିଆର ତରୁଣ ପାଠକମାନଙ୍କୁ ଏହା ମାନବଜାତିର ସଂସ୍କୃତିର ଇତିହାସ ସହିତ ପରିଚିତ କରାଇଥାଏ । ଲେଖକ ଦ୍ୱୟ ଏକ ଚିତ୍ତାକର୍ଷକ ଢଙ୍ଗରେ ମଣିଷର ଆବିର୍ଭାବ ସଂପର୍କରେ, ମଣିଷ କିପରି କାର୍ଯ୍ୟ କରିବାକୁ ଏବଂ ଚିନ୍ତା କରିବାକୁ ଶିଖିଲା, କିପରି ଲୌହ ଆଉ ଅଗ୍ନିକୁ ଆବିଷ୍କାର କଲା, ପ୍ରକୃତି ସହିତ ଲଢ଼ିଲା, ଅଭିଜ୍ଞତା ଲାଭ କଲା, ପୃଥିବୀକୁ ଉନ୍ନତ କଲା, ଆଦି ସଂପର୍କରେ ବର୍ଣ୍ଣନା କରିଛନ୍ତି । ବହୁ ଚିତ୍ରରାଜି ସମ୍ବଳିତ ଏହି ପୁସ୍ତକଟି ନୂତନ ଏକ ମୌଳିକ ରୂପ ନେଇ ପୃଥିବୀର ବହୁ ବିଦେଶୀ ଭାଷାରେ ଅନୂଦିତ ହୋଇ ପ୍ରକାଶ ପାଇଛି ।

